


# ଦ୍ୱିତୀୟ-ଭାଗ



( ବହୁ ପ୍ରାଚୀନ ଯୌନ ଶାସ୍ତ୍ର ଓ ଆଧୁନିକ ଯୌନ
ଗ୍ରନ୍ଥମାନଙ୍କରୁ ସଂଗୃହୀତ ଏକ ଅଭିନବ ସମାବେଶ )



ମନମୋହନ ପୁସ୍ତକାଳୟ
କଟକ-୨ ଓ କଲିକତା-୧୨

ପ୍ରକାଶିକା :

ମା କନକ ଦୁର୍ଗା

କଟକ-୨ ଓ କଲିକତା-୧୨

ପ୍ରୋ: ଶ୍ରୀ ମୋହନ ଚରଣ ଦାସ



ସଂଗ୍ରାହକ :

ମୁଖ୍ୟ—ଶ୍ରୀ ମୋହନ ଚରଣ ଦାସ

ସହକାରୀ—ଶ୍ରୀ ନଟବର ହରିଚନ୍ଦନ

ମୁଦ୍ରାକର :

ମନମୋହନ ପ୍ରେସ

କଟକ-୨

୧୯୭୨

ଦର୍ଶନୀ ଟ ୪୫



ଯୁବକ ଯୁବତୀମାନଙ୍କ ଜୀବନ ପଥର ସମ୍ବଳ; ଏବଂ ଯୌନ ତତ୍ତ୍ୱ ଅଜ୍ଞନା-ନ୍ଧକାରରେ ଜଳୁଥିବା ବର୍ତ୍ତିକା ସ୍ୱରୂପ ସମାଜ କଲ୍ୟାଣକର ଏହି କାମବିଜ୍ଞାନ ଦ୍ୱିତୀୟ ଭାଗ ପ୍ରତ୍ୟେକ ଦମ୍ପତିଙ୍କୁ ଉତ୍ସର୍ଗିତ ।

ପ୍ରକାଶକ—



*What God, in the might of His wisdom and the greatness of His love, has created no man or woman need be ashamed to read, talk of, learn and know: for it cannot be that He has so ordered it that knowledge so essential to the well being of mankind can be destructive to moral purity.*

John Cowan M. D.

# ସତ୍ୟ ପାଠ

( ଘରେଇ ପ୍ରଚାର ନିମିତ୍ତ )

ଏହି ବହି ଏକ ଦୁଃସାହସିକ ପ୍ରଚେଷ୍ଟା ଏବଂ ନଗ୍ନ ସତ୍ୟକୁ ନିର୍ଦୋଷ ଭାବେ ପ୍ରକଟ କରୁଅଛି । ଆମ ଓଡ଼ିଆ ଭାଷାରେ ଏପରି ପୁସ୍ତକ କେବେ ପ୍ରକାଶିତ ହୋଇ ନାହିଁ । ଯେତେ ବେଶୀ ମୂଲ୍ୟ ଦେଲେ ମଧ୍ୟ କୌଣସି ଅବସ୍ଥାରେ କୌଣସି ଅବିବାହିତ ବ୍ୟକ୍ତିଙ୍କୁ ଏହା ବିକ୍ରୟ କରାଯିବ ନାହିଁ । ଏହାର ପ୍ରଚାର ନିୟମାବଦ୍ଧ ଏବଂ ସୀମାବଦ୍ଧ ।

ପ୍ରତ୍ୟେକ କ୍ରେତାଙ୍କୁ ଏହି ସତ୍ୟପାଠ କରିବାକୁ ହେବ—

"ମୁଁ ଜଣେ ବିବାହିତ ବ୍ୟକ୍ତି ଏବଂ ଏହି କାମ-ବିଜ୍ଞାନ ଦ୍ୱିତୀୟ ଭାଗ ନିଜର ବ୍ୟକ୍ତିଗତ ବ୍ୟବହାର ପାଇଁ ନିଜର ଦାୟିତ୍ୱରେ ଅଜ ପ୍ରକାଶକଙ୍କଠାରୁ କ୍ରୟ କରୁଅଛି । ଏହାକୁ କିମ୍ବା ଏହାର କୌଣସି ବିଷୟକୁ ନକଲ କରି ମୁଁ ଅନ୍ୟ କାହା ନିକଟରେ ପ୍ରକାଶ କରିବି ନାହିଁ । ମୋର ବୟସ.........ବର୍ଷ ।"

**ସ୍ୱାକ୍ଷର** ____________________

**ଠିକଣା** ____________________

____________________

**ତାରିଖ** ____________________

# ପୁସ୍ତକ ପରିଚୟ

'କାମ ବିଜ୍ଞାନ ରହସ୍ୟ'ର ନବୀନ ସଂସ୍କରଣ ମାଧ୍ୟମ ଯୌନତତ୍ତ୍ୱ ଓ ବିଷୟକ ରହସ୍ୟାବଳୀ ସଂଗ୍ରହ କରି ସଂଗ୍ରାହକ ଯେଉଁ ଉଦ୍ୟମ ଅଛନ୍ତି ତାହା ବାସ୍ତବିକ ପ୍ରଶଂସନୀୟ । ସମଗ୍ର ମାନବ ତର ସୃଷ୍ଟି ପ୍ରକ୍ରିୟାରେ ଯୌନତତ୍ତ୍ୱର ବହୁତୋମୁଖୀ ଶିକ୍ଷଣୀୟ ଗ ଗୁଡ଼ିକର ତଥ୍ୟପରିବେଶନାତ୍ମକ ବିଶ୍ଳେଷଣ କରିବାକୁ ଯାଇ କାମ ପ୍ରଣେତା ମହର୍ଷି ମହାମନସ୍ୱୀ ବାତ୍ସ୍ୟାୟନଙ୍କ ପଦାଙ୍କ ଲେଖକ ପଦେ ଅନୁସରଣ କରିଅଛନ୍ତି ଏବଂ ସହଜବୋଧ ଭାଷାରେ ଖିତ ବିଭାଗ ବିଧିହିତ ରହସ୍ୟ ଗୁଡ଼ିକର ସାରବତ୍ତା ଓ ଅବଶ୍ୟ- । ସୁନ୍ଦର ଭାବରେ ପ୍ରତିପାଦନ କରି ଗୋଟାଏ ବିଶିଷ୍ଟ ଅଭିନବ ତୃଷ୍ଟି ଦିଗରେ ଯଥେଷ୍ଟ ଅଗ୍ରସର ହୋଇ ପାରିଛନ୍ତି । ବାତ୍ସ୍ୟାୟନ ତି କାମଶାସ୍ତ୍ରର ମହତ୍ତ୍ୱ ଉପଲବ୍ଧି କରିବାରେ ମୋର ପାର- । ଉଲ୍ଲେଖଯୋଗ୍ୟ ବା ପ୍ରକାଶ ଯୋଗ୍ୟ ନ ହେଲେ ସୁଦ୍ଧା ନବ ଯୌନ ଜୀବନର ସୁଶୃଙ୍ଖଳିତ ନିୟନ୍ତ୍ରଣ, ବିକାଶ, ମହତ୍ତ୍ୱ ମାନବିକ ବିଶେଷତ୍ୱ ସମୂହ କଲ୍ୟାଣ ପକ୍ଷେ ସର୍ବଥା ଅପର ଣୀୟ ତାହା ମୁଁ କଦାପି ଅସ୍ୱୀକାର କରି ପାରିବି ନାହିଁ ଏବଂ ଲ ତାହା କେବଳ ଉତ୍ଥାନ, ଧୃଷ୍ଟତା ଓ ଅଯୌକ୍ତିକତାର ମୃତ୍ୟୁ ହେବ ବୋଲି ମୋର ବଦ୍ଧମୂଳ ବିଶ୍ୱାସ ।

ସଂସାର ଅନୁଭୂତ ସମ୍ପନ୍ନ ହୋଇ ଯେଉଁମାନେ (ବିବାହିତ ଅବିବାହିତ ) ବୟୋବୃଦ୍ଧି ସଙ୍ଗେ ସଙ୍ଗେ ତରୁଣ ଯୌନ ନର ଉଜ୍ଜ୍ୱଳ ସୋପାନରେ ପଦକ୍ଷେପ କରିବା ଦିଗରେ ଅବା ପାଇଛନ୍ତି ବା ପାଉଛନ୍ତି, କେବଳ ସେହିମାନଙ୍କର ସମ୍ୟକ ଧାରଣ ଲାଗି ଲେଖକଙ୍କର ଅଦମ୍ୟ ଉଦ୍ୟମ ହୋଇଛି

ସୁତରାଂ ଏହା ଅପ୍ରାପ୍ତ ବୟସ୍କ ଅନନୁଭୂତ ସମସ୍ତ ବ୍ୟକ୍ତିବିଶେଷ ଲାଗି ଅଭିପ୍ରେତ ହୋଇ ନ ପାରେ । ଯୌବନର ବାସ୍ତବ ବିଜ୍ଞାନ ଯୌନ ଜୀବନର ସମସ୍ୟାମାନଙ୍କ ବିଭାଗୀ କରଣ ଓ ତନ୍ନିହିତ 'ସୁ' ଏବଂ 'କୁ' ସୌନ୍ଦର୍ଯ୍ୟ-ସମ୍ଭାର ସମ୍ବଳିତ ବହୁମୁଖୀ ମାନସିକ-ପ୍ରଗତିଶୀଳତା, ସୁସ୍ଥ ସବଳ ସଂଯତ ସୁନିୟନ୍ତ୍ରିତ ଆଦର୍ଶନିବାସ, ସଂଯମର ବିଭିନ୍ନ ପନ୍ଥା, ସ୍ଖଳନର ସୃଷ୍ଟି ଓ ତାହାର ଯଥାର୍ଥ ପ୍ରତିକାର, ନୀତି ଓ ସୁବିଚାରର ଏକ ଦିଗରେ ଯଥେଚ୍ଛ ପ୍ରୟୋଗ ପ୍ରଭୃତି ନାନାବିଧ ବିଷୟ ଏହି ଗ୍ରନ୍ଥରେ ସନ୍ନିବିଷ୍ଟ ହୋଇ ଯୌନ ଜୀବନ ପଥରେ ପଥିକମାନଙ୍କୁ ସତର୍କ କରିଦେଉଛି ଏବଂ ସେମାନଙ୍କ ଦୃଷ୍ଟିଭଙ୍ଗୀ କୋଣକୁ ମାନସିକ ଶୁଦ୍ଧ ବିଜ୍ଞାନ ଦୃଷ୍ଟିରୁ ଅଧିକ ବିସ୍ତାରିତ କରି ଦେଉଛି । ସର୍ବୋପରି ଯୌନ ଜୀବନର ସ୍ଖଳନ ଘଟିତ ଅଧୋଗତି କି କି କାରଣରୁ ସମ୍ଭବ ହୋଇଥାଏ ଏବଂ କି କି ଉପାୟରେ ତାହାର ମୂଳଚ୍ଛେଦ ସମ୍ଭବ ହୋଇ ପାରେ, ଶିକ୍ଷା ତଥା ସୁବିଚାର ସମ୍ବନ୍ଧ ଯୋଜନା ଦୃଷ୍ଟିରୁ ଏହି ଗ୍ରନ୍ଥରେ ବିଶେଷ ପରିମାଣରେ ଆଲୋଚିତ ହୋଇଛି ।

କାମବିଜ୍ଞାନ'ର ଆବଶ୍ୟକତା ସମୃଦ୍ଧ ମାନବ କଲ୍ୟାଣ ଲାଗି ଏଥିରେ ଯେପରି ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ପ୍ରଦତ୍ତ ହୋଇଛି, ସେହି ପରି ଭାବରେ ବାସ୍ତବ ଜୀବନ ପଥରେ ନିୟନ୍ତ୍ରଣ ହୋଇ ପାରିଲେ, ସଭ୍ୟମାନବର ସର୍ବବିଧ ଉନ୍ନତି ସହଜସାଧ୍ୟ ହୋଇପାରିବ, କହିବା ବାହୁଲ୍ୟ ମାତ୍ର ।

ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର ଏମ୍ ଏ ଡ଼ି ଲିଟ୍

ରେଭେନ୍ସା କଲେଜ, କଟକ,

ତା ୬।୮।୫୬

# ଗ୍ରନ୍ଥ ପ୍ରବେଶ

କାମବିଜ୍ଞାନ ୨ୟ ଖଣ୍ଡ ଉପରେ ମୋ'ର ମତାମତ ଦ'ଶ ଏହା ଜଣାଇବା ପାଇଁ ମନମୋହନ ପ୍ରେସ ତରଫରୁ ମୋତେ ଅନୁରୋଧ କରାଯାଇଅଛି । ମୋ'ର ଏ ବିଷୟରେ ଚର୍ଚ୍ଚା ନାହିଁ । ତେଣୁ ମୋ ପକ୍ଷରେ ଏହା ଏକ ଗୁରୁତର ସମସ୍ୟା । ଯୌନ ବିଜ୍ଞାନ ଅତି ପୁରାତନ ବିଜ୍ଞାନ । କେବେ ଯେ ଏହାର ଆରମ୍ଭ କହିବ କିଏ ? ପ୍ରାଚୀନ ଆୟୁର୍ବେଦାଗ୍ରଣୀ ମୁନିଋଷିମାନଙ୍କର ଏ ବିଷୟରେ ବିଶେଷ ଗବେଷଣା ଥିଲା । ସୁଶ୍ରୁତ, ଅଗ୍ନିବେଶ, ଚରକ ଆଦି ସମସ୍ତେ କିଛି ନା କିଛି ଏ ବିଷୟରେ ଚର୍ଚ୍ଚା କରି ଯାଇଅଛନ୍ତି । ବାତ୍ସ୍ୟାୟନ, କୋକକ ଆଦି ଏ ବିଷୟରେ ବିଶେଷଜ୍ଞ ଥିଲେ । ସେମାନଙ୍କ ଗବେଷଣାର ଗଭୀରତା ଜାଣିବାର ଶକ୍ତି ମଧ୍ୟ ଆମ୍ଭମାନଙ୍କର ନାହିଁ । କେବଳ ଯେ ଗବେଷଣା କରାଯାଉଥିଲା ତା ନୁହେଁ, ଶିକ୍ଷା ମଧ୍ୟ ଦିଆ ଯାଉଥିଲା । ବିଷ୍ଣୁ ଶର୍ମା ଏ ବିଷୟ ନିଜ ଶିଷ୍ୟ ରାଜପୁତ୍ରମାନଙ୍କୁ ଶିକ୍ଷା ଦେଉଥିବା ଲେଖା ଅଛି ।

ପ୍ରାଚୀନ ଓଡ଼ିଶାରେ ଯେ ଏ ବିଷୟରେ ଗ୍ରନ୍ଥମାନ ନ ଥିଲା ଏହା ନୁହେଁ । ଗୋପାଳ ଭଞ୍ଜ ଓ ଧନ ଭଞ୍ଜ ଆଦି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବ ପୁରୁଷର ଲୋକ; ସେମାନେ ଏ ବିଷୟରେ ବିଶେଷ ଚର୍ଚ୍ଚା କରି ଗ୍ରନ୍ଥମାନ ଲେଖି ଯାଇ ଅଛନ୍ତି । ଆୟୁର୍ବେଦର ଅଧଃପତନ ସଙ୍ଗେ ସଙ୍ଗେ ଏ ବିଜ୍ଞାନର ଚର୍ଚ୍ଚା କମିଗଲା । ଶେଷରୁ ଆମ୍ଭମାନଙ୍କ ଭେଲକୁ କିଛି ନାହିଁ କହିଲେ ଚଳେ ।

କେହି କେହି କହନ୍ତି ପୂର୍ବ କାଳରେ ଲୋକସଂଖ୍ୟା କମ୍ ଥିଲା । ତେଣୁ ପ୍ରଜନନ ବିଜ୍ଞାନର ଲୋଡ଼ା ଥିଲା ଅଧିକ, କିନ୍ତୁ ମୁଁ ଭାବେ ପ୍ରକୃତରେ ଏସବୁ ଗ୍ରନ୍ଥ ଏବଂ ଏ ବିଷୟର ଗବେଷଣା ଦରକାର ବର୍ତ୍ତମାନ, ଯେତେବେଳେ କି ଲୋକେ ନିଜର ବଳ ବିକ୍ରମ ଆଦି ହରାଇ, ନିଜର ସଂଯମତା ରକ୍ଷା କରି ନ ପାରି ଏବଂ

ସନ୍ତାନ ପାଳିବାରେ ଅଯୋଗ୍ୟ ହୋଇ ନାନା ପ୍ରକାର କୃତ୍ରିମ ଜନ୍ମ ନିରୋଧ ନୀତିର ଆଶ୍ରୟ ନେଉଛନ୍ତି, କେବଳ କାମ ପ୍ରବୃତ୍ତି ଚରିତାର୍ଥ ନିମନ୍ତେ । ଆର୍ଯ୍ୟ ଋଷିଙ୍କ ଯୁଗର ବିବାହ ନାହିଁ କିମ୍ବା ବିବାହର ମହତ୍ତ୍ୱ ଉଦ୍ଦେଶ୍ୟର ଧାରଣା ଆମ୍ଭମାନଙ୍କର ନାହିଁ । ଆଧୁନିକ ପ୍ରଗତିଶୀଳ ଯୁଗରେ ମୋର ଏ ପ୍ରକାର ମତ ଗ୍ରାହ୍ୟ ନ ହୋଇ ପାରେ ମାତ୍ର ଏ ଦିଗରେ ଶ୍ରଦ୍ଧାଧାରୀ ହୋଇ ପ୍ରଗତିଶୀଳ ହେବାରେ କ୍ଷତି କ'ଣ ?

କାମ ଲାଳସା ଚରିତାର୍ଥ କାମବିଜ୍ଞାନର ଉଦ୍ଦେଶ୍ୟ ନୁହେଁ, ଏହାର ଉଦ୍ଦେଶ୍ୟ ହେଉଛି । କିପରି ସୁସ୍ଥ, ସବଳ ଏବଂ ମେଧାବୀ ସନ୍ତାନ ଜନ୍ମ ହେବେ, କିପରି ଲୋକେ ପୂର୍ଣ୍ଣ ଯୌବନ ରକ୍ଷି ଦୀର୍ଘାୟୁ ହେବେ, କିପରି ଶରୀର ନିରୋଗ ରହିବ, କିପରି ଦାମ୍ପତ୍ୟ ଜୀବନ ସୁଖମୟ ଏବଂ ଉପଭୋଗ୍ୟ ହେବ, ଏହି ସବୁ କାମ-ବିଜ୍ଞାନ ବା ଯୌନ-ବିଜ୍ଞାନର ପ୍ରକୃତ ଉଦ୍ଦେଶ୍ୟ । ତେଣୁ ଏ ବିଜ୍ଞାନ ଦେଶ ପକ୍ଷରେ ଉପଯୋଗୀ ଏହା କହିବା ବାହୁଲ୍ୟ ମାତ୍ର ।

ଯୌନ-ବିଜ୍ଞାନର ଚର୍ଚ୍ଚା ଆଗେ ପାଶ୍ଚାତ୍ୟ ଦେଶରେ ନ ଥିଲା ; ଏବେ ବିଶେଷ ଭାବରେ ଚର୍ଚ୍ଚା ଏବଂ ଗବେଷଣା ଆରମ୍ଭ ହେଲାଣି । ଆନନ୍ଦର ବିଷୟ ଏହି ଯେ ଏହି କେତେକ ବର୍ଷ ହେବ ପ୍ରାଚ୍ୟ ଦେଶରେ ମଧ୍ୟ ସ୍ଥାନେ ସ୍ଥାନେ ଏ ବିଷୟରେ କିଛି ଚର୍ଚ୍ଚା ହେଉଥିବାର ଦେଖା ଯାଉଛି । ଆମ ଉତ୍କଳରେ ଶ୍ରୀଯୁକ୍ତ ମୋହନ ଚରଣ ଦାସ ଏ ଦିଗରେ ଅଗ୍ରଣୀ ହୋଇଛନ୍ତି । କେତେକ ଦିନ ତଳେ ତାଙ୍କ ପ୍ରେସରୁ କାମ ବିଜ୍ଞାନ ପ୍ରଥମ ଖଣ୍ଡ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଦ୍ୱିତୀୟ ଖଣ୍ଡ ପ୍ରକାଶିତ ହେଉଛି ।

ବହୁ ପରିଶ୍ରମ କରି ପୁରାତନ ଏବଂ ଆଧୁନିକ, ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଗ୍ରନ୍ଥମାନଙ୍କରୁ ନାନା ବିଷୟ ସଂଗ୍ରହ କରି ଏ ବିରାଟ ପୁସ୍ତକ ସଂକଳନ ଶ୍ରୀଯୁକ୍ତ ଦାସଙ୍କର ଧୈର୍ଯ୍ୟ ଏବଂ ସାହସର ପରିଚୟ

ଦାଏ । ଶ୍ରୀଯୁକ୍ତ ଦାସ ଜୀବନରେ ଧନାଢ୍ୟ ପ୍ରକାଶକ ଓ ପ୍ରେସ ମାଲିକ ଭାବରେ ପରିଚିତ ହୋଇ ପାରନ୍ତି, କିନ୍ତୁ ମୁଁ ତାଙ୍କୁ ଦେଖି ଆସୁଛି ଗତ ୪୫ ବର୍ଷ ହେବ। ସେ ନିଜେ ନିଜକୁ ଗଢ଼ିଛନ୍ତି, ନିଜେ ନିଜକୁ ଉଠାଇଛନ୍ତି ତଳୁ ଏତେ ଉପରକୁ । କେହି ତାଙ୍କୁ ସାହାଯ୍ୟ କରି ନାହିଁ । ଏହା ତାଙ୍କର ନିଷ୍ଠା ଏବଂ ଅଧ୍ୟବସାୟର ଫଳ । ତେଣୁ ତାଙ୍କ ପକ୍ଷରେ ଏ ଉଦ୍ୟମ କିଛି ନୁହେଁ । ତାଙ୍କଠାରୁ ଆଶା କରି ଯାଏ ଏ ଦିଗରେ ଗବେଷଣା ମୂଳକ ଅନୁଷ୍ଠାନ ଗଠନ ।

ମୁଁ ଶିକ୍ଷାବିତ୍ ନୁହେଁ, ତେଣୁ କେଉଁ ବିଷୟ କେତେବେଳେ ଶିକ୍ଷା ଦେବା ଉଚିତ ଏହା ମୁଁ କହି ପାରିବି ନାହିଁ। ବାଳକ-ମାନଙ୍କ ହାତରେ ଏ ଗ୍ରନ୍ଥ ପଡ଼ିଲେ ମାଙ୍କଡ଼ ହାତରେ ଶାଳଗ୍ରାମ ପଡ଼ିବା ଭଳି ହେବ ବୋଲି ମୋ'ର ଭୟ । ବାଳକମାନଙ୍କ ହାତରେ ଏ ବହି ଯେପରି ନ ପଡ଼ିବ ତାର ଅବଶ୍ୟ ବ୍ୟବସ୍ଥା ହୋଇଛି ମାତ୍ର ତାହା କେତେଦୂର କାର୍ଯ୍ୟକାରୀ ହେବ ତାହା କହିବ କିଏ ? ଏ ଦିଗରେ ଅଭିଭାବକ ଏବଂ ଶିକ୍ଷକମାନଙ୍କର ଦୃଷ୍ଟି ଦେବା ଉଚିତ ।

ଶ୍ରୀଯୁକ୍ତ ଦାସଙ୍କ କାମବିଜ୍ଞାନର ଉପାଦେୟତା ଜାଣିବାର ସମୟ ବର୍ତ୍ତମାନ ହୋଇନାହିଁ । ଯେତେବେଳେ ଯୌନବିଜ୍ଞାନ ବିଷୟରେ ଗବେଷଣା ଆରମ୍ଭ ହେବ ସେତେବେଳେ ଏହାର ଉପାଦେୟତା ଲୋକେ ଉପଲବ୍ଧି କରି ପାରିବେ। ବିଷୟଗତ ଗବେଷଣା ପାଇଁ ଗ୍ରନ୍ଥ ସଂଗ୍ରହ ନିତାନ୍ତ ଦରକାର । ନ ନା ଗ୍ରନ୍ଥରୁ ନାନା ତଥ୍ୟ ସମ୍ବଳିତ କାମ ବିଜ୍ଞାନ ଏ ଦିଗରେ ବିଶେଷ ସହାୟକ ହେବ।

ଶ୍ରୀଯୁକ୍ତ ଦାସଙ୍କ ଉଦ୍ୟମ ପ୍ରଶଂସନୀୟ ।

ଶ୍ରୀ ବନବିହାରୀ ପଟ୍ଟନାୟକ
୬।୮।୫୩ ଅବସର ପ୍ରାପ୍ତ ( ନିଦାନତତ୍ତ୍ୱ ) ଅଧ୍ୟକ୍ଷ
ଶ୍ରୀ ରାମଚନ୍ଦ୍ର ମେଡ଼ିକାଲ କଲେଜ, କଟକ

# ସ୍ୱଭ କାମନା

"We imust mprove our knowledge (in sex), if we wish to improve our morals"

Havelock Ellis

"ଆମର ନୈତିକ ଚରିତ୍ର ଉନ୍ନତ କରିବାକୁ ହେଲେ ଆମେ ଯୌନଜ୍ଞାନ ବୃଦ୍ଧି କରିବାକୁ ହିଁ ହେବ ।"

ବର୍ତ୍ତମାନ ବଜାରରେ ଯୌନଜ୍ଞାନ ବିତରଣ କରିବା ଉଦ୍ଦେଶ୍ୟରେ ଯେଉଁ ସବୁ ପୁସ୍ତକ ଓଡ଼ିଆ ଭାଷାରେ ପ୍ରକାଶିତ ହୋଇ ଅଛି ସେ ଗୁଡ଼ିକ ଅଧିକାଂଶ ସ୍ଥଳରେ ଅତ୍ୟଧିକ ଭାବପ୍ରବଣତା ଓ ନୀତିବାଗିଶତା ଯୋଗୁ ଅସଲ ବସ୍ତୁକୁ ଘୋଡ଼ାଇ ଚାଲିଛି ଅଥବା ଏକବାର ବିପରୀତ ଦିଗରେ ଦୈହିକ ପ୍ରୟୋଜନ ଉପରେହିଁ ଅତିରିକ୍ତ ଜୋର ଦେଉଅଛି । କିନ୍ତୁ ମନୁଷ୍ୟର ଏହି ମହାନ୍ ବାସ୍ତବ ଯୌନ ଜୀବନ ସମ୍ବନ୍ଧରେ ଉନ୍ନତ ମନୁଷ୍ୟ ଆଜି ଚାହୁଁଛି ନୂତନ ତଥ୍ୟ, ନୂତନ ବାଣୀ ।

ଆମେ ପୃଷ୍ଠାରେ ସମ୍ପୂର୍ଣ୍ଣ ଏହି ବିପୁଳ କାମ ବିଜ୍ଞାନ ଦ୍ୱିତୀୟ ଭାଗ ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ଏକ ନୂତନ ଏବଂ ଅପୂର୍ବ ସମ୍ପଦ ରୂପେ ଗଣ୍ୟ ହେବ, ଏଥିରେ ସନ୍ଦେହ ନାହିଁ । ଯୌନ-ଜୀବନ ଓ ଯୌନ ସମସ୍ୟାର ଏପରି ବିସ୍ତୃତ, ମନୋହର ଏବଂ ବିଶ୍ଳେଷଣ ମୂଳକ ଆଲୋଚନାପୂର୍ଣ୍ଣ ପୁସ୍ତକ ଓଡ଼ିଆ ଭାଷାରେ ଇତି ପୂର୍ବେ ଲେଖା ହୋଇନାହିଁ ବୋଲି ମୋ'ର ବିଶ୍ୱାସ ।

ଗ୍ରନ୍ଥକାର ଦେଶୀ, ବିଦେଶୀ, ଆଧୁନିକ ଓ ପୁରାତନ ବହୁ କାମଶାସ୍ତ୍ର, ଗ୍ରନ୍ଥ ଏବଂ ଚିକିତ୍ସା-ବିଜ୍ଞାନର ନିର୍ଦ୍ଦେଶାବଳୀ ଅନୁସନ୍ଧାନ

କରି ଯେଉଁ ସମସ୍ତ ତଥ୍ୟ ସଂଗ୍ରହ କରିଛନ୍ତି ସେଥିରେ ତାଙ୍କର ପାଣ୍ଡିତ୍ୟ ଓ ପରିଶ୍ରମର ଭୂୟସୀ ପ୍ରଶଂସା ନ କରି ରହି ହୁଏ ନାହିଁ । ପ୍ରାଚୀନ ହିନ୍ଦୁଭାରତର ସଂସ୍କୃତ କାମଶାସ୍ତ୍ର, ଆରବ, ମିଶର ଓ ମୁସଲିମ ଭାରତର ଯୌନ-ବିଦ୍ୟା ବିଷୟକ ଗ୍ରନ୍ଥାବଳୀ ଏବଂ ଆଧୁନିକ ୟୁରୋପର ବହୁ ପଣ୍ଡିତଙ୍କର ଗବେଷଣା ଫଳ ସେ ଯେପରି ମୁଷ୍ଟି ମଧ୍ୟରେ ସଂଗ୍ରହ କରି ରଖିଛନ୍ତି ! ଭାଷାର ସରଳତା, ପ୍ରକାଶ ଭଙ୍ଗୀର ପ୍ରାଞ୍ଜଳତା ଏବଂ ବର୍ଣ୍ଣନାର ସ୍ୱଚ୍ଛତାରେ ଏହି ଜଟିଳ ଯୌନତତ୍ତ୍ୱ ମଧ୍ୟ ଉପନ୍ୟାସ ପରି ମଧୁର ହୋଇ ପାରିଛି । ଓଡ଼ିଶାର ଯୌନ ସାହିତ୍ୟ ଏଥି ପାଇଁ ଚିରଦିନ ତାଙ୍କ ପାଖରେ ଋଣୀ ରହିବ ।

ଗ୍ରନ୍ଥକାରଙ୍କୁ ମୁଁ ମୋର ଆନ୍ତରିକ ଅଭିନନ୍ଦନ ଜଣାଉଛି। ସଙ୍ଗେ ସଙ୍ଗେ ଏହି ଗ୍ରନ୍ଥର ବହୁଳ ପ୍ରଚାର କାମନା କରେ ଏବଂ ଆଶାକରେ ଓଡ଼ିଶାର ଘରେ ଘରେ ପ୍ରାପ୍ତ ବୟସ୍କମାନଙ୍କ ମଧ୍ୟରେ ଏହା ସମାଦର ଲାଭ କରିବ ।

ଶ୍ରୀ ହୃଷୀକେଶ ରାୟ ଏମ୍. ଏ., ବି. କମ୍., ଏଲ୍ ଏଲ୍.ବି

ଉଗ୍ରପଡ଼ା — ସମ୍ପାଦକ—'ଜୀବନ'

କଟକ—୨ — ଆଡ୍‌ଭୋକେଟ

୧-୮-୬୩ — ହାଇକୋର୍ଟ ( ଓଡ଼ିଶା )

# ଅଭିନନ୍ଦନ

ମନୁଷ୍ୟ ଜୀବନର ବିଭିନ୍ନ ବିଭାଗ ମଧ୍ୟରେ ଯୌନ-ଜୀବନ ଅତି ବିଚିତ୍ର ଓ ରହସ୍ୟମୟ । ଯୁଗ ଯୁଗର ସାଧନା ପରେ ଶିକ୍ଷା ସଭ୍ୟତା, ବିଜ୍ଞାନର ଉତ୍କର୍ଷତା ସାଧିତ ହୋଇଥିଲେ ମଧ୍ୟ ଯୌନ ଜୀବନର ଆଦର୍ଶର ନିରପେକ୍ଷ ମାନଦଣ୍ଡ ବା ଶ୍ଳୀଳତା, ଶାଳୀନତାର ସୀମା ରେଖା ନିର୍ଦ୍ଦିଷ୍ଟ ରୂପେ ନିର୍ଣ୍ଣୀତ ହୋଇ ପାରି ନାହିଁ । କାରଣ ବିଭିନ୍ନ ଦେଶ, କାଳ, ପାତ୍ରର ତାରତମ୍ୟକୁ ଏଡ଼ାଇ ଦେବା ଏ ପର୍ଯ୍ୟନ୍ତ ସମ୍ଭବପର ହୋଇ ନାହିଁ ।

ପୃଥିବୀର ବିଶିଷ୍ଟ ଯୌନତତ୍ତ୍ୱବିଦ୍ ହାଭଲକ୍ ଇଲିସ୍, ଭାରତର ବାତ୍ସ୍ୟାୟନ, କୋଠକ ମୁନି, ଗୃବଯୁଣି ପ୍ରଭୃତି ମନୀଷୀଗଣ ଯୌନ ଜୀବନର ରହସ୍ୟାବୃତ ତଥ୍ୟ ଉଦ୍‌ଘାଟନ କରି ଲୋକର କୌତୁହଳ ପିପାସାକୁ ଯଥେଷ୍ଟ ଖୋରାକ ଯୋଗାଇଛି। ସଙ୍ଗେ ସଙ୍ଗେ ଜୀବନକୁ ସଂଯତ ଓ ନିୟନ୍ତ୍ରିତ କରିବାରେ ସାହାଯ୍ୟ କରିଅଛନ୍ତି । ମାତ୍ର ଓଡ଼ିଆ ଭାଷାରେ ଏ ଜାତୀୟ ପୁସ୍ତକର ଯେ ଅଭାବ ଥିଲା, ତାହା କାମ-ବିଜ୍ଞାନ ୨ୟ ଭାଗର ସଙ୍କଳୟିତା ଦୂର କରିବାରେ ବ୍ରତୀ ହୋଇଅଛନ୍ତି । ସାଧାରଣ ଲେଖକଙ୍କ ପରି ମନୁଷ୍ୟ ଜୀବନର ଗୁପ୍ତ ବିଭାଗର ନଗ୍ନ ଆଲୋଚନା କରି କେବଳ ଯୌନ ଉଦ୍ଦୀପନା ସୃଷ୍ଟି କରିବାକୁ ଲକ୍ଷ୍ୟ ନ ରଖି ଲେଖକ ସ୍ଖଳନ ପତନୋନ୍ମୁଖ ନରନାରୀଙ୍କୁ ଠାଣୁଆ ତାଗିଦ୍ ଶୁଣାଇଛନ୍ତି ।

ଏ ଜାତୀୟ ପ୍ରଚେଷ୍ଟାରେ ନୀତିବାଗୀଶମାନଙ୍କର ଶୁଭ ଦୃଷ୍ଟିରୁ ଲେଖକ ବଞ୍ଚିତ ହେଲେ ଓ ମାତ୍ର ଯୌବନର ପିଚ୍ଛିଳ ପଥର ଅଭିଯାତ୍ରୀଙ୍କୁ ପ୍ରତି ପଦକ୍ଷେପରେ ଯେ ଯଥାର୍ଥ ସାହାଯ୍ୟ କରିବେ ଏଥିରେ ସନ୍ଦେହ ନାହିଁ । ଇତି ।

**କବିରାଜ ଶ୍ରୀ ବନମାଳୀ ଦାସ, ଆୟୁର୍ବେଦଶାସ୍ତ୍ରୀ**

କାର୍ଯ୍ୟାଧ୍ୟକ୍ଷ—ନିଖିଳୋତ୍କଳ ବୈଦ୍ୟସମ୍ମିଳନୀ

ରାଣୀହାଟ, କଟକ    ଏବଂ ସମ୍ପାଦକ, ସ୍ୱାସ୍ଥ୍ୟସଦନ




ଆମ୍ଭମାନଙ୍କ ଆର୍ଯ୍ୟ ସଭ୍ୟତାରେ କାମଶାସ୍ତ୍ରାଲୋଚନା ଯେ ଏକଦା ଉଚ୍ଚ ସ୍ତରର ଥିଲା ତାହା ସ୍ୱୀକାର କରିବାର କଥା । ପ୍ରାଚୀନ ଆର୍ଯ୍ୟ ଋଷିମାନଙ୍କ ରଚିତ ଅନଙ୍ଗରଙ୍ଗ, ପଞ୍ଚଶାୟକ, ରତି ରହସ୍ୟ, ବାତ୍ସ୍ୟାୟନ କାମସୂତ୍ର ଓ କନ୍ଦର୍ପ ଚୂଡ଼ାମଣି ଆଦି ପୁସ୍ତକ ତହିଁର ଜ୍ୱଳନ୍ତ ପ୍ରମାଣ ।

କନ୍ଦର୍ପ ଚୂଡ଼ାମଣିରେ ବର୍ଣ୍ଣିତ ଅଛି— ପ୍ରଥମେ ପ୍ରଜାପତି ( ବ୍ରହ୍ମା ) ତ୍ରିବର୍ଗ ଅର୍ଥାତ୍ ଅର୍ଥ, ଧର୍ମ ଓ କାମ, ଏହି ତିନୋଟି ବିଷୟ ନେଇ ଲକ୍ଷେ ଅଧ୍ୟାୟ ସୃଷ୍ଟି କରିଥିଲେ । ତତ୍ପରେ ମନୁ ଧର୍ମାଧିକାର ସମ୍ବନ୍ଧେ ଏବଂ ଦେବଗୁରୁ ବୃହସ୍ପତି ଅର୍ଥାଧିକାର ( ସମ୍ପତ୍ତି ଶାସ୍ତ୍ର ) ସମ୍ବନ୍ଧେ କେତେକ ବିଷୟ ବର୍ଣ୍ଣନା କରିଥିଲେ । କିନ୍ତୁ ମହାଦେବଙ୍କ ଶିଷ୍ୟ ନନ୍ଦୀ କେବଳ କାମଶାସ୍ତ୍ର ସମ୍ବନ୍ଧେ ଏକ ସହସ୍ର ଅଧ୍ୟାୟ ବର୍ଣ୍ଣନା କଲେ । ଏହାଙ୍କ ପରେ ଉଦ୍ଦାଳକ ଋଷିଙ୍କ ପୁତ୍ର ଶ୍ୱେତକେତୁ କାମ ସମ୍ବନ୍ଧେ ପାଞ୍ଚଶତ ଅଧ୍ୟାୟ, ପାଞ୍ଚାଳବାସୀ ବାଭ୍ରବ୍ୟ ଋଷି ସାଧାରଣ ସାମ୍ପ୍ରୟୋଗିକ ( କନ୍ୟା ସମ୍ପ୍ରଯୁକ୍ତ, ଭାର୍ଯ୍ୟାଧିକାର ଓ ପାରଦାରିକ ଅଧିକାର ସାତଟି ଅଧିକରଣରେ ଏବଂ ଦତ୍ତକ ନାମକ ଋଷି ବେଶ୍ୟାଧିକରଣ ( ଜୟ ମଙ୍ଗଳା ) ନାମରେ ବର୍ଣ୍ଣନା କରି-ଗଲେ । ସେହି ଦିନଠାରୁ କ୍ରମେ ଆଚାର୍ଯ୍ୟ ଗୋନର୍ଦ୍ଦୀୟ ଭାର୍ଯ୍ୟାଧିକାର ସମ୍ବନ୍ଧେ, ଆଚାର୍ଯ୍ୟ ଘୋଟକମୁଖ କନ୍ୟା ସମ୍ପ୍ରଯୁକ୍ତ ସମ୍ବନ୍ଧରେ କେତେକ ବିଷୟ ରଚନା କଲେ । ତତ୍ପରେ ଆଚାର୍ଯ୍ୟ ଗୃହସୂଣ, ଆଚାର୍ଯ୍ୟ ସୁବର୍ଣ୍ଣନାଭ, ଆଚାର୍ଯ୍ୟ କୁଚୁମାର ସେମାନଙ୍କର ଔପନିଷଦିକ ନାମକ ଗ୍ରନ୍ଥରେ ଓ ଆଚାର୍ଯ୍ୟ ଗୋଣିକା ପୁତ୍ର ପାରଦାରିକ ପ୍ରକରଣ

ସମ୍ବନ୍ଧରେ କେତେକ ବିଷୟ ରଚନା କରି ଗଲେ । ଏହିପରି ବିଭିନ୍ନ ମନୀଷୀମାନେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଭାବରେ କାମଶାସ୍ତ୍ରର ଆଲୋଚନା କରି ବହୁଗ୍ରନ୍ଥ ଲେଖି ଯାଇଛନ୍ତି ।

ପରିଶେଷରେ ଆଚାର୍ଯ୍ୟ ବାତ୍ସ୍ୟାୟନ ( ଗୁଣାଢ୍ୟ ) ଏପରି ଖଣ୍ଡ ବିଖଣ୍ଡ କାମଶାସ୍ତ୍ରକୁ ଲୋକ ହିତାର୍ଥେ ଏକତ୍ର କରି ସଂକ୍ଷେପରେ ଲେଖି ଯାଇ ଅଛନ୍ତି, ଯାହାର ନାମ କି "କାମସୂତ୍ରଂ" । ଏହି କାମ ସୂତ୍ରକୁ ଭିତ୍ତିକରି ଏ ପୁସ୍ତକର ବିଷୟ ବସ୍ତୁମାନ ସଂଗ୍ରହ କରାଯାଇ ଅଛି । ମତ ପ୍ରକାଶିତ କାମ ବିଜ୍ଞାନ ପ୍ରଥମ ଖଣ୍ଡ ଓ ବିବାହ ବିଜ୍ଞାନରେ ଯେଉଁ ସବୁ ବିଷୟ ଆଲୋଚନା କରାଯାଇ ଅଛି ତାହା ମଧ୍ୟ କପୋଳ କଳ୍ପିତ ନୁହେଁ । ସେ ସବୁ ମହର୍ଷିମାନଙ୍କ ବାକ୍ୟର ପ୍ରତିଧ୍ୱନିମାତ୍ର ।

ଆମ୍ଭମାନଙ୍କ ଦେଶରେ ଯେତେବେଳେ ଆର୍ଯ୍ୟ ମହର୍ଷିମାନଙ୍କ ଦ୍ୱାରା ଏହି ଜ୍ଞାନଗରିମାର ବିକାଶ ସାଧନ ଘଟିଥିଲା, ସେତେବେଳେ, ଆଜିକାଲି ସଭ୍ୟ ( ? ) ବୋଲି ଗର୍ବ କରୁଥିବା ୟୁରୋପ ତଥା ଆମେରିକାର ମାନବ ସମାଜ ଜଙ୍ଗଲୀ ଯୁଗ ବା ପ୍ରସ୍ତର ଯୁଗରେ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯେଉଁମାନେ ଏହି କାମଶାସ୍ତ୍ର ଦେଖି ନାହାନ୍ତି ବା ପଢ଼ିବାରୁ ବଞ୍ଚିତ କିମ୍ବା କାମଶାସ୍ତ୍ର ପଢ଼ି ମଧ୍ୟ ପ୍ରକୃତ ତଥ୍ୟ ବୁଝି ନାହାନ୍ତି ସେହି-ମାନେ ଏହାର ନିନ୍ଦା କରିପାରନ୍ତି । କିନ୍ତୁ ଏହା ନିନ୍ଦାର ବିଷୟ ନୁହେ, ନିଜ ଜ୍ଞାନ ବିବେକ ବଳରେ ଏହା ବିଚାର କରି ଦେଖିବାକୁ ହେବ ।

ପୂର୍ବ କାଳର ଯେଉଁ ପ୍ରାଚୀନ ମହର୍ଷିମାନେ ସାରାଜୀବନ ତପସ୍ୟାରତ ହୋଇ ମାନବସମାଜର ପ୍ରକୃତ କଲ୍ୟାଣ କାମନା କରୁଥିଲେ ଏବଂ ପରୋପକାର ଯେଉଁମାନଙ୍କର ଜୀବନର ବ୍ରତ ଥିଲା ସେମାନେ କଦାପି ମାନବ ସମାଜକୁ ଅସତ୍ ମାର୍ଗରେ ପରି-ଚାଳିତ କରିବାକୁ ଏତେ ବଡ଼ ବଡ଼ ଗ୍ରନ୍ଥ ଲେଖି ନ ଥାନ୍ତେ ।

ଏହି ପୁସ୍ତକରେ ପଢ଼ିବାର କାରଣ ଯେ କେତେ ଦୁର୍ନୀତି କାର୍ଯ୍ୟ, ଏହା ସ୍ପଷ୍ଟ ଦେଖାଇ ଦିଆ ଯାଇଅଛି । ବିବାହ ପୂର୍ବରୁ ପ୍ରତ୍ୟେକ ନର-ନାରୀ ଯୌନ ବିଜ୍ଞାନ ସମ୍ବନ୍ଧେ ଜ୍ଞାନ ଆହରଣ କରି ସଂସାର ପଥରେ ପଥିକ ହେଲେ ନାନା ପ୍ରକାର ଯୌନବ୍ୟାଧି ଯଥା— ପ୍ରମେହ, ଉପଦଂଶ, ଧାତ ଆଦି ଜଟିଳ ମାରାତ୍ମକ ବ୍ୟାଧିରୁ ରକ୍ଷା ପାଇବେ । ଗୃହସ୍ଥମାନେ ଏହାକୁ ପଢ଼ି ସଂଯମୀ ହୋଇ ଗୃହସ୍ଥାଧର୍ମ ପାଳନ କଲେ, ସେମାନଙ୍କର ଉଜ୍ଜ୍ୱଳ ଯୌନ-ଜୀବନର ମଧ୍ୟ ଦେଇ ସୁଠାମ ଶକ୍ତିଶାଳୀ ଓ ଜ୍ଞାନୀ ସନ୍ତାନ ଜନ୍ମହୋଇ ପୃଥିବୀରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିବେ । ଯେଉଁମାନେ କି ତ୍ରେତୟାର ହନୁମାନ ଓ ଦ୍ୱାପରର ଭୀମ ଅର୍ଜୁନ ଭଳି ବଳଶାଳୀ ଏବଂ ବର୍ତ୍ତମାନ ଯୁଗର ମହାପଣ୍ଡିତ ଓ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ପରି ହୋଇ ଦେଶକୁ ଓ ଦଶକୁ ଚରିତାର୍ଥ କରିବେ ।

ଯୌନତତ୍ତ୍ୱ ସମ୍ବନ୍ଧେ କିଛି ନ ଜାଣିବାଟା ପ୍ରକୃତରେ କୌଣସି ମାନବ ପକ୍ଷେ ବଡ଼ ଲଜ୍ଜା ଓ ନିନ୍ଦାର କଥା । ଅଜ୍ଞତା ଓ ଅତ୍ୟାଗ୍ରହ ବଶତଃ ଯୌବନ ଯେପରି କୁପଥରେ ପରିଚାଳିତ ନ ହୁଏ ଓ ଅକାରଣ ଦୁଃଖଭାରରେ ଦାମ୍ପତ୍ୟ-ଜୀବନ ଯେପରି ବ୍ୟର୍ଥ ହୋଇ ନ ଯାଏ, ଏଥି ନିମନ୍ତେ ଉପଯୁକ୍ତ ଯୌନଜ୍ଞାନ ଅବଶ୍ୟକ, ସେହି ଯୌନଜ୍ଞାନ ଅହରଣ କରିବାକୁ ହେବ ଉପଯୁକ୍ତ ଯୌନ ଗ୍ରନ୍ଥରୁ । ଏହା ଦ୍ୱାରା ଚତୁର୍ବର୍ଗ ଫଳ ଲାଭ ହୋଇ ଦାମ୍ପତ୍ୟ ଜୀବନ ସୁଖମୟ ହେବ ।

ଏଣୁ କରି ଆମ ଓଡ଼ିଆ ଭାଷାରେ ଏଭଳି ପୁସ୍ତକ ସଂଗ୍ରହ ଓ ପ୍ରକାଶ କରିବାରେ ମୁଁ ବ୍ରତୀ ହୋଇଅଛି । ଏହାକୁ ପଢ଼ି ଯଦି ଦୁଇ ଚାରି ଜଣ ହେଉନ୍ତୁ ପଛେ, ସେମାନେ ନିଜର ଯୌନଜୀବନକୁ ସୁପଥରେ ପରିଚାଳିତ ଓ ନିୟନ୍ତ୍ରିତ କରି ପାରନ୍ତି କିମ୍ବା ସ୍ୱାସ୍ଥ୍ୟ ଉପଯୋଗୀ ଆତ୍ମସଂଯମ ସହାୟତାରେ ଅକାଳରେ କାଳକୁ ଫେରି

ଅସିପାରନ୍ତି ତେବେ ଏ ଶ୍ରେଣୀର ପୁସ୍ତକ ସଙ୍କଳନ ଓ ପ୍ରକାଶ କରିବା ମୋ'ର ସାର୍ଥକ ବୋଲି ମନେ କରିବ ।

ବିଜ୍ଞାନ ସମ୍ମତ ଯୌନବିଜ୍ଞାନ ଯେ ଆମ୍ଭମାନଙ୍କର ସାମାଜିକ ସ୍ୱାସ୍ଥ୍ୟ ଓ ଗାର୍ହସ୍ଥ୍ୟଜୀବନ ପକ୍ଷରେ ଅପରିହାର୍ଯ୍ୟ, ଏହି ବିଶ୍ୱାସରେ ମୁଁ ବଳୀୟାନ । ସୁତରାଂ ମହାକଲ୍ୟାଣକର, ଶାସ୍ତ୍ରସମ୍ମତ, ନ୍ୟାୟାନୁମୋଦିତ ଓ ଦେଶ ଦଶର ମହାନ ହିତକାରୀ ସେହି ଯୌନବିଜ୍ଞାନ ଚର୍ଚ୍ଚା, ଯାହାକି ଏ ପର୍ଯ୍ୟନ୍ତ ଲୋକଚକ୍ଷୁର ଅନ୍ତରାଳରେ ଅଛି; ଯେତେ ଦୂର ପାରେ ମୁଁ ଏ ଭଳି ପୁସ୍ତକ ସଂଗ୍ରହ ଓ ପ୍ରକାଶ ଦ୍ୱାରା, ସେ ଜ୍ଞାନକୁ ଲୋକଙ୍କ ଗୋଚରକୁ ଆଣିବ, ଏହା ମୋହର ବ୍ରତ । ଏ ବ୍ରତ ମୋର ଅର୍ଥୋପାର୍ଜନର ପନ୍ଥା ପାଇଁ ନୁହେଁ ଏହା ମୋ'ର ଦେଶର ଭାଇ ଭଉଣୀଙ୍କର ସମୂହ କଲ୍ୟାଣ ଦୃଷ୍ଟିରୁ ମୋ'ର କର୍ତ୍ତବ୍ୟ ବୋଲି ମନେ କରେ ।

ମୋ'ର ପରମ ସୌଭାଗ୍ୟ ଯେ, ଅଧ୍ୟାପକ ଓ ସୁସାହିତ୍ୟିକ ଶ୍ରୀ ଜୟକୃଷ୍ଣ ମିଶ୍ର, ଶ୍ରୀ ରାମଚନ୍ଦ୍ର ମେଡ଼ିକାଲ କଲେଜର ଅବସର ପ୍ରାପ୍ତ ଅଧ୍ୟକ୍ଷ ( ନିଦାନତତ୍ତ୍ୱ ) ଶ୍ରୀ ବନବିହାରୀ ପଟ୍ଟନାୟକ, ଜୀବନ ମାସିକ ପତ୍ରିକାର ତରୁଣ ସମ୍ପାଦକ ଶ୍ରୀ ହୃଷିକେଶ ରାୟ ଓ ସୁଯୋଗ୍ୟ କବିରାଜ ଶ୍ରୀ ବନମାଳୀ ଦାସ, ଏହି ସଦାଶୟ ଭଦ୍ରବ୍ୟକ୍ତିମାନେ ଯଥାକ୍ରମେ ପୁସ୍ତକ ପରିଚୟ, ଗ୍ରନ୍ଥ ପ୍ରବେଶ, ଶୁଭକାମନା ଓ ଅଭିନନ୍ଦନ ଲେଖି ମୋତେ ଉତ୍ସାହିତ କରୁଥିବାରୁ ମୁଁ ସେମାନଙ୍କ ନିକଟରେ ବିଶେଷଭାବେ କୃତଜ୍ଞତା ପାଶରେ ଆବଦ୍ଧ ।

ପରିଶେଷରେ ମୋ'ର ସହକାରୀ ଶ୍ରୀ ନଟବର ହରିଚନ୍ଦନ ଏ ପୁସ୍ତକ ସଙ୍କଳନରେ ବିଶେଷଭାବରେ ସାହାଯ୍ୟ କରିଥିବାରୁ ତାଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି ।

**ଶ୍ରୀ ମୋହନ ଚରଣ ଦାସ**

# ମନମୋହନ ପୁସ୍ତକାଳୟର

## କାମବିଜ୍ଞାନ ଓ ବିବାହ ବିଜ୍ଞାନ

## ଅଶ୍ଳୀଳ ନୁହେ ।

ଏଥି ମଧ୍ୟରେ ମୋ ଦ୍ୱାରା ପ୍ରକାଶିତ କାମବିଜ୍ଞାନ ୧ମ, ୨ୟ ଓ ବିବାହ ବିଜ୍ଞାନ ଉପରେ ବହୁ ହଡ଼ହଙ୍କା ବହିଯାଇଛି । ଉକ୍ତ ପୁସ୍ତକ ଗୁଡ଼ିକ ବହୁ କାଳରୁ ପ୍ରକାଶିତ ହୋଇ ଉତ୍କଳ ଜନସାଧାରଣଙ୍କର ଆଦୃତ ହୋଇଥିଲେ ସୁଦ୍ଧା, ପଶ୍ଚିମବଙ୍ଗ ସରକାର ଉକ୍ତ ପୁସ୍ତକଗୁଡ଼ିକ ଅଶ୍ଳୀଳ ବୋଲି ଅଭିଯୋଗ କରି ଭାରତୀୟ ଦଣ୍ଡ ବିଧି ଆଇନର ୨୯୨ ଦଫା ଅନୁସାରେ ଏକ ମୋକଦ୍ଦମା ଆଗତ କରିଥିଲେ । ତାହା ଦୀର୍ଘ ୧୩ ମାସ ଚାଲିଲା ପରେ ଗତ ୧୪।୧୨।୫୨ ରେ ତାର ପରିସମାପ୍ତି ଘଟିଅଛି ଏବଂ ସମସ୍ତ ପୁସ୍ତକ ଗୁଡ଼ିକ ଅଶ୍ଳୀଳତା ଅଭିଯୋଗରୁ ସମ୍ମାନର ସହିତ ମୁକ୍ତି ଲାଭ କରିଅଛି ।

ଏହି ମୋକଦ୍ଦମା ହେତୁ ପ୍ରାୟ ବର୍ଷାଧିକ କାଳ କଲିକତାର ଗ୍ରାହକମାନେ କାମବିଜ୍ଞାନ ଓ ବିବାହ ବିଜ୍ଞାନ କ୍ରୟ କରିବାକୁ ଆସି ବିମୁଖ ହୋଇ ଫେରିଛନ୍ତି, ସେମାନଙ୍କୁ ମୁଁ କ୍ଷମା ପ୍ରାର୍ଥନା ମାଗୁଛି । ବର୍ତ୍ତମାନ ସେ ସବୁ ପୁସ୍ତକ ବିକ୍ରୟ ପାଇଁ ଗଚ୍ଛିତ ଅଛି । କେବଳ ଆପଣମାନଙ୍କର ସହାନୁଭୂତି ଆଶାରେ ଲାଭର ଲୋଭ ନ ରଖି ମୁଁ ଏ ପଥରେ ଅଗ୍ରସର ହୋଇଅଛି । ଅଧିକ ଅଗ୍ରସର ହୋଇ ଏହାର ୩ୟ ଖଣ୍ଡ ନିକଟ ଭବିଷ୍ୟତରେ ପ୍ରକାଶ କରିଅଛି । ଆପଣମାନଙ୍କ ସହଯୋଗ ହିଁ କାମନା ।

ଗ୍ରାହକବର୍ଗଙ୍କ ଗୋଚରାର୍ଥେ ସେହି ସେହି ମୋକଦ୍ଦମା ବିବରଣ ଓ ରାୟର ସଂକ୍ଷିପ୍ତ ନକଲ ନିମ୍ନରେ ଦିଆଗଲା ।

**ମୋହନ ଚରଣ ଦାସ**

ସ୍ୱତ୍ୱାଧିକାରୀ

## ପୁଲିସ ରିପୋର୍ଟ

କଲିକତାର ୧୨୭।୧ ଏ, ବହୁବଜାର ଷ୍ଟ୍ରିଟ୍‌ର ଅବସ୍ଥିତ ମନମୋହନ ପୁସ୍ତକାଳୟ କେତେକ ଅଶ୍ଳୀଳ ଓଡ଼ିଆ ପୁସ୍ତକ ଲୋକଙ୍କୁ ବିକ୍ରୟ କରୁଥିବାର ସମ୍ବାଦ ପାଇ, ତା ୭।୧୨।୫୫ ରେ ଉକ୍ତ ପୁସ୍ତକାଳୟ ତଦନ୍ତ କରିବାରେ କେତେକ ଅଶ୍ଳୀଳ ପୁସ୍ତକ ସେଠାରୁ ଜବତ କରାଯାଇ ଦୋକାନର ମେନେଜର ସମେତ ୪ ଜଣ କର୍ମଚାରୀଙ୍କୁ ଅଶ୍ଳୀଳ ପୁସ୍ତକ ବିକ୍ରୟ କରୁଥିବା ଅଭିଯୋଗରେ ଗିରଫ କରାହୋଇ ସେମାନଙ୍କ ବିରୁଦ୍ଧରେ ଭାରତୀୟ ଦଣ୍ଡ ବିଧି ଆଇନର ୨୯୨ ଧାରା ଅନୁସାରେ ମୋକଦ୍ଦମା ଆଗତ କରାଗଲା ।

## ମୋକଦ୍ଦମାର ରାୟ

କାମବିଜ୍ଞାନ ୧ମ, ୨ୟ, ଓ ବିବାହ ବିଜ୍ଞାନ ପୁସ୍ତକ ସମ୍ପର୍କିତ ବହି ଗୁଡ଼ିକ ଉପରେ ଅଶ୍ଳୀଳତାର ଅଭିଯୋଗ ଆରୋପ କରାଯାଇ ମୋକଦ୍ଦମା ଆଗତ କରାଯାଇଅଛି । ପୁଲିସ ଏଥିରେ ୭ ଜଣଙ୍କୁ ମୁଦାଲା ଶ୍ରେଣୀଭୁକ୍ତ କରିଛନ୍ତି । କିନ୍ତୁ ସମସ୍ତ ମୁଦାଲା ନିର୍ଦ୍ଦୋଷ ବୋଲି ମତବ୍ୟକ୍ତ କରୁଅଛନ୍ତି ।

ପ୍ରଥମ ପ୍ରଶ୍ନ ହେଉଛି ଏହି ସବୁ ପୁସ୍ତକରେ ଥିବା ବିଷୟ ଗୁଡ଼ିକ ଅଶ୍ଳୀଳ କି ନା ?

× × × ×

ମୁଁ ଏଠାରେ କହୁଛି ଯେ, ବହି ଗୁଡ଼ିକରେ ଥିବା ବିଷୟ ବସ୍ତୁ ଗୁଡ଼ିକ ଯଦିଓ ଅନୁବାଦ କରା ହୋଇଛି ବୋଲି ନମ୍ବର ସାକ୍ଷୀଙ୍କ ଦ୍ୱାରା କୁହା ହୋଇଛି, ତଥାପି ସେ ଗୁଡ଼ିକ କୋର୍ଟରେ ଦାଖଲ ହୋଇ ନାହିଁ । ଏଣୁ ପ୍ରମାଣ ହେଲା ଯେ, ବହିଗୁଡ଼ିକର ବିଷୟ ବସ୍ତୁରେ କୌଣସି ଅଶ୍ଳୀଳତା ନାହିଁ ।

ଶବ୍ଦ ସମ୍ବନ୍ଧରେ ବିଚାର କରି ଗଲେ ଦେଖାଯାଏ ଯେ କାମବିଜ୍ଞାନ ୨ୟରେ ଥିବା ଶବ୍ଦ ଗୁଡ଼ିକ ଅଶ୍ଳୀଳ ନୁହେଁ । ତାକ ଅନ୍ୟ ଦୁଇଟି ପୁସ୍ତକର ଶବ୍ଦ କଥା ବିଚାର କରାଯାଉ । ମୁଁ ସେସବୁ ଶବ୍ଦ ଦେଖିଲି । କିନ୍ତୁ ସେ ସବୁ ଅଶ୍ଳୀଳ ଶବ୍ଦ ହୋଇ ନ ପାରେ । ଆଇନ କହୁଛି, ଯେଉଁ ଶବ୍ଦ ଦେଖିଲେ ଲୋକଙ୍କ ମନରେ ଖରାପ ଭାବ ଜାଗ୍ରତ ହୋଇ ଲୋକେ ଖରାପ କାର୍ଯ୍ୟରେ ଅଗ୍ରସର ହୁଅନ୍ତି, ସେହି ସବୁ ଶବ୍ଦ ଅଶ୍ଳୀଳ । ସେହି ସବୁ ପୁସ୍ତକ ଗୁଡ଼ିକ ଯେ ଖୋଲା ଭାବରେ ଯାହାକୁ ଇଚ୍ଛା ତାକୁ ବିକ୍ରୟ କରାହୁଏ, ଉକ୍ତ କେସରେ ଏପରି ପ୍ରମାଣ କୋର୍ଟରେ ଦର୍ଶାଯାଇ ପାରି ନାହିଁ । ବରଂ ଏ ପୁସ୍ତକ ଗୁଡ଼ିକ ଯଥାମତ କାଇଦା କଟକଣାରେ ଭିତର ସହିତ ସିଲ୍ ହୋଇ କେବଳ ବିବାହିତା ସ୍ତ୍ରୀ ପୁରୁଷ ଲୋକଙ୍କୁ ସେମାନଙ୍କ ଘରୋଇ ବ୍ୟବହାର ନିମିତ୍ତ ଉପଯୁକ୍ତ ପ୍ରତିଜ୍ଞା ପତ୍ର (ସତ୍ୟପାଠ) ରେ ସ୍ବାକ୍ଷର ସହ ବିକ୍ରୟ କରାହୁଏ ।

କାମବିଜ୍ଞାନ ୧ମରେ ଥିବା ଶବ୍ଦ ଗୁଡ଼ିକ, ଯାହାକି ଅଶ୍ଳୀଳ ବୋଲି ଅଭିଯୁକ୍ତ ହୋଇ ଅଛି, ସେ ଗୁଡ଼ିକ ନାରୀ ପୁରୁଷର ନକ୍ସା ମାନ । ଅଜ ମଧ୍ୟ ସେ ନକ୍ସା ଗୁଡ଼ିକରେ ଲିଙ୍ଗ ବା ଯୋନିର ଚିତ୍ର କରାଯାଇ ନାହିଁ । କେବଳ ଖାଲି ଦେହ ଦେଖାଇ ଦିଆ ଯାଇଅଛି । ଏଣୁ ମୁଁ ଭାବୁଛି ସେ ଗୁଡ଼ିକ ଶରୀର ଭଙ୍ଗୀ ମାତ୍ର ଅଟେ । ସେ ସବୁ ମଧ୍ୟ ଭାରତରେ ଚଳୁଥିବା ଅନ୍ୟ ପୁସ୍ତକରୁ ନିଆ ଯାଇଅଛି, ଯେଉଁ ପୁସ୍ତକ କି ଭାରତର କୌଣସି ବିଚାରାଳୟରେ ଅଭିଯୁକ୍ତ ହୋଇ ନାହିଁ ।

ସୁତରାଂ ଯୌନବିଜ୍ଞାନ ସମ୍ବଳିତ ପୁସ୍ତକମାନ ବର୍ତ୍ତମାନ ସାରା ପୃଥିବୀରେ ଏକ ବିଜ୍ଞାନ ରୂପେ ପରିଗଣିତ ହେଉଥିବା ସ୍ଥଳେ ଏବଂ ଯୌନଜ୍ଞାନାନ୍ୱେଷୀ ବ୍ୟକ୍ତିମାନେ ସେ ଜ୍ଞାନ ଆହରଣ କରିବାକୁ ଆଗ୍ରହୀ ହେଉଥିବା ସ୍ଥଳେ ଯୌନଚର୍ଚ୍ଚା ନିଷେଧ କରି ଦିଆଯାଇ

ନ ପାରେ । ବହୁ ପୁସ୍ତକ ବର୍ତ୍ତମାନ ଏପରି ଚର୍ଚ୍ଚା କରୁଅଛନ୍ତି, ସାରା ପୃଥିବୀରେ କେଉଁଠି ଏହା ନିଷେଧ କରାଯାଇ ନାହିଁ ।

ଏ ପୁସ୍ତକର ଚିତ୍ରଗୁଡ଼ିକ ନାରୀ ପୁରୁଷର ବିଭିନ୍ନ ଭଙ୍ଗୀ ମାତ୍ର । ପୁଣି ବିନା ଲଙ୍ଗ ଯୋନିରେ ପୃଥକ ଭାବେ ଦେଖାଇ ଦିଆଯାଇଅଛି । ଏଣୁ ମୋ ମତରେ ଏହା ଅଶ୍ଳୀଳ ହୋଇ ନ ପାରେ ।

\+ \+ \+ \+ \+

ଏହା ସମ୍ପୂର୍ଣ୍ଣ ସତ୍ୟ ଯେ ନଂ ୫ ଆସାମୀ ସ୍ୱତ୍ୱାଧିକାରୀ ଶ୍ରୀ ମୋହନ ଚରଣ ଦାସ ଏହି ପୁସ୍ତକାଳୟର ପରିଚାଳକ ଅଟନ୍ତି । ତାଙ୍କ ବିରୁଦ୍ଧରେ ଅଭିଯୋଗଟି ପ୍ରମାଣ କରାଯାଇ ପାରିଥାନ୍ତା । କିନ୍ତୁ ସେ ଏକ ଲିଖିତ ଜବାବ ଦାଖଲ କରି ସେଥିରେ ବର୍ଣ୍ଣନା କରିଛନ୍ତି, ଏ ସବୁ ପୁସ୍ତକ ଗୁଡ଼ିକ ଯାହାକୁ କିଛି ତାକୁ ବିକ୍ରୀ କରାଯାଏ ନାହିଁ ଏବଂ ଏ ଗୁଡ଼ିକ ଯୌନ ବିଜ୍ଞାନ ସମ୍ବଳିତ ପୁସ୍ତକ ଅଟେ । ଅନ୍ୟ ମଧ୍ୟ ଆସାମୀ ତରଫ ଓକିଲ ପ୍ରମାଣ ଦେଖାଇଛନ୍ତି ଯେ, ଏ ପୁସ୍ତକ ଗୁଡ଼ିକ ଆଇନ ଅନୁସାରେ ରେଜିଷ୍ଟ୍ରେସନ କରାଯାଇ ଓଡ଼ିଶା ସରକାରୀ ଗେଜେଟରେ ପ୍ରକାଶିତ ହୋଇ ଅଛି । ଏଥିରୁ ପ୍ରମାଣ ମିଳେ ପ୍ରକାଶକ ଓ ଲେଖକ ଉକ୍ତ ବହିକୁ ସରକାରଙ୍କ ଦୃଷ୍ଟିରୁ ଲୁଚାଇ ରଖିନାହାନ୍ତି । ଏହି ଦୃଷ୍ଟିରୁ ମୋର ମତ ଯେ ନଂ ୫ ଆସାମୀଙ୍କ ଲିଖିତ ଜବାବକୁ ଅସ୍ୱୀକାର କରିବାର କିଛି କାରଣ ନାହିଁ । ତେଣୁ ସମସ୍ତ ଅସାମୀମାନଙ୍କୁ ବେକସୁର ଖଲାସ ଦିଆଗଲା ଏବଂ ଜବତ ହୋଇଥିବା ସମସ୍ତ ପୁସ୍ତକ ଗୁଡ଼ିକ ନଂ ୫ ଆସାମୀ ଶ୍ରୀ ମୋହନ ଚରଣ ଦାସଙ୍କୁ ଫେରସ୍ତ ଦେବାକୁ ହୁକୁମ ଦିଆଗଲା ।

ସ୍ୱାଃ ଏ. ଏନ୍. ବାନର୍ଜି ପ୍ରେସିଡେନ୍‌ସୀ ମାଜିଷ୍ଟ୍ରେଟ୍, ୩୍ୟ କୋର୍ଟ କଲିକତା

ତା ୧୪ । ୧୨ । ୫୭




ବିଷୟ — ପୃଷ୍ଠା

## ପ୍ରଥମ ଅଧିକରଣ


ବେଶ୍ୟା ପ୍ରକରଣ ୧—୫୨
ଦେଶ ବିଦେଶରେ ବେଶ୍ୟାବୃତ୍ତିର ପ୍ରାଚୀନ ରୀତି ନୀତି ୩
ନାରୀ ବାରାଙ୍ଗନା ବୃତ୍ତି ଅବଲମ୍ବନ କରେ କାହିଁକି ? ୫
ବେଶ୍ୟାବୃତ୍ତି ସମ୍ବନ୍ଧେ ଆଧୁନିକ ମତାମତ ୭
ପୁରୁଷ ବେଶ୍ୟ ସକ୍ତ ହେବାର କାରଣ ୮
ସମାଜରେ ବେଶ୍ୟାର ଆବଶ୍ୟକତା ୧୧
" " ଅପକାରିତା ୧୨
ବେଶ୍ୟାର ପ୍ରକାରଭେଦ ୧୪
" ପ୍ରକାର ବାତ୍ସ୍ୟାୟନ ମତରେ ୧୫
ଗୁପ୍ତ ବେଶ୍ୟା ୧୬
ନାରୀ ଗୁପ୍ତବେଶ୍ୟା ବୃତ୍ତି କରେ କାହିଁକି ୧୯
ଗୁପ୍ତବେଶ୍ୟାର ଲକ୍ଷଣ ୨୦
ଗୁପ୍ତ ବେଶ୍ୟା ବୃତ୍ତିରେ ସହାୟତା କେଉଁମାନେ କରନ୍ତି ୨୦
ବେଶ୍ୟା ସମ୍ବନ୍ଧେ ବିଶଦ ବିଚାର ୨୨
ବେଶ୍ୟାର କର୍ତ୍ତବ୍ୟ ୨୩
ବେଶ୍ୟା କେଉଁମାନଙ୍କ ସାହାଯ୍ୟ ନେବା ଉଚିତ ୨୪
ଗମ୍ୟ ପୁରୁଷ ୨୫
ଯଶପ୍ରାପ୍ତି ଆଶାରେ ଗମ୍ୟ ପୁରୁଷ ୨୬
ଉତ୍ତମ ବେଶ୍ୟାର ଲକ୍ଷଣ ୨୭
ନାୟକ ନାୟିକାର ସାଧାରଣ ଗୁଣ ୨୭
ଅଗମ୍ୟ ପୁରୁଷ ଲକ୍ଷଣ ୨୮
ନାୟକ ସଂସର୍ଗରେ ଅନ୍ୟ କାରଣ ୨୮
ନାୟକକୁ ନିଜ ଅନୁରକ୍ତ ଆଣିବାର ଉପାୟ ୩୦
ନାୟକ ପ୍ରତି ବେଶ୍ୟାର କର୍ତ୍ତବ୍ୟ ୩୦
ଆସକ୍ତ ପୁରୁଷ ଲକ୍ଷଣ ୩୬
ବେଶ୍ୟାର ପ୍ରକୃତ ରୂପ ୩୭
ବେଶ୍ୟାର ଧନପ୍ରାପ୍ତି କୌଶଳ ୩୭
ବିରକ୍ତ ପୁରୁଷର ଲକ୍ଷଣ ୩୮

ବିଷୟ — ପୃଷ୍ଠା

ଅସକ୍ତ ପ୍ରକୃତିକୁ ଅନୁରକ୍ତ କରିବା କୌଶଳ ୪୦
ପୂର୍ବପରିଚିତ ନାୟିକା ସହିତ ପୁନର୍ମିଳନର ଉପାୟ ୪୧
ଲାଭାଲାଭ ବିଚାର ୪୬
ଅନେକ ପରିଗ୍ରହ ୪୮
ଅର୍ଥ ଅନର୍ଥ ଓ ସଂଶୟ ବିଚାର ୪୯

## ଦ୍ୱିତୀୟ ଅଧିକରଣ

ପରଦାର ପ୍ରକରଣ ୫୩—୯୧
ପରଦାର ସମ୍ବନ୍ଧେ ପ୍ରାଚୀନତା ଓ ପୌରାଣିକ ଉପାଖ୍ୟାନ ୫୩
ଭୌତିକ ସଭ୍ୟତାର ଯୁଗ ୫୭
ବାମମାର୍ଗ ୫୮
ପରଦାର ସମ୍ବନ୍ଧେ କେତୋଟି କଥା ୬୧
ଦେଶରେ ପରଦାର ବୃଦ୍ଧି ପାଇବାର କାରଣ ୬୪
ଅନ୍ୟ ସ୍ତ୍ରୀ ଗମନ କେଉଁ ଅବସ୍ଥାରେ କର୍ତ୍ତବ୍ୟ ୬୭
ନାରୀ ଚରିତ୍ର ପରୀକ୍ଷା ୭୦
କାମ ବିକାରର ଦଶ ଅବସ୍ଥା ୭୧
କେଉଁ ସ୍ତ୍ରୀ ସହଜରେ ପରପୁରୁଷଗତା ହୁଅନ୍ତି ନାହିଁ ୭୩
ସ୍ତ୍ରୀ ଗମନରେ ସଫଳ ପୁରୁଷ ଲକ୍ଷଣ ୭୪
ଅଦୃଶ୍ୟାଧ୍ୟା ସ୍ତ୍ରୀ ୭୬
ଅଭିସାରିକାର ହାବଭାବ ୭୮
ଏଥି ପ୍ରତି ନାୟକର କର୍ତ୍ତବ୍ୟ ୭୯
ଦୂତୀ ନିୟୋଗ ୮୦
ପ୍ରାଚୀନ କାଳରେ ରାଜାନ୍ତଃପୁରର ବିଳାସ ଲୀଳା ୮୨
ସ୍ୱଦାର ରକ୍ଷା ୮୪
ଗୃହଲକ୍ଷ୍ମୀ ମାନଙ୍କର ସତର୍କତା ୮୬
ଭ୍ରଷ୍ଟାକୁମାରୀର ଆତ୍ମରକ୍ଷା ୮୯

## ତୃତୀୟ ଅଧିକରଣ

ଅପ୍ରାକୃତିକ ମୈଥୁନ ୯୨—୧୦୯
ଅପ୍ରାକୃତିକ ମୈଥୁନର ପ୍ରାଚୀନତା ୯୩
ସଭ୍ୟ ମନୁଷ୍ୟ ଓ ଜୀବଜନ୍ତୁ ମଧ୍ୟରେ ସ୍ୱମୈଥୁନ ୯୪
ସ୍ୱମୈଥୁନ ଅଭ୍ୟାସକାରୀଙ୍କ ହୁଏ ୯୫
ଆତ୍ମମୈଥୁନର କାରଣ ସମୂହ ୯୫
ରମଣୀର ସ୍ୱମୈଥୁନ ୯୭
ସ୍ୱମୈଥୁନ ଅଧିକର ବ୍ୟାପକତା ୯୮
ବିବାହିତ ଓ ଅବିବାହିତ ନାରୀ ପକ୍ଷେ ସ୍ୱମୈଥୁନର ପାର୍ଥକ୍ୟ ୯୯
ପାଣି ମୈଥୁନର ବିଭିନ୍ନ ରୂପ ଓ ପରିଚୟ ୧୦୧
ଅସ୍ୱାଭାବିକ ମୈଥୁନର ବିଷମୟ ପରିଣାମ ୧୦୨
ବିବାହିତ ଜୀବନ ବ୍ୟର୍ଥ ହୁଏ କାହିଁକି ୧୦୪
ପୁରୁଷର ସ୍ୱମୈଥୁନ ୧୦୬
ପୁରୁଷର ସିଦ୍ଧହସ୍ତାନ୍ତ ସ୍ୱମୈଥୁନ ୧୦୬

| ବିଷୟ | ପୃଷ୍ଠା |
|---|---|
| ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ସ୍ୱମୈଥୁନକାରୀର ସଂଖ୍ୟା ନିର୍ଣ୍ଣୟ । | ୧୦୮ |
| ଅସ୍ୱାଭାବିକ ଉପାୟରେ ଇନ୍ଦ୍ରିୟ ତୃପ୍ତି | ୧୦୯ |
| ପରିମିତ ହସ୍ତମୈଥୁନ ସେତେ ଅନିଷ୍ଟକର ନୁହେଁ | ୧୦୯ |
| ଅତି ସଂଯମର ପରିଣାମ | ୧୧୦ |
| ହସ୍ତମୈଥୁନ ମାତ୍ରା ବଳେଇ ପଡ଼େ କାହିଁକି | ୧୧୨ |
| ପାଣିମୈଥୁନର ପ୍ରତିକାର ବ୍ୟବସ୍ଥା | ୧୧୩ |
| ସ୍ୱମୈଥୁନର କୁଫଳ | ୧୧୪ |
| ସମମୈଥୁନ | ୧୧୫ |
| ଅତୀତ ଯୁଗରେ ସମମୈଥୁନର ପ୍ରଚଳନ | ୧୧୬ |
| ସଭ୍ୟ ସମାଜରେ ଏହାର ଉଦ୍ଭବ ଓ ସ୍ଥାନ | ୧୧୮ |
| ସାମୟିକ ସମକାମୀ | ୧୦୮ |
| ଉଭୟକାମୀ ଓ ସ୍ଥାୟୀ ସମକାମୀ | ୧୧୯ |
| ସମମୈଥୁନ ସହଜାତ କିମ୍ବା ଅଭ୍ୟାସଜାତ | ୧୨୦ |
| ସମମୈଥୁନର ଉତ୍ପତ୍ତିର କାରଣ | ୧୨୦ |
| ପରିଣତ ବୟସରେ ସମମୈଥୁନ | ୧୨୧ |
| ନାରୀ ମଧ୍ୟରେ ସମମୈଥୁନ ଅଭ୍ୟାସ | ୧୨୨ |
| ଗ୍ରୀସଦେଶରେ ସମମୈଥୁନ କଣା | ୧୨୩ |
| ସ୍ୱାସ୍ଥ୍ୟନାଶୀ ସମମୈଥୁନ ଆଲୋଚନାର କାରଣ | ୧୨୩ |

| ବିଷୟ | ପୃଷ୍ଠା |
|---|---|
| ଗୁହ୍ୟ ମୈଥୁନ | ୧୨୪ |
| କଣ୍ଠର କ୍ଷତ | ୧୨୪ |
| କର୍ମର କ୍ଷତ | ୧୨୫ |
| ଅପ୍ରାକୃତିକ ମୈଥୁନପ୍ରିୟ ଅଭିଭାବକମାନଙ୍କର ସାବଧାନତା | ୧୨୭ |
| ପଶୁ ମୈଥୁନ | ୧୨୮ |


## ଚତୁର୍ଥ ଅଧିକରଣ


| ବିଷୟ | ପୃଷ୍ଠା |
|---|---|
| ନପୁଂସକତା | ୧୨୯—୧୪୦ |
| ମାନସ କ୍ଳୈବ୍ୟ | ୧୩୨ |
| ପିତୃଜ " | ୧୩୨ |
| ବାର୍ଦ୍ଧକ୍ୟ ଜନିତ କ୍ଳୈବ | ୧୩୨ |
| ରୋଗ ଜନିତ କ୍ଳୈବ୍ୟ | ୧୩୨ |
| ଶିରାଚ୍ଛେଦ ହେତୁ " | ୧୩୩ |
| ଶୁକ୍ରସ୍ତମ୍ଭନ " | ୧୩୩ |
| ସହଜ " | ୧୩୩ |
| ଆସେବ୍ୟ ନପୁଂସକ | ୧୩୪ |
| ଈର୍ଷକ " | ୧୩୪ |
| କୁମ୍ଭୀକ " | ୧୩୫ |
| ମହା ଷଣ୍ଢ " | ୧୩୫ |
| ସୌଗନ୍ଧିକ " | ୧୩୬ |
| ଆୟୁର୍ବେଦ ମତେ ନପୁଂସକର ପ୍ରକାର ଭେଦ | ୧୩୬ |
| ବୀର୍ଯ୍ୟୋପଘାତ | ୧୩୬ |
| ଧ୍ୱଜ ଭଙ୍ଗ | ୧୩୬ |
| ଜରା ସମ୍ଭବ | ୧୩୭ |
| କ୍ଷୟକ୍ଳୀବ | ୧୩୭ |
| ଏତେ ନପୁଂସକ କେଉଁଠାରୁ ଆସନ୍ତି | ୧୩୮ |

ବିଷୟ ପୃଷ୍ଠା
ନପୁଂସକର ଯୌନଅନୁଭୂତି ୧୪୦
ଶାସ୍ତ୍ରାଧ୍ୟୟନମଧ୍ୟେନପୁଂସକତା ୧୪୨
ଔପରିଷ୍ଟକ ବା ମୁଖମୈଥୁନ ୧୪୩
ମୁଖମୈଥୁନର ଅପକାରିତା ୧୪୬
ନପୁଂସକତା କାରଣ ସମ୍ବନ୍ଧରେ ଡାକ୍ତର ମତାମତ ୧୪୮
ଚିକିତ୍ସା ୧୪୭

## ପଞ୍ଚମ ଅଧିକରଣ

ରହସ୍ୟ ତାତ୍ତ୍ଵା ୧୫୦-୧୮୩
ସ୍ତ୍ରୀ ଅଙ୍ଗପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ୧୫୨
ରମଣୀର ସ୍ତନ ସୌନ୍ଦର୍ଯ୍ୟ ୧୫୪
ସର୍ବାଙ୍ଗ ସୁନ୍ଦରୀ ରମଣୀର ରୂପ ବର୍ଣ୍ଣନା ୧୫୭
ନାରୀର ବାଲ୍ୟକାଳରୁ ଯୌବନ କାଳ ପର୍ଯ୍ୟନ୍ତ କ୍ରମ ବିକାଶ ୧୫୮
କାମର ଅସ୍ତ୍ର ୧୫୯
ବିବାହ ପଦ୍ଧତି ୧୬୦
କନ୍ୟାର ଦାବୀ ୧୬୩
କନ୍ୟାର କର୍ତ୍ତବ୍ୟ ୧୬୪
ନାରୀର ପରିଷ୍କାର ପରିଚ୍ଛନ୍ନତା ଓ ବସନ ଭୂଷଣ ୧୬୫
ନବବିବାହିତା ରମଣୀ ମାନଙ୍କର କ'ଣ ଜାଣିବା ଉଚିତ ୧୬୬
ପତ୍ନୀର କର୍ତ୍ତବ୍ୟ ୧୬୯
ଲକ୍ଷ୍ମୀ ସ୍ଵରୂପା ନାରୀ କିଏ ? ୧୬୯
ନାରୀ ସର୍ବଗ୍ରାସୀ ରାକ୍ଷସୀ ହୁଏ କେତେବେଳେ ୧୭୦
ମିଥ୍ୟାଗର୍ଭ ଅବୈଧ ଜନନ ୧୭୧
ସ୍ତ୍ରୀ କେତେବେଳେ ତରଳ ହୁଏ ୧୪୭
କୁମାରୀମାନଙ୍କର ଗୀତବାଦ୍ୟ ଓ ନୃତ୍ୟଶିକ୍ଷା ସମ୍ବନ୍ଧରେ ଅଭିମତ ୧୭୦
ସତୀ ଓ ଅସତୀ ନିର୍ଣ୍ଣୟ ୧୭୬
ତିଲ ଚିହ୍ନ ଦୃଷ୍ଟେ ସତୀ ଅସତୀ ନିର୍ଣ୍ଣୟ ୧୮୦
ଅକାଳ ମୃତ୍ୟୁ ଓ ବିକଳାଙ୍ଗ ପ୍ରସୂତର କାରଣ ୧୮୩

## ଷଷ୍ଠ ଅଧିକରଣ

ବିପରୀତ ରତି ବା ପୁରୁଷାୟିତ ରମଣ ୧୮୪—୧୮୮
ପୁରୁଷାୟିତ ରମଣର କାରଣ ୧୮୫
ନବୋଢ଼ା ନାୟିକାର ବିପରୀତ ବିହାର ୧୮୬
ତରୁଣୀ ଓ ପ୍ରୌଢ଼ାର ବିପରୀତ ବିହାର ୧୮୭

## ସପ୍ତମ ଅଧିକରଣ

ଜନ୍ମନିୟନ୍ତ୍ରଣ ୧୮୯—୨୦୪
ଜନ୍ମ ନିରୋଧ କଣ ? ୧୯୦
ଜନ୍ମନିୟନ୍ତ୍ରଣର ଉପକାରିତା ୧୯୧
ସ୍ଵାଭାବିକ ଉପାୟରେ ଜନ୍ମ ନିୟନ୍ତ୍ରଣ ୧୯୩
ନାରୀ ଦ୍ଵାରା କରଣୀୟ ଜନ୍ମ ନିୟନ୍ତ୍ରଣ ୧୯୪

| ବିଷୟ | ପୃଷ୍ଠା |
|---|---|
| ପୁରୁଷଙ୍କ ଦ୍ୱାରା କରଣୀୟ ଜନ୍ମ ନିୟନ୍ତ୍ରଣ | ୨୦୧ |
| ଅପସାରଣ ବିଧି | ୨୦୧ |
| ଧାରଣଯୌନ ସମ୍ଭୋଗ | ୨୦୨ |
| ରୁଦ୍ଧବୀର୍ଯ୍ୟ ମୈଥୁନ | ୨୦୫ |
| ନିରାପଦ କାଳ | ୨୦୮ |
| ବସ୍ତ୍ର ଚର୍ମଦ୍ୱାରା ନିୟନ୍ତ୍ରଣ | ୨୦୭ |
| ଗର୍ଭ ନିୟନ୍ତ୍ରଣର ଧୋଣୀୟ ପକ୍ରୀୟାବଳୀ | ୨୦୮ |
| ଡାକ୍ତରୀ ମତରେ ଗର୍ଭ ନିୟନ୍ତ୍ରଣର ଔଷଧାବଳୀ | ୨୧୩ |
| ଜନ୍ମନିୟନ୍ତ୍ରଣ ପାଇଁ ପୁରୁଷର ବ୍ୟବହାର୍ଯ୍ୟ ଯନ୍ତ୍ରପାତି | ୨୦୬ |
| ଫରାସୀଟୋପିବ୍ୟବହାରବିଧି | ୨୧୭ |
| ଫରାସୀ ଟୋପିବ୍ୟବହାରରେ ସୁଫଳ ଓ କୁଫଳ | ୨୧୯ |
| ଅମେରିକାନ୍ ଟିପ୍ | ୨୨୧ |
| ନାରୀ ଦ୍ୱାରା ବ୍ୟବହାର୍ଯ୍ୟ ଯନ୍ତ୍ରାବଳୀ | ୨୨୧ |
| ଗର୍ଭସ୍ତ୍ରାଣ | ୨୨୩ |
| ଚେକ୍ ପେସାରି ବା ସର୍ଭିକାଲ କ୍ୟାପ୍ | ୨୦୪ |
| ଜରାୟୁମୁଖରେ ଚେକ୍ ପେସାରି | ୨୨୭ |
| ଡଚ୍ କ୍ୟାପ | ୨୨୮ |
| ଜନ୍ମନିରୋଧ ନିମିତ୍ତ ଅସ୍ତ୍ରୋପଚାର | ୨୩୦ |
| ଜରାୟୁ ଅପସାରଣ | ୨୩୨ |

| ବିଷୟ | ପୃଷ୍ଠା |
|---|---|
| ଜନ୍ମନିରୋଧ ଇଂଜେକ୍ସନ | ୨୩୦ |
| ଏକ୍ସରେ ବା ରଞ୍ଜନ ରଶ୍ମି ଦ୍ୱାରା ଜନ୍ମନିୟନ୍ତ୍ରଣ | ୨୩୩ |
| ସୁନ୍ଦର ସନ୍ତାନ ହେବାର ଉପାୟ | ୨୩୩ |
| କଣ କଲେ ପୁତ୍ର ସନ୍ତାନ ଲାଭ ହେବ | ୨୩୪ |


## ଅଷ୍ଟମ ଅଧିକରଣ


| ବିଷୟ | | ପୃଷ୍ଠା |
|---|---|---|
| ସୁରତ ଭେଦ ବା କାମକଳା | | ୨୩୬—୨୫୯ |
| ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା | | ୨୩୫ |
| ନାରୀପୁରୁଷର ପ୍ରକାରଭେଦ | | ୨୩୮ |
| ସୁରତ ଭେଦ | | ୨୪୦ |
| ସମପାଦ | ବନ୍ଧ | ୨୪୩ |
| ନାଗର | ,, | ୨୪୩ |
| ତ୍ରିବିକ୍ରମ | ,, | ୨୪୪ |
| ବ୍ୟୋମପାଦ | ,, | ୨୪୪ |
| ସ୍ମରଚକ୍ର | ,, | ୨୪୫ |
| ଅବଦାରିତ | ,, | ୨୪୫ |
| ସୌମ୍ୟ | ,, | ୨୪୫ |
| କୁର୍ମ | ,, | ୨୦୬ |
| ବେଷ୍ଟିତ | ,, | ୨୪୬ |
| ବେଣୁବିଦାରିତ | ,, | ୨୪୬ |
| ଉଭୁଗ୍ନ | ,, | ୨୪୬ |
| ବାଣିକା | ,, | ୨୦୭ |
| ସମ୍ପୁଟ | ,, | ୨୪୭ |
| କର୍କଟ | ,, | ୨୪୮ |

| ବିଷୟ | | ପୃଷ୍ଠା |
|---|---|---|


| ବିଷୟ | | ପୃଷ୍ଠା |
|---|---|---|
| ପଦ୍ମାସନ | ବନ୍ଧ | ୨୪୮ |
| ବନ୍ଧୁରତ | ,, | ୨୪୮ |
| ଫଣୀପାଶ | ,, | ୨୪୯ |
| ସଞ୍ଚ୍ରମନ | ,, | ୨୪୯ |
| କୌର୍ମକ | ,, | ୨୪୯ |
| ଯୁଗ୍ମପଦ | ,, | ୨୫୦ |
| ମର୍କଟ | ,, | ୨୫୦ |
| ଜାନୁକୂର୍ବ | ,, | ୨୫୦ |
| ହରିବିକ୍ରମ | ,, | ୨୫୧ |
| କାଞ୍ଚି | ,, | ୨୫୧ |
| ଧେନୁକ | ,, | ୨୫୨ |
| ଐଭ | ,, | ୨୫୨ |
| ପୁରୁଷାୟିତ | ,, | ୨୫୨ |
| ବିପରୀତ | ,, | ୨୫୨ |
| ଭ୍ରମର | ,, | ୨୫୩ |
| ଉତ୍କଳିତା | ,, | ୨୫୩ |
| ସମରତ | ,, | ୨୫୪ |
| ଉଚ୍ଚରତ ବା ଚଣ୍ଡରତ | | ୨୫୪ |
| ନୀଚରତ | | ୨୫୫ |
| ରତି ଅବସାନେ | | ୨୫୭ |


## ନବମ ଅଧିକରଣ


ନାରୀର ବ୍ୟାୟାମ ୨୬୦—୨୮୩
କିଶୋରୀର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ସାଧନା ୨୬୫
ନାରୀ ସୌନ୍ଦର୍ଯ୍ୟର ଶତ୍ରୁ କିଏ? ୨୭୨
ମେଦାଧିକ୍ୟବିନାଶର ଉପାୟ ୨୭୪
କୋଷ୍ଠବଦ୍ଧତାରେ ସୌନ୍ଦର୍ଯ୍ୟ ହାନି ୨୭୪
କିଶୋରୀମାନଙ୍କର କୁଅଭ୍ୟାସ ୨୭୫
ନିଖୁଣ-ଦେହ-ଭଙ୍ଗିମା ୨୭୭
ସୌନ୍ଦର୍ଯ୍ୟ ସାଧନାର ଖାଦ୍ୟ ନିର୍ବାଚନ ୨୭୮
କିଶୋରୀର ବକ୍ଷ ଓ ନିତମ୍ବ ସୌନ୍ଦର୍ଯ୍ୟ ୨୭୯
ଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିବାର ବ୍ୟାୟାମ ୨୮୦
ପେଟର ଅବଶ୍ୟକ ମେଦ ହ୍ରାସର ବ୍ୟାୟାମ ୨୮୨
କୋଷ୍ଠବଦ୍ଧତାର ଦୂର କରିବାର ବ୍ୟାୟାମ ୨୮୩
ମେରୁଦଣ୍ଡ ଦୃଢ଼କରିବାର ବ୍ୟାୟାମ ୨୮୩
ଦେହରେଖା ସୌନ୍ଦର୍ଯ୍ୟ—ସହାୟକ ବ୍ୟାୟାମ ୨୮୩


## ଦଶମ ଅଧିକରଣ


ଯୌନ ବ୍ୟାପାରରେ ଅପରାଧ ତତ୍ତ୍ୱ ୨୮୪—୨୯୪
ଗର୍ଭପାତ ବା ଭ୍ରୂଣ ହତ୍ୟା ୨୮୪
ଗର୍ଭପାତ କେଉଁଠାରେ ବେଆଇନ୍ ନୁହେଁ ୨୮୫
ନବଜାତ ଶିଶୁହତ୍ୟା ୨୮୮
ବଳାତ୍କାରରେ ନାରୀହରଣ ୨୯୧

| ବିଷୟ | ପୃଷ୍ଠା |
|---|---|
| **ଏକାଦଶ ଅଧିକରଣ** | |
| ଦେଶ ବିଦେଶର ଯୌନ କମ୍ବଦନ୍ତୀ | ୨୯୫—୩୨୭ |
| ନାରୀମାନଙ୍କ ମଧ୍ୟରେ ଅସ୍ବୈଥୁନ | ୨୯୫ |
| ସଖୀଚ୍ଛଦ ସମ୍ବନ୍ଧେ କମ୍ବଦନ୍ତୀ | ୨୯୭ |
| ରଜସ୍ୱଳା ସ୍ତ୍ରୀ ସମ୍ବନ୍ଧେ କମ୍ବଦନ୍ତୀ | ୩୦୩ |
| ପୁରୁଷର ସ୍ତନ୍ୟଦାନ | ୩୦୪ |
| ନପୁଂସକ ଭରବା ବିଧି | ୩୦୭ |
| **ଦ୍ୱାଦଶ ଅଧିକରଣ** | |
| ପ୍ରମେହ | ୩୦୮—୩୧୯ |
| ପ୍ରମେହ ରୋଗ ହେବାର କାରଣ | ୩୦୯ |
| ରୋଗୀର ସାବଧାନତା | ୩୧୧ |
| ପ୍ରମେହ ପ୍ରକାର ଭେଦ | ୩୧୧ |
| କଫଜ ପ୍ରମେହ | ୩୧୧ |
| ଉଦକ ,, | ୩୧୧ |
| ଇକ୍ଷୁ ,, | ୩୧୧ |
| ସାନ୍ଦ୍ର ,, | ୩୧୨ |
| ସୁରା ,, | ୩୧୨ |
| ପିଷ୍ଟ ,, | ୩୧୨ |
| ଶୁକ୍ର ,, | ୩୧୨ |
| ସିକତା ,, | ୩୧୨ |
| ଶୀତ ,, | ୩୧୨ |
| ଶନୈର୍ମେହ | ୩୧୨ |
| ଲାଲ ପ୍ରମେହ | ୩୧୨ |
| ପିତ୍ତଜ ପ୍ରମେହ | ୩୧୨ |
| କ୍ଷାର ,, | ୩୧୨ |
| ନୀଳ ,, | ୩୧୨ |
| କୃଷ୍ଣ ,, | ୩୧୩ |
| ହରିଦ୍ରା | ୩୧୩ |
| ମାଞ୍ଜିଷ୍ଠ ,, | ୩୧୩ |
| ରକ୍ତ ,, | ୩୧୩ |
| ବାତଜ ,, | ୩୧୩ |
| ବସା ,, | ୩୧୩ |
| ମଜ୍ଜା ,, | ୩୧୩ |
| କ୍ଷୌଦ୍ର ,, | ୩୧୩ |
| ହସ୍ତୀ ,, | ୩୧୩ |
| ସାବଧାନତା | ୩୧୪ |
| ଆୟୁର୍ବେଦ ଯୋଗ | ୩୧୫ |
| ପ୍ରାକୃତିକ ଚିକିତ୍ସା | ୩୧୭ |
| **ତ୍ରୟୋଦଶ ଅଧିକରଣ** | |
| ଔପସର୍ଗିକମେହ | ୩୨୦-୩୫୧ |
| ମୂତ୍ରକୃଚ୍ଛ୍ର ଓ ମୂତ୍ରାଘାତ | ୩୨୨ |
| ବାତଜ ମୂତ୍ରକୃଚ୍ଛ୍ର | ୩୨୫ |
| ପିତ୍ତଜ ,, | ୩୨୫ |
| କଫଜ ,, | ୩୨୫ |
| ସନ୍ନିପାତଜ ,, | ୩୨୫ |
| ଶଲ୍ୟଜ ,, | ୩୨୫ |
| ଅସୃଗ୍ ,, | ୩୨୫ |

| ବିଷୟ | ପୃଷ୍ଠା |
|---|---|
| ଶୁକ୍ରଜ ମୂତ୍ରକୃଚ୍ଛ୍ର | ୩୨୫ |
| ଧ୍ୱଜଭଙ୍ଗ „ | ୩୨୬ |
| ଔପସର୍ଗିକମେହ ଉତ୍ପତ୍ତିର କାରଣ ଓ ଲକ୍ଷଣ | ୩୨୭ |
| ପୁରାତନ ମେହ | ୩୨୮ |
| ମୂତ୍ରାଘାତ ରୋଧ | ୩୨୯ |
| ବାଗୀ | ୩୨୯ |
| ବାଗୀକେତେକପ୍ରକାରହୁଏ? | ୩୩୦ |
| ବାଗୀର ପଥ୍ୟାପଥ୍ୟ | ୩୩୧ |
| ବାଗୀର ଯୌଗିକ ପ୍ରକ୍ରିୟା | ୩ |
| ବାଗୀର ହୋମିଓପ୍ୟାଥିକ ଚିକିତ୍ସା | ୩୩୨ |
| ଅଣ୍ଡବୃଦ୍ଧି ବା ଗଣ୍ଡ ବାତ | ୩୩୩ |
| ଗଣ୍ଡବାତର କବିରାଜ ଔଷଧ | ୩୩୪ |
| ଅଣ୍ଡବାତର ହୋମିଓପ୍ୟାଥିକ ଚିକିତ୍ସା | ୩୩୫ |
| କୋଷବୃଦ୍ଧି ବା କୋଷଫୁଲା | ୩୩ |
| ଅଣ୍ଡକୋଷ ଦାହ | ୩୩୭ |
| ନେବାଚିତା | ୩୩୭ |
| „ ଚିକିତ୍ସା | ୩୩୮ |
| ଔପସର୍ଗିକମେହ କଣ ଓ ରୋଗ ? | ୩୩୯ |
| „ „ କାହିଁକି ହୁଏ | ୩୪୦ |
| „ „ କଣ ନାଶକ ହୁଏ ? | ୩୪୧ |
| ରୋଗୀର ପଥ୍ୟାପଥ୍ୟ | ୩୪୨ |
| ଇନ୍ଦ୍ରିୟ କୁଲୁପ | ୩୪୨ |
| ଔପସର୍ଗିକମେହ ନାଶକ ଆୟୁର୍ବେଦୀୟ ଯୋଗ | ୩୪୩ |
| ମେହନାଶକ ପିଚକାରୀ | ୩୪୪ |
| ହୋମିଓପାଥିକ ଚିକିତ୍ସା | ୩୪୪ |
| ପ୍ରାକୃତିକ ଚିକିତ୍ସା | ୩୪୬ |
| ବାଷ୍ପସ୍ନାନ ବିଧି | ୩୪୭ |
| ପେଟସ୍ନାନ | ୩୪୮ |
| ଇନ୍ଦ୍ରିୟ ସ୍ନାନ | ୩୫୦ |
| ସୂର୍ଯ୍ୟରଶ୍ମି ଚିକିତ୍ସା ଓ ପାଣି ପ୍ରସ୍ତୁତ ପ୍ରଣାଳୀ | ୩୫୦ |


## ଚତୁର୍ଦ୍ଦଶ ଅଧିକରଣ


| ବିଷୟ | ପୃଷ୍ଠା |
|---|---|
| ଉପଦଂଶ | ୩୫୨—୩୬୭ |
| ଉପଦଂଶ ଓ ଫିରଙ୍ଗ ରୋଗର ମଧ୍ୟରେ ପାର୍ଥକ୍ୟ | ୩୫୩ |
| ଉପଦଂଶ ପ୍ରକାରଭେଦ | ୩୫୪ |
| ବାତଜ ଲକ୍ଷଣ | ୩୫୫ |
| ପିତ୍ତଜ ଲକ୍ଷଣ | ୩୫୫ |
| କଫଜ ଲକ୍ଷଣ | ୩୫୫ |
| ସନ୍ନିପାତଜ ଲକ୍ଷଣ | ୩୫୫ |
| ରୁଧିର ସଞ୍ଚାରେ | ୩୫୫ |
| ଗର୍ମୀ ବା ଫିରଙ୍ଗ ରୋଗର ପ୍ରକାରଭେଦ | ୩୫୬ |
| ଗର୍ମୀ ରୋଗରେ ଆରମ୍ଭିକ ଅବସ୍ଥାର ପରିଣତି | ୩୫୭ |
| ମାଧ୍ୟମିକ ଦଶା | ୩୫୮ |
| ରୋଗର ଅନ୍ତିମ ଅବସ୍ଥା | ୩୫୮ |

| ବିଷୟ | ପୃଷ୍ଠା |
|---|---|
| ସାବଧ ନତା | ୩୫୯ |
| ଉପଦଂଶନାଶକ ଯୋଗ | ୩୫୯ |
| ଫିରଙ୍ଗ ନାଶକ କେତେକ ଯୋଗ | ୩୬୧ |
| ହୋମିଓପ୍ୟାଥିକ ଚିକିତ୍ସା | ୩୬୧ |
| ଫିରଙ୍ଗରୋଗର ପ୍ରାକୃତିକ ଚିକିତ୍ସା | ୩୬୩ |
| ସୂର୍ଯ୍ୟାବରଣ ଚିକିତ୍ସା | ୩୬୪ |
| ବାତଜ ଉପଦଂଶରେ | ୩୬୪ |
| ପିତ୍ତଜ ଉପଦଂଶରେ | ୩୬୪ |
| କଫଜ ଉପଦଂଶରେ | ୩୬୫ |
| ସୂଚନା | ୩୬୫ |
| ଦେହରେ ଯଦ ପାଘ ଫୁଟିଯାଏ | ୩୬୫ |
| କୋମଳ ବ୍ରଣ | ୩୬୬ |
| ଚିକିତ୍ସା | ୩୬୭ |


## ପଞ୍ଚଦଶ ଅଧିକରଣ


| ବିଷୟ | ପୃଷ୍ଠା |
|---|---|
| ସ୍ତ୍ରୀ ମାନଙ୍କ ଗୁପ୍ତ ରୋଗ | ୩୬୭—୩୬୮ |
| ହିଷ୍ଟିରିଆ ( ମୂର୍ଚ୍ଛା ) | ୩୬୮ |
| କେତେକ ଯୌଗିକ ଔଷଧ | ୩୬୮ |
| ନକଲ ହିଷ୍ଟିରିଆ | ୩୭୦ |
| ହ୍ବିଭ । | ୩୭୧ |
| ଯୌଗିକ ଚିକିତ୍ସା | ୩୭୧ |
| ପ୍ରାକୃତିକ ଚିକିତ୍ସା | ୩୭୧ |
| ବସ୍ତି ଚିକିତ୍ସା | ୩୭୨ |
| ସାବଧ.ନତା | ୩୭୨ |
| ଋତୁବିରତି | ୩୭୫ |
| ଋତୁବିରତିର ପୂର୍ବଲକ୍ଷଣ | ୩୭୬ |
| ,, ପ୍ରତିକାର | ୩୭୭ |


## ଷୋଡ଼ଶ ଅଧିକରଣ


| ବିଷୟ | ପୃଷ୍ଠା |
|---|---|
| ଆସନ ଓ ପ୍ରାଣାୟାମ | ୩୭୯-୩୮୩ |
| ସିଦ୍ଧାସନ | ୩୭୯ |
| ଜାନୁ ଶିରାସନ | ୩୮୦ |
| ପାଦାଙ୍ଗୁଷ୍ଠାନ | ୩୮୧ |
| ଶୀର୍ଷାସନ | ୩୮୨ |
| ପ୍ରାଣାୟାମ | ୩୮୩ |
| ସ୍ୱପ୍ନଦୋଷ ଓ ଦ୍ରୁତରେତଃ ପାତର ନିବାରଣ ଉପାୟ | ୩୮୫ |



ରାଧାକୃଷ୍ଣ ଯୁଗଳ ମିଳନ

KAMABIGYAN Part II

Printer :—M. C. Das
Manmohan Press
Cuttack-2

# କାମ-ବିଜ୍ଞାନ ୨ୟ




ଦେହରେଖା ସୌନ୍ଦର୍ଯ୍ୟ ସହାୟକ ବ୍ୟାୟାମ ।

( ୨୮୩ ପୃଷ୍ଠା ଦ୍ରଷ୍ଟବ୍ୟ )



( ଦ୍ୱିତୀୟ ଖଣ୍ଡ )

# ପ୍ରଥମ ଅଧିକରଣ

## ବେଶ୍ୟା ପ୍ରକରଣ

ବେଶ୍ୟାନାମ ମହାବହ୍ନୌଃ ରୂପେନ୍ଧନ ସମାଗତା ।
କାମିଭର୍ଯତ୍ରହୂୟନ୍ତେ ଯୌବନାନି ଧନାନିଚ ॥

ବେଶ୍ୟାନାମ ମହାବହ୍ନି ବିଧାତା ଭିଆଣି ।
କାମୀର ଯୌବନ ଧନ ଯହିଁରେ ଇନ୍ଧନ ॥

ଅନଳ ଦେଖିଲେ ଯେମନ୍ତେ ପତଙ୍ଗ ପଡ଼ଇ ।
ଜୀବନ ଯୌବନ ଧନ ପୋଡ଼ି ଭସ୍ମ ହୋଇ ॥





ଆଧୁନିକ ଜଗତର ପ୍ରତ୍ୟେକ ସଭ୍ୟ ସମାଜରେ ବେଶ୍ୟାବୃତ୍ତି ରହିଅଛି । ଯେଉଁ ଦେଶ ବା ସମାଜ ଯେତେ ବେଶୀ ଶିକ୍ଷିତ ଓ ସଭ୍ୟ, ସେ ଦେଶ ବା ସମାଜରେ ଏହାର ପ୍ରଚଳନ ତତୋଧିକ । ପୃଥିବୀ ମଧ୍ୟରେ ସଭ୍ୟ ଶ୍ରେଷ୍ଠ ବୋଲି ଗର୍ବ କରୁଥିବା ଆମେରିକା ତଥା ଇଉରୋପର ଶ୍ରେଷ୍ଠଗୁଡ଼ିକ ତୁଳନାରେ ଦେଖିବାକୁ ଗଲେ ଅନ୍ୟ ଦେଶରେ ଏହାର ପ୍ରଚଳନ ଯଥେଷ୍ଟ କମ୍ ।

ବେଶ୍ୟାବୃତ୍ତି ଏକ ପ୍ରାଚୀନତମ ଅନୁଷ୍ଠାନ । ଏହା କେବେ ଓ କିପରି ଭାବରେ ସୃଷ୍ଟି ହେଲା ତାହା କେହି କହି ପାରିବେ ନାହିଁ । ଖୁବ୍ ସମ୍ଭବ ମାନବ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେହିଁ ଏହି ପ୍ରକାର ପ୍ରଚଳନ ଆରମ୍ଭ ହୋଇଅଛି । ଆମ୍ଭେମାନେ ଯେତେ ନିନ୍ଦା ବା ଘୃଣା କଲେ ମଧ୍ୟ, ଏ କଥା ମାନିବାକୁ ହେବ ଯେ, ଭାରତୀୟ, ମିଶରୀୟ, ରୋମୀୟ, ଆରବୀୟ, ଏସିରୀୟ ପ୍ରଭୃତି ପ୍ରାଚୀନତମ ସଭ୍ୟତାରେ ବେଶ୍ୟାର ସ୍ଥାନ ନିର୍ଦ୍ଦିଷ୍ଟ ଥିଲା ଓ ବର୍ତ୍ତମାନ ମଧ୍ୟ ଅଛି ।

ପୁରାଣମାନଙ୍କରେ ଦେଖିବାକୁ ମିଳେ, ସ୍ୱର୍ଗରେ ମଧ୍ୟ ବେଶ୍ୟାର ସ୍ଥାନ ଅଛି । ରମ୍ଭା, ମେନକା, ଉର୍ବଶୀ ପ୍ରଭୃତି ପୁରାଣ ବର୍ଣ୍ଣିତ ସ୍ୱର୍ଗୀୟ ବାରାଙ୍ଗନାମାନଙ୍କ ଯୋଗୁଁ କେତେ ପ୍ରକାର ବିଭ୍ରାଟ ସୃଷ୍ଟି ହୋଇଅଛି ତାହା ସମସ୍ତଙ୍କୁ ଜଣା । ଦେବରାଜ ଇନ୍ଦ୍ର, ବ୍ରହ୍ମର୍ଷି ବିଶ୍ୱାମିତ୍ର, ପୁରୁରବା ପ୍ରଭୃତି ମହାମନୀଷୀମାନେ ସେମାନଙ୍କ ହାତରୁ ରକ୍ଷା ପାଇ ନାହାନ୍ତି ।

ବେଶ୍ୟାବୃତ୍ତି ଅବାହମାନ କାଳରୁ ସବୁଦେଶରେ କମ ବେଶୀ ଚଳି ଆସୁଅଛି ଏବଂ ଚଳି ଆସୁଥିବ ମଧ୍ୟ । କୌଣସି ଦେଶ ବା



ସମାଜ ଯେତେ କଠୋର ନୀତି ଗ୍ରହଣ କଲେ ସୁଦ୍ଧା ତା'ର ଉଚ୍ଛେଦ ସାଧନ କରିବାକୁ ସକ୍ଷମ ହେବ ନାହିଁ । ଏଣୁ ବାରାଙ୍ଗନା ବୃତ୍ତି ସମ୍ବନ୍ଧେ କେତେକ ଜ୍ଞାତବ୍ୟ ବିଷୟ ସର୍ବସାଧାରଣଙ୍କୁ ଏବଂ ସେହି ଶ୍ରେଣୀର ବୃତ୍ତିଧାରୀମାନଙ୍କୁ ଜଣାଇବା ଆମର ମୁଖ୍ୟ ଉଦ୍ଦେଶ୍ୟ । ଯେଉଁଥିରୁ ସମସ୍ତେ କିଛି ଜ୍ଞାନ ଅର୍ଜନ କରି ଯଥୋଚିତ ସାବଧାନ ହେବେ ।

ସମାଜ ଓ ଶାସ୍ତ୍ର ବେଶ୍ୟାଗମନ ମହାପାପ ବୋଲି ଡିଣ୍ଡିମ ପିଟି ହେଉଛି । କିନ୍ତୁ କେହି ଆଦିମକାଳୁ ଏ ପର୍ଯ୍ୟନ୍ତ ଚାଲି ଆସୁଥିବା ଏ ମହାପାପର ଉଚ୍ଛେଦ ସାଧନ କରି ପାରି ନାହିଁ । ଏଣୁ ଏହା ଚାଲୁଛି, ଚାଲିବ ମଧ୍ୟ ।

ପୁରୁଷ ଓ ବେଶ୍ୟା, ଉଭୟଙ୍କର, ଯଦିଓ ରତିଫଳ ସମାନ ତଥାପି ବେଶ୍ୟା ହେଉଛି ପ୍ରତ୍ୟୁପଗକର୍ତ୍ତ୍ରୀ । ସୁତରାଂ ତାହାକୁ ତାହାର ଅଧିକାର ଓ ଜୀବିକା ନିର୍ବାହ ନିମନ୍ତେ ଅର୍ଥ ଉପାର୍ଜନ କରି ଯେତେ ଦୂର ସମ୍ଭବ ସୁସ୍ଥ ସ୍ୱାସ୍ଥ୍ୟରେ ବଞ୍ଚିରହିବା ସମ୍ବନ୍ଧେ ପଦେ ଅଧେ କହିବା ଆମ୍ଭମାନଙ୍କର ଏହି ପ୍ରକରଣର ମୁଖ୍ୟ ଉଦ୍ଦେଶ୍ୟ !



## ଦେଶ ବିଦେଶରେ ବେଶ୍ୟାବୃତ୍ତିର ପ୍ରାଚୀନ ରୀତି ନୀତି

ପୂର୍ବେ କେତେକ ଦେଶରେ ବେଶ୍ୟାବୃତ୍ତି ନିନ୍ଦନୀୟ ନ ଥିଲା । ବେବିଲନ୍ ଦେଶରେ ବେଶ୍ୟାବୃତ୍ତି ଏକ ପବିତ୍ର ବୃତ୍ତି ବୋଲି ଗଣ୍ୟ

ହେଉଥିଲା । ଏଣୁ ସେଠାରେ ପ୍ରତ୍ୟେକ ବିବାହିତା ନାରୀକୁ ଜୀବନରେ ଅନ୍ତତଃ ପକ୍ଷେ ଥରେ ହେଲେ ବେଶ୍ୟା ବୃତ୍ତି କରିବାକୁ ହେଉଥିଲା ।

'ରତିଦେବୀଙ୍କ ମନ୍ଦିର' ବୋଲି ସେଠାରେ ଗୋଟିଏ ମନ୍ଦିର ଥିଲା । ସେହି ମନ୍ଦିରକୁ ପ୍ରତ୍ୟେକ ନାରୀ ଥରେ ହେଲେ ଯିବାକୁ ବାଧ୍ୟ । ସେମାନେ ଯାଇ ମନ୍ଦିର ପ୍ରାଙ୍ଗଣରେ ସମବେତ ହୁଅନ୍ତି । ତହିଁରେ ପୁରୁଷମାନେ ଆସି ସୁନ୍ଦରୀ ରମଣୀମାନଙ୍କୁ ବାଛି ସଙ୍ଗ ସାମାନ୍ୟ ଅର୍ଥ ଦେଇ ସେମାନଙ୍କୁ ରମଣ କରନ୍ତି । ଏହିପରି ସୁନ୍ଦରୀ ରମଣୀମାନଙ୍କୁ ସମସ୍ତେ ନେଇ ଯାଉଥିଲେ । କିନ୍ତୁ କୁରୂପା ରମଣୀ-ମାନଙ୍କୁ କେହି ନ ପସନ୍ଦ କରିବାରୁ ସେମାନେ ସେଠାରେ ଅନେକ ବର୍ଷ ଅପେକ୍ଷା କରି ପଡ଼ି ରହୁଥିଲେ । ପୁରୁଷ ସଂସର୍ଗ ନ ପାଇବା ଯାଏ ସେମାନେ ଗୃହକୁ ଫେରିବାର ଅଧିକାର ପାଉ ନ ଥିଲେ । ନାରୀର କୌଣସି ବାଛି ବିଗୁର କରିବାର କ୍ଷମତା ନ ଥିଲା । ଯେଉଁ ପୁରୁଷ ତାକୁ ପ୍ରଥମେ ଧନ ଦେଇ ନେବାକୁ ଗ୍ରହୁଥିଲା, ତା ସଙ୍ଗେ ସେ ନାରୀ ଯିବାକୁ ବାଧ୍ୟ ହେଉଥିଲା ।

ରୋମ ଦେଶରେ ବେଶ୍ୟାବୃତ୍ତିର ବହୁଳ ପ୍ରଚଳନ ଥିଲା । ସେଠାକାର ବେଶ୍ୟାଳୟକୁ ଜନସାଧାରଣ ଶ୍ରେଷ୍ଠ ପ୍ରମୋଦାଗାର ବୋଲି ମନେ କରୁଥିଲେ । ଏପରିକି ରୋମ ସମ୍ରାଟଙ୍କର ରାଣୀମାନେ ମଧ୍ୟ ଲୁଚେଇ ଛପେଇ ବେଶ୍ୟାବୃତ୍ତି କରୁଥିଲେ ।

ଗ୍ରୀସ୍ ଦେଶରେ ଆଇନ ଦ୍ୱାରା ବାରାଙ୍ଗନାମାନଙ୍କୁ ସରକାରୀ ସମ୍ମତିରେ ପରିଣତି କରାଯାଇଥିଲା । ସେମାନଙ୍କର ଅଧିକ୍ଷ ସେ ଦେଶର ଦେବୋତ୍ତର ବିଭାଗ ଚଳୁଥିଲା । ଲୋକଙ୍କ ଆକର୍ଷଣ ପାଇଁ



-ସେଠାକାର ବେଶ୍ୟାଗୃହର ସଦର ଦରଜାରେ କେତେ ଗୁଡ଼ିଏ ଲଙ୍ଗଳା କ୍ରୀତଦାସଙ୍କୁ ନିଯୁକ୍ତ କରାଯାଉଥିଲା ।

ଆମ ଭାରତରେ ମଧ୍ୟ କେତେକ ଦେବ ମନ୍ଦିରରେ ଦେବଦାସୀ ନାମରେ କେତେକ ରମଣୀ ଦେବସେବା କରିବା ପାଇଁ ନିଯୁକ୍ତ ଥିଲେ । ଏମାନଙ୍କ ଯୋଗୁ ମଧ୍ୟ ନାନାଦି ବ୍ୟଭିଚାର ଘଟୁଥିଲା, ଏବେ ମଧ୍ୟ ଘଟୁଅଛି ।

ଅତି ପ୍ରାଚୀନ କାଳରୁ ଦେଶଭେଦରେ ବେଶ୍ୟାବୃତ୍ତିର ନାନା ପ୍ରକାର ପ୍ରଚଳନ ଥିଲା, ଏବେ ମଧ୍ୟ ଅଛି । ଆଜି ମଧ୍ୟ ସଭ୍ୟତାର ଉନ୍ନତି ସଙ୍ଗେ ସଙ୍ଗେ ଏହାର ବିକାଶ ଅଧିକ ନିର୍ଲଜ ଓ ଉଲଙ୍ଗ ଅବସ୍ଥା ଧାରଣ କରୁଅଛି ।



## ନାରୀ ବାରାଙ୍ଗନା ବୃତ୍ତି ଅବଲମ୍ବନ କରେ କାହିଁକି ?

ଆଜି ପର୍ଯ୍ୟନ୍ତ ଏହାର କୌଣସି ଠିକ ମୀମାଂସା ହୋଇ ପାରି ନାହିଁ । ତେବେ ବିଶେଷ ବିବେଚନା କରି ଦେଖିଲେ ଜଣାଯାଏ ଯେ ନିମ୍ନଲିଖିତ କାରଣ ଗୁଡ଼ିକ ଯୋଗୁ ନାରୀ ବେଶ୍ୟା ବୃତ୍ତିରେ ପ୍ରବୃତ୍ତ ହୁଏ ।

୧—ଆମ୍ଭମାନଙ୍କର ମନେ ହୁଏ; ସ୍ୱାମୀ ପ୍ରେମରୁ ବଞ୍ଚିତ ହେବା ଗୋଟିଏ ପ୍ରଧାନ କାରଣ । ଯେଉଁ ସବୁ ସ୍ତ୍ରୀଲୋକ ସ୍ୱାମୀ ପ୍ରେମରୁ ବଞ୍ଚିତ ହୋଇ, ସଂସାରରେ ଆଉ କୌଣସି ପ୍ରକାର ଅବଲମ୍ବନ ନ ପାଆନ୍ତି, ସେହିମାନେ ଯୌବନ ଉତ୍ତେଜନା

ବଶତଃ ଏହି ଭୁଲ୍ ବାଟକୁ ଯେ ନ ଭ୍ରାନ୍ତ । କିନ୍ତୁ ଯେତେବେଳେ ସେମାନଙ୍କର ଭୁଲ୍ ଭାଙ୍ଗେ ସେତେବେଳକୁ ଫେରିବାକୁ ଆଉ କୌଣସି ଉପାୟ ନ ଥାଏ । ଏଣୁ ସେମାନେ ସେହି ପାପରାଜ୍ୟରେ ମୂର୍ତ୍ତିମତୀ ପାପ ପରି ବିରାଜମାନ କରି ସମାଜର ଅଶେଷ ଅକଲ୍ୟାଣ ସାଧନ କରନ୍ତି ।

୨—ବାଲବୈଧବ୍ୟ—ଯେଉଁ ନାରୀର ବିବାହ ପରେ ତା'ର ସ୍ୱାମୀର ମୃତ୍ୟୁହୁଏ, ଏବଂ ଯେଉଁମାନଙ୍କର ପିତାମାତା ବାଲ୍ୟକାଳରେ ନିଜର କନ୍ୟାମାନଙ୍କୁ ସଂଯମ ଶିକ୍ଷା ଦେଇ ନ ଥାନ୍ତି, ସେହିମାନେ ଯୌବନ ଉତ୍ତେଜନା ବଶତଃ ନିଜକୁ ନିୟନ୍ତ୍ରିତ କରି ନ ପାରି ଏହି ବୃତ୍ତି ଅବଲମ୍ବନ କରନ୍ତି ।

୩—ଅଭାବ ଓ ଦାରିଦ୍ର୍ୟ—ଏପରି ଅନେକ ସମୟରେ ଦେଖାଯାଇ ଅଛି ଯେ, ଅନ୍ନ ବସ୍ତ୍ରର ଅଭାବରେ ପଡ଼ି, ନାରୀ ତାହାର ଅମୂଲ୍ୟ ସତୀତ୍ୱ ରତ୍ନ ବିକ୍ରୟ କରି ନିଜର ଓ ସନ୍ତାନ ସନ୍ତତି ମାନଙ୍କର ଉଦରାନ୍ନର ସଂସ୍ଥାନ କରି ଥାଏ !

୪—ଯେଉଁ ରମଣୀର କାମପ୍ରବୃତ୍ତି ଅତ୍ୟଧିକ, ଅଥଚ ତା'ର ସ୍ୱାମୀ ତାକୁ ଯଥୋଚିତ ଶୃଙ୍ଗାର କରିପାରୁ ନାହିଁ, ଅର୍ଥାତ୍ ରମଣ ସମୟରେ ରମଣୀର କାମର ଜୁଆର ଆସିଲା ବେଳକୁ ଏଣେ ସ୍ୱାମୀର ରମଣ ଶକ୍ତିରେ ଭଟ୍ଟା ପଡ଼ି ଯାଉଛି, ଏପରି କ୍ଷେତ୍ରରେ ସ୍ତ୍ରୀ ସ୍ୱାମୀ ସହବାସରେ ଅସନ୍ତୁଷ୍ଟ ହୋଇ ଯୌନତନ୍ତ୍ରୀ ଓ ମନରେ ଆଘାତ ପ୍ରାପ୍ତ ହୁଏ ଏବଂ ସ୍ୱାମୀ ଉପରେ ଅଭିମାନ କରି ଏହି ବୃତ୍ତି ଅବଲମ୍ବନ କରେ । ଏଇଟି ପାଠକମାନଙ୍କୁ ଜଣାଇ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ଯେ ପୁରୁଷର ଶୀଘ୍ର



ରେତଃପାତ, ଲିଙ୍ଗ ଯୋନିର ଅସମତା, ବିଶେଷତଃ ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା, ଏହିସବୁ କ୍ଷେତ୍ରରେ ଏପରି ବେଶ୍ୟା ବୃତ୍ତିର ପ୍ରାୟ ଉଦ୍ଭବ ହୋଇଥାଏ ଏବଂ ଏପରି ଅବସ୍ଥା ପ୍ରାପ୍ତ ରମଣୀ ମାନେ ପ୍ରାୟ ଗୁପ୍ତବେଶ୍ୟା ବୃତ୍ତି କରନ୍ତି ।



## ବେଶ୍ୟାବୃତ୍ତି ସମ୍ବନ୍ଧେ ଆଧୁନିକ ମତାମତ

କେତେକ ପାଶ୍ଚାତ୍ୟ ପଣ୍ଡିତ ବର୍ତ୍ତମାନ କାଳର ବେଶ୍ୟା ମନୋବୃତ୍ତିର ଗଭୀର ଗବେଷଣା ଚଳାଇ ଅଛନ୍ତି । ସେଥିରୁ ନାନାଦି ତଥ୍ୟ ଜଣା ପଡୁଛି ।

ଆମେରିକାର ଜନୈକ ଡାକ୍ତର ଦୁଇ ହଜାର ବେଶ୍ୟାକୁ ପ୍ରଶ୍ନ ଓ ଜେରା କରି ବୁଝିଛନ୍ତି ଯେ, ସେମାନଙ୍କ ମଧ୍ୟରୁ ଶତକଡା ପ୍ରାୟ ୨୬ ଜଣ ଅତ୍ୟଧିକ ଇନ୍ଦ୍ରିୟ ପ୍ରବୃତ୍ତିବଶରୁ, ଶତକଡ଼ା ୨୫ ଜଣ ପେଟ ଜ୍ୱାଳାରେ, ଶତକଡା ୧୦ ଜଣ ପୁରୁଷମାନଙ୍କ ପ୍ରତାରଣାରେ, ଶତକଡା ୯ ଜଣ ନିଶା ଯୋଗୁ, ଶତକଡା ୮ ଜଣ ସ୍ୱାମୀ ବା ପିତାମାତାଙ୍କ ଅତ୍ୟାଚାରରୁ, ଶତକଡା ଜଣ ଧନର ଲାଳସାର ବଶବର୍ତ୍ତୀ ହୋଇ, ଶତକଡ଼ା ୧ ଜଣ ଜବରଦସ୍ତିରେ ବାଧ୍ୟ ହୋଇ ଓ ଶତକଡ଼ା ୧ ଜଣ ଭୁଲ ବଶତଃ ବେଶ୍ୟାବୃତ୍ତି କରିବାକୁ ବାଧ୍ୟ ହୋଇଥିଲେ ।

କିନ୍ତୁ ଆମ ଭାରତବର୍ଷରେ ଏହାର ସଂଖ୍ୟା ଭିନ୍ନ ହେବା ସମ୍ଭବ । କାରଣ ଏଠାରେ ଅନେକ ସ୍ତ୍ରୀଲୋକ ସାମାନ୍ୟ ସାମାନ୍ୟ





ଦୋଷ ଦୃଷ୍ଟିବଶତଃ ସମାଜ ପରିତ୍ୟକ୍ତା ହୋଇ ବାରାଙ୍ଗନା ବୃତ୍ତି ଅବଲମ୍ବନ କରିବାକୁ ବାଧ୍ୟ ହୋଇଛନ୍ତି ।

———

## ପୁରୁଷର ବେଶ୍ୟାସକ୍ତ ହେବାର କାରଣ

୧—ମନୁଷ୍ୟ ମାତ୍ରେ ଆନନ୍ଦ ଉପଭୋଗ କରିବାକୁ ବ୍ୟାକୁଳ, ଜୀବନ-ଯୁଦ୍ଧରେ କ୍ଳାନ୍ତ ଓ ପରିଶ୍ରାନ୍ତ ପୁରୁଷ ଟିକିଏ ଆନନ୍ଦ ପାଇବା ପାଇଁ ଚାହାଁନ୍ତି ଭଲ ହୁଏ । କିନ୍ତୁ ସେ ଯେଉଁ ଭଳି ଆନନ୍ଦ ଖୋଜେ ତା ତାହାର ନିଜ ଘରୁ ସ୍ତ୍ରୀ ନିକଟରୁ ପାଇବାର ଉପାୟ ନାହିଁ । କାରଣ ହିନ୍ଦୁ ସଂସାର କେବଳ ସ୍ୱାମୀ ସ୍ତ୍ରୀ ନେଇ ଗଢ଼ା ହୋଇ ନାହିଁ । ବାପ, ମା, ଭାଇ, ଭଉଣୀ ପ୍ରଭୃତି ଆତ୍ମୀୟ ସ୍ୱଜନ ନେଇ ଏହି ପରିବାର ଗଠିତ । ତେଣୁ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମନ ଖୋଲା ଖୋଲି ଭାବରେ ଆମୋଦ ପ୍ରମୋଦ କରିବାର ସୁଯୋଗ ଘଟେ ନାହିଁ ।

ସାରାଦିନ ପରିଶ୍ରମ କଲାପରେ ସ୍ୱାମୀ କର୍ମକ୍ଷେତ୍ରରୁ ଫେରି ଆସିଲା, କିନ୍ତୁ ନିଜର ସ୍ତ୍ରୀ ସହିତ ଆମୋଦ ପ୍ରମୋଦ କରିବା ସୁଯୋଗ ନାହିଁ, କାରଣ ସେ ଗୃହର ଅନ୍ୟ କାର୍ଯ୍ୟରେ ବ୍ୟସ୍ତ । ଯଦିବା ଅବସର ଅଛି ତଥାପି ତା'ର ସ୍ୱାମୀ ନିକଟକୁ ଆସିବାକୁ ଉପାୟ ନାହିଁ । ଆସିଲେ ସେ ନିନ୍ଦାର ଭାଗୀ ହେବ, କିମ୍ବା ତାକୁ ସାଇ ପଡ଼ୋଶୀରେ ନାନା ପ୍ରକାର ବିଦ୍ରୂପ କରିବେ ।

ପୁଣି କୌଣସି ପୁରୁଷ ଗୀତ ଶୁଣିବାକୁ ଭଲପାଏ । ତା'ର ସ୍ତ୍ରୀ ମଧ୍ୟ ଭଲ ଗୀତ ବୋଲି ପାରେ, କିନ୍ତୁ ସ୍ତ୍ରୀ ସ୍ୱାମୀକୁ



ବାଡ଼ ବୋଲି ଶୁଣାଇବାର ଉପାୟ ନାହିଁ, ତାହା କଲେ ତାଙ୍କୁ ସମାଜର ପାଞ୍ଚଜଣ ନିନ୍ଦା କରିବେ କିମ୍ବା ବାତୁଳ ବୋଲି କହିବେ । ଏହିପରି କେତେ ଗୁଡ଼ିଏ କୁସଂସ୍କାର ଆମ ହିନ୍ଦୁ ସମାଜରେ ଥିବାରୁ ଅଧିକାଂଶ ସ୍ତ୍ରୀ ପୁରୁଷ ବିମଳ ଆନନ୍ଦ ଉପଭୋଗରୁ ବଞ୍ଚିତ ହୁଅନ୍ତି । ଏହି ସବୁ କାରଣ ନେଇ ପୁରୁଷ ବେଶ୍ୟାଗମନ କରିବାକୁ ପ୍ରୟାସୀ ହୁଏ ଏବଂ ସୁଧା ପାନ କରିବା ଆଶାରେ ପାଇ ହଳାହଳ ପାନ କରି ଚିରଜୀବନ ଦୁଃଖ ଭୋଗ କରେ ।

୨—ଆଉ ଗୋଟିଏ କାରଣରୁ ମଧ୍ୟ ପୁରୁଷ ବେଶ୍ୟାସକ୍ତ ହୁଏ । ଆମ୍ଭମାନଙ୍କର ଦେଶରେ ଅଧିକାଂଶ ସ୍ତ୍ରୀଲୋକ ଅଶିକ୍ଷିତା । ଶିକ୍ଷାର ଅଭାବରୁ ସେମାନେ ସମୟେ ସମୟେ ଏପରି ଏକ ଏକ କାଣ୍ଡ କରି ବସନ୍ତି, ଯାହା ଯୋଗୁଁ କି ସ୍ୱାମୀର ସମସ୍ତ ପ୍ରୀତି ଓ ଶାନ୍ତି ନଷ୍ଟ ହୋଇଯାଏ । ଏଣୁ ସ୍ୱାମୀ ସ୍ତ୍ରୀ ଉପରେ ଅସନ୍ତୁଷ୍ଟ ହୋଇ ଟିକିଏ ଶାନ୍ତି ଓ ପ୍ରୀତି ପାଇବା ଆଶାରେ ବାରାଙ୍ଗନା ଗୃହର ଆଶ୍ରୟ ନିଏ । ଏଥିରୁ ବୁଝା ଯାଉଛି ଯେ, ଦାମ୍ପତ୍ୟ-ସୁଖର ପରିପୂର୍ଣ୍ଣତା ପାଇଁ ଶିକ୍ଷାର ବିଶେଷ ପ୍ରୟୋଜନ । ଏଥି ପ୍ରତି କନ୍ୟା ପିତାମାତାମାନେ ବିଶେଷ ଦୃଷ୍ଟି ଦେବା ଆବଶ୍ୟକ ।

୩—କୁସଙ୍ଗ ହେଉଛି ଅସତ୍ ପଥରେ ପାଦ ବଢ଼ାଇବାର ଆଉ ଗୋଟିଏ କାରଣ । କୁମ୍ଭାର ଚକରେ ମାଟି ପାଏ ଗଢ଼ିଲା ଭଳି ବାପ ମାଆମାନେ ପୁଅ କନ୍ୟାମାନଙ୍କୁ ପିଲାଦିନୁ ସଦ୍‌ଭାବରେ ଗଢ଼ିବାର ପ୍ରକୃଷ୍ଟ ବେଳ । ତାହା ଯଦି ଠିକ୍‌ଭାବେ କରି ନ ଯାଏ





ତେବେ, ପିତାମାତାଙ୍କ ଦୋଷରୁ ପୁଣି କୁସଂସର୍ଗରେ ପଡ଼ି ଅପଥ ପନ୍ଥକୁ ଗୋଡ଼ ବଢ଼ାଏ । କ୍ରମେ ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଯୌବନରେ ପଦାର୍ପଣ କଲାକ୍ଷଣି କାମସେବାରେ ମନ ବଳାଏ । କୁସଙ୍ଗ ଯୋଗୁଁ ହସ୍ତମୈଥୁନ, ସମମୈଥୁନ ଆଦି ମହାପାପ ଓ ମହାକ୍ଷତିକର କାର୍ଯ୍ୟରେ ଲିପ୍ତ ହୋଇ ଶେଷରେ ସହଜଲଭ୍ୟ ବାରାଙ୍ଗନା ଗୃହର ଆଶ୍ରୟ ନିଏ । ତାହା ପରେ ତାର ଅଭିଭାବକମାନେ ତାକୁ ବିବାହ କରାଇ ଦିଅନ୍ତି । କିନ୍ତୁ ସେ, ସେ ବିବାହରେ ଶାନ୍ତି ପାଇ ପାରେ ନାହିଁ । ତାହାର ପ୍ରଧାନ କାରଣ, ବେଶ୍ୟାମାନଙ୍କର ଆଦୌ ଲଜ୍ଜା ସଙ୍କୋଚ ନ ଥାଏ । ସେମାନେ ଯେଉଁପରି ନିର୍ଲଜ ଭାବରେ ପୁରୁଷମାନଙ୍କ ସହିତ ରତିକ୍ରୀଡ଼ା କରନ୍ତି, ତାହା କୌଣସି ଭଦ୍ରଘରର କନ୍ୟାଠାରୁ ଆଶା କରିବା ଅସମ୍ଭବ ଓ ଅନ୍ୟାୟ ମଧ୍ୟ । ଏପରି ସ୍ଥଳେ ବେଶ୍ୟାସକ୍ତ ପୁରୁଷ ନିଜ ସ୍ତ୍ରୀଠାରୁ ତା'ର ମନ ମୁତାବକ ଶୃଙ୍ଗାର ନ ପାଇ ସ୍ତ୍ରୀ ପ୍ରତି ବିମୁଖ ହୁଏ ଏବଂ ପୁଣି ବେଶ୍ୟାର ଆଶ୍ରୟ ନିଏ । ଏହିପରି ଶତ ଶତ ସଂସାର ନଷ୍ଟ ହେବାର ଭୂରି ଭୂରି ପ୍ରମାଣ ଦେଖିବାକୁ ମିଳେ ।

୪—ପୁରୁଷମାନେ ଆନନ୍ଦ ଟିକିଏ ପାଇବା ପାଇଁ କାଙ୍ଗାଳ, ଏ କଥା ପୂର୍ବେ କହିଅଛୁ । ଯେଉଁ ସୈନ୍ୟମାନେ ଘର ଛାଡ଼ି ଦୂର ଦେଶକୁ ଯାଆନ୍ତି, ଯେଉଁ ବ୍ୟବସାୟୀମାନେ ବା ଚାକିରିଜୀବିମାନେ ନିଜର ପରିବାର ଛାଡ଼ି ଦୂର ଦେଶରେ ରହିବାକୁ ବାଧ୍ୟ ହୁଅନ୍ତି, ସେମାନେ କେହି ଜିତେନ୍ଦ୍ରିୟ ବ୍ୟକ୍ତି ନୁହନ୍ତି । ଏଣୁ ସେମାନେ ବାଧ୍ୟ ହୋଇ ବେଶ୍ୟା ଗୃହର ଆଶ୍ରୟ ଲୋଡ଼ନ୍ତି ।

—✻—



## ସମାଜରେ ବେଶ୍ୟାର ଆବଶ୍ୟକତା

ପୃଥିବୀରେ ଏପରି କୌଣସି ଦେଶ ବା ସମାଜ ନାହିଁ, ଯେଉଁଠାରେ କି ବେଶ୍ୟା ବୃତ୍ତିର ପ୍ରଚଳନ ନାହିଁ । ବେଶ୍ୟାମାନଙ୍କ ଦ୍ୱାରା ଯେ ଜଗତର କିଛି ଉପକାର ହେଉ ନାହିଁ ଏପରି ନୁହେଁ । ଏମାନଙ୍କ ଦ୍ୱାରା ସମାଜର ଗୋଟିଏ ଉପକାର ହୋଇଥାଏ । ଯେଉଁ ସବୁ ଅସଚ୍ଚରିତ୍ର ପୁରୁଷମାନେ କାମ ପ୍ରବୃତ୍ତିର ତାଡନାରେ ଜ୍ଞାନ ଶୂନ୍ୟ ହୋଇ ଅହରହ କାମସେବା କରିବାକୁ ବ୍ୟଗ୍ର ହୁଅନ୍ତି । ସେମାନଙ୍କ ପାଇଁ ବେଶ୍ୟାଗୃହ ନିତାନ୍ତ ପ୍ରୟୋଜନ । ନଚେତ୍ ସେହି ଅସଚ୍ଚରିତ୍ର ପୁରୁଷମାନେ ଭଦ୍ରଘର ଝିଅ ବୋହୂମାନଙ୍କ ପ୍ରତି କଟାକ୍ଷ ପକାଇ ନାନାଦି ବିଭ୍ରାଟ ଘଟାଇବାକୁ କୁଣ୍ଠିତ ହେବେ ନାହିଁ ।

ଏଣୁ ଅନାୟାସ-ଲବ୍‌ଧ ବେଶ୍ୟାବୃତ୍ତି ସେମାନଙ୍କ ପାଇଁ ନିତାନ୍ତ ଲୋଡ଼ା । ତଥାପି ସମ୍ବାଦ ପତ୍ରମାନଙ୍କରେ ଦେଖିବାକୁ ମିଳେ, ଅନେକ ଭଦ୍ରଘରର ଝିଅ ବୋହୂ ସେମାନଙ୍କ ଦ୍ୱାରା ଅତ୍ୟାଚାରିତା ହୁଅନ୍ତି ।

ଅଧିକନ୍ତୁ ମଧ୍ୟ ଆମ ହିନ୍ଦୁ ସମାଜରେ ଓ ଶାସ୍ତ୍ରରେ ବେଶ୍ୟାମାନଙ୍କୁ ସମ୍ମାନ ଦିଆଯାଇ ଅଛି । ସ୍ୱର୍ଗର ଦେବସଭାରେ ସେମାନେ ଅପ୍‌ସରା ନାମରେ ବନ୍ଦିତା, ଏହା ତ ସମସ୍ତେ ପୁରାଣମାନଙ୍କରୁ ପଢ଼ିଛନ୍ତି । ବଡ଼ ବଡ଼ ହିନ୍ଦୁ ମନ୍ଦିରମାନଙ୍କରେ ଦେବ ଉପାସନାର ଅଙ୍ଗ ସ୍ୱରୂପ ନୃତ୍ୟଗୀତ ପାଇଁ ବେଶ୍ୟାମାନଙ୍କୁ ଦେବଦାସୀ ନାମରେ ଅଭିହିତ କରି ରଖା ଯାଇଅଛି । ତତ୍‌ପରେ ଏହା ତ ସମସ୍ତେ ଜାଣନ୍ତି ଯେ, ହିନ୍ଦୁର ଯେ କୌଣସି ଶୁଭକାର୍ଯ୍ୟରେ ବେଶ୍ୟା





ପ୍ରାଙ୍ଗଣର ମୃତ୍ତିକା ଏକାନ୍ତ ଆବଶ୍ୟକ ହୁଏ । କାରଣ ଉକ୍ତ ମୃତ୍ତିକା ଅତି ପବିତ୍ର ବୋଲି ଶାସ୍ତ୍ରରେ ବର୍ଣ୍ଣିତ ଅଛି ।



## ସମାଜରେ ବେଶ୍ୟାର ଅପକାରିତା

ବେଶ୍ୟାବୃତ୍ତି ସମାଜରେ ଥିବା ଦ୍ୱାରା ସମାଜର ଯାହା ଅକଲ୍ୟାଣ ଘଟୁଅଛି ତାହା ବର୍ଣ୍ଣନାତୀତ । ତଥାପି କେତେକ କଥା ନିମ୍ନରେ ବର୍ଣ୍ଣନା କରୁଅଛୁ ।

ବାରାଙ୍ଗନା ବୃତ୍ତି ଦ୍ୱାରା ନାରୀର ନାରୀତ୍ୱ ଏକାବେଳେ ରହେ ନାହିଁ । ଯେଉଁ ନାରୀ କଲ୍ୟାଣମୟୀ, ମାତୃଜାତି ବୋଲି ଅଖ୍ୟାତ, ସେ ନାରୀ ରାକ୍ଷସୀ ପାଲଟି ଯାଏ ।

ପ୍ରତିଦିନ ଏମାନେ ନୂତନ ନୂତନ ବ୍ୟକ୍ତିମାନଙ୍କ ସହିତ ସହବାସ କରି ଏବଂ କ୍ଷୁଦ୍ର ଓ ବୃହତ ଲିଙ୍ଗ ସଂସ୍ପର୍ଶରେ ଆସି ଏମାନଙ୍କର ଯୌନ ସୁଖାନୁଭୂତି ନଷ୍ଟ ହୋଇଯାଏ । କେବଳ ଅର୍ଥୋପାର୍ଜନକୁ ମୁଖ୍ୟ ଉଦ୍ଦେଶ୍ୟ କରି, ସେମାନେ ହିତାହିତ ଜ୍ଞାନ ଶୂନ୍ୟ ହୋଇ ମନୁଷ୍ୟର ସର୍ବନାଶ ସାଧନରେ ବ୍ରତୀ ହୁଅନ୍ତି । ଯେଉଁ ପୁରୁଷ ସେମାନଙ୍କ କୁହୁକ ପ୍ରଲୋଭନରେ ସେମାନଙ୍କ କବଳରେ ପଡ଼ନ୍ତି, ସେମାନେ ସର୍ବସ୍ୱାନ୍ତ ନ ହେବା ପର୍ଯ୍ୟନ୍ତ ସେଠାରୁ ମୁକ୍ତି ପାଆନ୍ତି ନାହିଁ । ଏହିପରି କେତେ ଯେ ସୁକୁମାରମତି ଯୁବକମାନଙ୍କର ସର୍ବନାଶ ଘଟୁଅଛି ତା'ର ସଂଖ୍ୟା ନାହିଁ । କିନ୍ତୁ ମନୁଷ୍ୟ ପ୍ରବୃତ୍ତିର ଦାସ । ଜାଣି ଶୁଣି ଏହି ନିଆଁରେ ଝାସଦିଏ ଏବଂ ନିଜର ଏପରିକି ତା'ର ବଂଶର ସର୍ବନାଶ କରେ । ତାହା ଭିତରେ ଦେଇ



ଯେଉଁ ସବୁ କୁତ୍ସିତ ବ୍ୟାଧି ତାହାର ବଂଶ ଭିତରେ ପ୍ରବେଶକରେ, ସେହି ବ୍ୟାଧିରେ ତା'ର ପୁଅ ନାତି ପର୍ଯ୍ୟନ୍ତ ଆକ୍ରାନ୍ତ ହୁଅନ୍ତି । ଏପରି କି କୁଷ୍ଠ ରୋଗାକ୍ରାନ୍ତ ପର୍ଯ୍ୟନ୍ତ ହୋଇପାରନ୍ତି ।

ଡାକ୍ତରମାନଙ୍କ ମତରେ ଜଣେ ବେଶ୍ୟାର ଯୋନିରେ ବହୁ ପୁରୁଷର ବୀର୍ଯ୍ୟପାତ ଦ୍ୱାରା ଉପଦଂଶ ରୋଗର ସୃଷ୍ଟି ହୁଏ । ଏଣୁ ଅଧିକାଂଶ ବେଶ୍ୟାଙ୍କଠାରେ ଏହିରୋଗ ଦେଖାଯାଏ, ଏହି ରୋଗ ବଡ଼ ସଂକ୍ରାମକ । ଏହା ଛଡ଼ା ବେଶ୍ୟାଗମନ ଦ୍ୱାରା ପ୍ରମେହ, ମଜ୍ଜାଗତ ଜ୍ୱର, ଶୁକ୍ର ତାରଲ୍ୟ, ପଥୁରୀ, ବାତ ଓ ରକ୍ତ ବିକୃତି ପ୍ରଭୃତି ରୋଗର ଉତ୍ପତ୍ତି ହୁଏ । ରକ୍ତବିକୃତି ପୁରୁଣା ହୋଇଗଲେ ସେଥିରୁ କୁଷ୍ଠରୋଗ ହେବା ଅତି ସାଧାରଣ କଥା ।

ଆମର ଶାସ୍ତ୍ର ମଧ୍ୟ ବେଶ୍ୟା ଗମନ ନିନ୍ଦନୀୟ ଓ ପାପ ବୋଲି ବର୍ଣ୍ଣନା କରିଅଛି । ଏହିପାପରେ ଯେଉଁମାନେ ପାପୀ ସେମାନେ ବିବାହ କରିବା ଉଚିତ ନୁହେଁ । ସେମାନେ ବିବାହ କଲେ ସେମାନଙ୍କ ଦାମ୍ପତ୍ୟଜୀବନ ସୁଖମୟ ହୁଏ ନାହିଁ, କେବଳ ଗୋଟିଏ ନାରୀର ଜୀବନ ପଣ୍ଡହୋଇ କେତେକ ରୁଗ୍ଣ ଓ ଅଳ୍ପାୟୁ ସନ୍ତାନ ସମାଜରେ ମିଶନ୍ତି, ଯାହାଦ୍ୱାରା କି ସମାଜର ଅଶେଷ ଅକଲ୍ୟାଣ ସାଧିତ ହୁଏ ।

ଅତୀତ ଦିଗରୁ ଦେଖିବାକୁ ଗଲେ ଶତ ଶତ ଧନୀ ଲୋକ ବେଶ୍ୟାସକ୍ତ ହୋଇ ଶେଷରେ ନିଃସ୍ୱ ହେବାର ଦୃଷ୍ଟାନ୍ତ ଭୂରି ଭୂରି ଦେଖିବାକୁ ମିଳେ ।







## ବେଶ୍ୟାର ପ୍ରକାରଭେଦ

ବେଶ୍ୟାମାନଙ୍କ ମଧ୍ୟରେ ଦୁଇଟି ଶ୍ରେଣୀ ବିଭାଗ ଅଛି । ୧—ପ୍ରକାଶ୍ୟବେଶ୍ୟା । ୨—ଗୁପ୍ତବେଶ୍ୟା । ପ୍ରକାଶ୍ୟ ବେଶ୍ୟାମାନଙ୍କ ମଧ୍ୟରେ ପୁଣି ଦୁଇଟି ଶ୍ରେଣୀ ବିଭାଗ ଅଛି । ପ୍ରଥମ ଶ୍ରେଣୀ ହେଉଛି —ନିଜେ ସ୍ୱାଧୀନ ଭାବେ ଗୋଟିଏ ଘରେ ରହି, ଗୃହଟି ଉତ୍ତମରୂପେ ସାଜସଜ୍ଜା କରି ପୁରୁଷମାନଙ୍କୁ ଭୁଲାଇ ନେଇ ସତୀତ୍ୱ ଅର୍ପଣକରି ଅର୍ଥ ଉପାର୍ଜନ କରିବା ! ଏହି ଶ୍ରେଣୀର ବେଶ୍ୟା କେତେକ ପରିମାଣରେ ସୁଖୀ ।

କିନ୍ତୁ ଦ୍ୱିତୀୟ ଶ୍ରେଣୀ ବେଶ୍ୟା ହେଉଛି—ଜଣେ ବୁଢ଼ୀ ଦୁଇ ବା ତତୋଧିକ ବାଳିକାଙ୍କୁ ଖରିଦ୍‌କରି ଆଣି ନିଜ ଅଧୀନରେ ରଖି ସେମାନଙ୍କ ଦ୍ୱାରା ବେଶ୍ୟାବୃତ୍ତି କରାଇ ଅର୍ଥୋପାର୍ଜନ କରିବା, ଏହି ଶ୍ରେଣୀର ବେଶ୍ୟାମାନଙ୍କ ପରି ଦୁଃଖୀ ଅନ୍ୟ ଜଗତରେ କେହି ନାହିଁ । ଏମାନଙ୍କର ଏହି ପାପ କାର୍ଯ୍ୟରେ ଆସକ୍ତି ବା ବିରକ୍ତି ପ୍ରକାଶ କରିବାର ଅଧିକାର ନାହିଁ । ସେମାନେ ଯେଉଁ ବୁଢ଼ୀ ଅଧୀନରେ ଥାଆନ୍ତି ତାହାର ଦ୍ୱାରା ପ୍ରତିପାଳିତ ଓ ପରିଚାଳିତ ହୋଇଥାନ୍ତି । ଏମାନଙ୍କ ମଧ୍ୟରୁ ଯଦି କେହି ପୀଡ଼ାଗ୍ରସ୍ତ ହୋଇ ଗୋଟିଏ ଦିନ ପୁରୁଷ ସଙ୍ଗମରୁ ଅବସର ନେବାକୁ ଚାହାନ୍ତି ତାହା ହେଲେ ଆଉ ତାର ରକ୍ଷା ନାହିଁ । ଏଥିପାଇଁ ସେ, ସେ ବୁଢ଼ୀଠାରୁ ପ୍ରହାର ପର୍ଯ୍ୟନ୍ତ ପାଇଥାଏ । ଏହି ବୁଢ଼ୀମାନେ ପିଶାଚିନୀ ଅପେକ୍ଷା ମଧ୍ୟ ଭୟଙ୍କର ।

ଏହି ବୁଢ଼ୀମାନେ ଖରିଦ କରିଥିବା ବାଳିକାମାନଙ୍କର ଯୌବନ ନ ଆସିବା ପୂର୍ବରୁ ମଧ୍ୟ ସେମାନଙ୍କୁ ବଳପୂର୍ବକ ଅସ୍ୱାଭାବିକ



ଉପାୟରେ ବେଶ୍ୟାବୃତ୍ତିରେ ଲଗାଇ ଦଅନ୍ତି । ଏଣୁ ସେମାନେ ଅଳ୍ପ ବୟସରେ ବ୍ୟାଧିଗ୍ରସ୍ତ ହୋଇ ପଡ଼ନ୍ତି ଏବଂ ତାଙ୍କ ସହିତ ସଂସର୍ଗ କରୁଥିବା ପୁରୁଷଙ୍କୁ ମଧ୍ୟ ସେହି ବ୍ୟାଧିରେ ସଂକ୍ରମଣ କରନ୍ତି ।

ଏହି ଶ୍ରେଣୀର ବେଶ୍ୟାମାନେ ଶୀଘ୍ର ମୃତ୍ୟୁକୁ ବରଣ କରନ୍ତି । କେହି ବଞ୍ଚି ରହିଲେ ସୁଦ୍ଧା ଅଳ୍ପଦିନେ ଯୌବନ ହରାଇ ଶେଷରେ ସେହି ବୃତ୍ତି ଦ୍ୱାରା ବହିଷ୍କୃତା ହୋଇ ପଥର ଭିକାରିଣୀ ହୋଇ ବୁଲନ୍ତି ।



## ବାତ୍ସ୍ୟାୟନ ଋଷିଙ୍କ ମତରେ ବେଶ୍ୟାର ପ୍ରକାରଭେଦ

'କୁମ୍ଭଦାସୀ ପରିଚାରିକା କୁଳଟା ସ୍ୱୈରିଣୀ ନଟୀ ଶିଳ୍ପକାରିକା
ପ୍ରକାଶ-ବିନଷ୍ଟା ରୂପାଜୀବା ଗଣିକାଚେତିବେଶ୍ୟା ବିଶେଷାଃ ।"

୧—କୁମ୍ଭଦାସୀ—ନୀଚ ସ୍ତ୍ରୀ, ୨—କୁଳଟା—ସଧବା ସ୍ତ୍ରୀ କିନ୍ତୁ ପରପୁରୁଷ ଗାମିନୀ, ୩—ସ୍ୱୈରିଣୀ—ବିଧବା ସ୍ତ୍ରୀ କିମ୍ବା ନିଜର ସ୍ୱାମୀକୁ ଖାତିର ନ କରି ସ୍ୱେଚ୍ଛାଚାରିଣୀ ହୁଏ, ୪—ପରିଚାରିକା—ରକ୍ଷିତା ଯେ କି ସେବା କରିବା ସକାଶେ ନିଯୁକ୍ତ ହୁଅନ୍ତି, ୫—ନଟୀ—ନୃତ୍ୟକାରିଣୀ ଅର୍ଥାତ୍ ନାଚ ଥିଏଟରରେ ବେତନ ନେଇ କାମ କରନ୍ତି ଏବଂ ଲୁଚିଛପାରେ ବେଶ୍ୟା ବୃତ୍ତି କରନ୍ତି, ୬—ଶିଳ୍ପକାରିକା—ଧୋବଣୀ ଓ ତନ୍ତୁବାୟ ଭାର୍ଯ୍ୟା ଇତ୍ୟାଦି, ୭—ପ୍ରକାଶ ବିନଷ୍ଟା—ଯେ ପ୍ରକାଶ୍ୟଭାବରେ ପ୍ରବୃତ୍ତ





ହୁଏ, ୮—ରୂପାଜୀବା—ଯେ ନିଜର ରୂପ-ଯୌବନ ବଳରେ ଧନ ଉପାର୍ଜନ କରେ, ୯—ଗଣିକା—ଯେଉଁ ବେଶ୍ୟା ନିୟମିତ ଭାବରେ ବେଶ୍ୟାବୃତ୍ତି କରେ, ଏହି ଗଣିକା ହେଉଛି ବେଶ୍ୟାମାନଙ୍କ ମଧ୍ୟରେ ଅତି ନିକୃଷ୍ଟ ।

ପ୍ରକାରାନ୍ତରେ ଦେଖିବାକୁ ଗଲେ ବେଶ୍ୟାମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ୧—ରାଗପରା; ୨—ଅର୍ଥପରା । କେହି କେହି କାମର ତାଡ଼ନା ସହି ନ ପାରି ବେଶ୍ୟା ବୃତ୍ତି କରନ୍ତି । ଆଜି ଅଧିକାଂଶ ବେଶ୍ୟା ଅର୍ଥପରା ଶ୍ରେଣୀଭୁକ୍ତ ଅଟନ୍ତି । ଏମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ହେଲା ଅର୍ଥ ଉପାର୍ଜନ, ରତିସୁଖ କେବଳ ଗୌଣ କର୍ମ ଅଟେ ।



## ଗୁପ୍ତ ବେଶ୍ୟା

ସାଧାରଣତଃ ପୁରୁଷ ଜାତି ସର୍ବଦା କାମ ଓ ବିଷୟାରସରେ ମଗ୍ନ ହେବାକୁ ଉତ୍କଣ୍ଠିତ । ପୂର୍ବ କାଳରେ ଆମ ଭାରତବର୍ଷରେ ଗୁରୁ ଗୃହରେ ୨୫ ବର୍ଷ ପର୍ଯ୍ୟନ୍ତ ରହି ବ୍ରହ୍ମଚାରୀ ଓ ସଂଯମୀ ହୋଇ ବିଦ୍ୟାଶିକ୍ଷା କରିବାକୁ ହେଉଥିଲା । ଏଣୁ ପୁରୁଷ କାମସେବା କରିବାକୁ ଅବସର ପାଉଥିଲା । କ୍ରମେ ଏହି ପ୍ରାଚୀନ ପଦ୍ଧତିର ବିଲୟ ଘଟିବା ସଙ୍ଗେ ସଙ୍ଗେ ସଂଯମ ଓ ବ୍ରହ୍ମଚର୍ଯ୍ୟ-ହୀନ ପୁରୁଷ ଯୋଗୁଁ ଦେଶରେ ବେଶ୍ୟା ସଂଖ୍ୟା ବଢ଼ିଚାଲିଛି ।

ସଂସାରରେ ସ୍ତ୍ରୀ ଅପେକ୍ଷା ପୁରୁଷ ହେଉଛି ବଡ଼ ନିର୍ଲଜ ଓ ଉଦ୍ଦଣ୍ଡ ପ୍ରକୃତି ବିଶିଷ୍ଟ । ଆମ୍ଭେମାନେ ଅନେକ ସ୍ଥଳେ ପୁରୁଷ



ସ୍ତ୍ରୀମାନଙ୍କ ପ୍ରତି ବଳାତ୍କାର କରିବା କଥା ଶୁଣି ବାକୁ ପାଉ । କିନ୍ତୁ କୌଣସି ସ୍ତ୍ରୀଲୋକ କୌଣସି ପୁରୁଷକୁ ବଳାତ୍କାର କରିବା କେବେ କେହି ଶୁଣିବାକୁ ପାଇଛୁ କି ? ପୁଣି କେବେ କେହି ଦେଖିବାକୁ ପାଇଛୁ କି, ସ୍ତ୍ରୀ-ବେଶ୍ୟାମାନଙ୍କ ପରି ପୁରୁଷ-ବେଶ୍ୟା କେଉଁଠାରେ ଦୋକାନ ଖୋଲି ବସିଛନ୍ତି; ଅଉ ପୁରୁଷ ଭଳି ସ୍ତ୍ରୀ କାମାତୁର ହୋଇ ଧନ ଦେଇ ପୁରୁଷ-ବେଶ୍ୟାମାନଙ୍କୁ ଅନ୍ୱେଷଣ କରୁଛନ୍ତି ? ପ୍ରାୟ ଏ କଥା ନୁହେଁ । ଏଣୁ ଆମ୍ଭେମାନେ କହୁ ପୁରୁଷହି ସ୍ତ୍ରୀ ଠାରୁ ଅଧିକ ନିର୍ଲଜ୍ଜ ଓ ବେହିଆ, ସ୍ତ୍ରୀମାନଙ୍କୁ କୁମାର୍ଗକୁ ନେଇ ଯିବାରେ ଏବଂ ସେମାନଙ୍କୁ ବ୍ୟଭିଚାରରେ ପ୍ରବୃତ୍ତ କରିବାରେ ବିଶେଷତଃ ପୁରୁଷମାନେ ହିଁ ଦାୟୀ । କୁଳୀନ ସ୍ତ୍ରୀମାନଙ୍କୁ ଲୋଭାଇ ଗୁପ୍ତବେଶ୍ୟା ବୃତ୍ତିରେ ମତାଇବାକୁ ପୁରୁଷର ମଧ୍ୟ କମ୍ ହାତ ନଥାଏ ।

ବଜାରରେ ପ୍ରକାଶ୍ୟ ବେଶ୍ୟାବୃତ୍ତି କରିବା ସ୍ତ୍ରୀଲୋକ ବ୍ୟତୀତ ସମାଜରେ ଅନେକ ଗୁପ୍ତବେଶ୍ୟା ଅଛନ୍ତି । ଯେଉଁ ପୁରୁଷମାନେ ଯୌନବ୍ୟାଧି, ମାନମର୍ଯ୍ୟାଦା ହାନୀ ଓ ସମାଜ ଭୟରେ କିମ୍ବା ଅଧିକ ଅର୍ଥ ହାନୀ ଭୟରେ ବେଶ୍ୟା ଗମନ କରିବାକୁ କୁଣ୍ଠା ବୋଧ କରନ୍ତି, ସେମାନେ ଏହି ଗୁପ୍ତବେଶ୍ୟାମାନଙ୍କ ଦ୍ୱାରା ଚୁପ୍‌ଚାପ୍ ନିର୍ବିଘ୍ନରେ ନିଜର ପାପ ବାସନା ଚରିତାର୍ଥ କରନ୍ତି । ଏଥିରେ ପୁରୁଷ ସ୍ତ୍ରୀ ଅପେକ୍ଷା ଅଧିକ ସୁଖ ପାଏ ।

ପ୍ରକାଶ୍ୟ ବେଶ୍ୟା ଅପେକ୍ଷା ଏହି ଗୁପ୍ତବେଶ୍ୟାମାନେ ଅତ୍ୟନ୍ତ ବେଶୀ ଭୟଙ୍କର । ସେମାନେ ନିଜର ସ୍ୱାମୀର ଓ ସମାଜ ଚକ୍ଷୁରେ ଧୂଳି ଦେଇ ଗୋପନରେ ନିଜର ପାପକାର୍ଯ୍ୟ ସମାଧାନ କରନ୍ତି । ଭ୍ରୂଣ-ହତ୍ୟା ରୂପକ ମହାପାପ ବିଶେଷତଃ ଏହିମାନଙ୍କ ଦ୍ୱାରା ଅଧିକ





ପରିମାଣରେ ସମାହୃତ ହୁଏ । ସମାଜ ଓ ସଂସାର ମଧ୍ୟରେ ଥାଇ ଯେଉଁମାନେ ଏହି ବୃତ୍ତି ଅବଲମ୍ବନ କରନ୍ତି, ସେମାନଙ୍କ ଦ୍ୱାରା ନ ହୋଇ ପାରେ ଏପରି କୌଣସି ଗୁରୁତର ପାପ ଦୁନିଆରେ ନାହିଁ । ସେମାନଙ୍କର ସମ୍ବନ୍ଧ-ଜ୍ଞାନ ଠିକ୍ ମଧ୍ୟ ରହେ ନାହିଁ । ଏପରି କି ସେମାନେ ନିଜର ନିକଟ ଆତ୍ମୀୟ ସହିତ ଏହି କୁତ୍ସିତ କର୍ମ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ଏମାନଙ୍କୁ ଚିହ୍ନିବାର କୌଣସି ଉପାୟ ନାହିଁ । କାରଣ ଏମାନେ ଧର୍ମର ମୁଖା ପିନ୍ଧି ସମାଜରେ ବିଚରଣ କରନ୍ତି ।

ଦୁନିଆରେ ବେଶ୍ୟାମାନଙ୍କର ସଂଖ୍ୟା ନିର୍ଣ୍ଣୟ କରାଯାଇ ପାରେ । କିନ୍ତୁ ଏହି ଗୁପ୍ତବେଶ୍ୟାମାନଙ୍କ ସଂଖ୍ୟା ନିର୍ଣ୍ଣୟ କରିବା କଠିନ । ଘରେ ଘରେ, ଗ୍ରାମେ ଗ୍ରାମେ, ସହରର ଗଳି କନ୍ଦିରେ ଏମାନେ ପୂରି ରହିଛନ୍ତି । ଶତକଡ଼ା ୨୫ ଜଣ ସ୍ତ୍ରୀ ଲୋକ ଏହି ଗୁପ୍ତବେଶ୍ୟା ବୃତ୍ତି କରନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କେହି କେହି ନିଜ ଘରେ ରହି ଏହି ବୃତ୍ତି କରନ୍ତି । କେହି କେହି ଅନ୍ୟର ସାହାଯ୍ୟରେ ଅନ୍ୟଠାରେ ଏହି ବୃତ୍ତି କରନ୍ତି, ଯେଉଁଠିକି ଗଲେ କେହି ତାଙ୍କୁ ମନା କରିବେ ନାହିଁ କିମ୍ବା ସନ୍ଦେହ କରିବେ ନାହିଁ ।

ଏଥି ପାଇଁ କୌଣସି ବୃଦ୍ଧା ସ୍ତ୍ରୀଲୋକ ଘର କିମ୍ବା ବିଧବା ସ୍ତ୍ରୀଲୋକର ଏକୁଟିଆ ଘର ଉପଯୁକ୍ତ ସ୍ଥାନ ଅଟେ । କୁଳଟା ସ୍ତ୍ରୀଲୋକମାନେ ନିଜ ସ୍ୱାମୀ କିମ୍ବା ଅନ୍ୟାନ୍ୟ ମୁରବୀମାନଙ୍କୁ ଅଠ ଦେଖିବା, ସିଲେଇ ଶିଖିବା, ମୁଣ୍ଡ ଦେଖାଇବା କିମ୍ବା ଅନ୍ୟ କିଛି ଗୋଟାଏ ବାହାନା କରି ସେଠାକୁ ଯାଇ ଗୁପ୍ତବେଶ୍ୟା ବୃତ୍ତି କରନ୍ତି ।



ଅଧୁନ ମଧ୍ୟ ଯେଉଁ ସ୍ତ୍ରୀଲୋକ ନିଜ ଘରେ ଏକୁଟିଆ ରହେ, ଏବଂ ତାର ସ୍ୱାମୀ ଗୃକରି କରି ବିଦେଶରେ ଥାଏ କିମ୍ବା ଦୋକାନ ପ୍ରଭୃତି ବ୍ୟବସାୟରେ ଅଧିକ ସମୟ ବାହାରେ କଟାଏ, ତା'ର କୁଳଟା ସ୍ତ୍ରୀ ମଧ୍ୟ ଏଥିରେ ପ୍ରବୃତ୍ତ ହେବାର ସମ୍ଭବ ।



## ନାରୀ ଗୁପ୍ତବେଶ୍ୟାବୃତ୍ତି କରେ କାହିଁକି ?

୧—ସ୍ୱାମୀ ନପୁଂସକ ହୋଇଥିଲେ, ୨—ସ୍ତ୍ରୀ ଇଚ୍ଛା କରିଥିବା ବସ୍ତୁ ସ୍ୱାମୀଠାରୁ ନ ପାଇଲେ, ୩—ଘରେ ପଇସାପତ୍ର ଅଭାବ ପଡ଼ିଲେ, ୪—ସ୍ତ୍ରୀର ମିଠାଇ କିମ୍ବା ଅନ୍ୟ କୌଣସି ଦ୍ରବ୍ୟ ଖାଇବାରେ ଅଭ୍ୟାସ ଥିଲେ, ୫—ପତି ରୋଗୀ କିମ୍ବା ଅଶକ୍ତ ହେଲେ, ୬—ନାରୀର କାମେଚ୍ଛା ଅଧିକ ହେଲେ, ୭—ନାରୀ ବିଳାସିତା ପ୍ରିୟ ହେଲେ, ୮—ନିଜର କୁଟୁମ୍ବ ଠାରୁ ସ୍ୱତନ୍ତ୍ର ହୋଇ ଏକୁଟିଆ ରହିଲେ, ୯—ସନ୍ତାନ ପାଇଁ ଚିନ୍ତିତା ହେଲେ ନାରୀ ଗୁପ୍ତବେଶ୍ୟା ବୃତ୍ତି କରିବା ସମ୍ଭବ ।

ଆହୁରି ମଧ୍ୟ ଠିକଣଠିକ ସ୍ଥଳେ ଦେଖିବାକୁ ମିଳେ ସ୍ୱାମୀ ନିଜର ସ୍ତ୍ରୀକୁ ପରପୁରୁଷରତା ହେବାକୁ ଉତ୍ସାହ ଦିଏ । ପାଠକେ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ, ଏପରି ସ୍ୱାମୀ ମଧ୍ୟ ପୃଥିବୀରେ ଅଛନ୍ତି, ଯେଉଁମାନେ କି ନିଜ ସ୍ତ୍ରୀକୁ ପରପୁରୁଷ ଆଣି ଜୁଟାନ୍ତି ଏବଂ ଉଭୟଙ୍କର ସଙ୍ଗମ ଲୀଳା ଦେଖି ସୁଖ ପାଆନ୍ତି । ଯଦି ସ୍ତ୍ରୀ ଏହି ପାପକର୍ମ କରିବାକୁ ଅମଙ୍ଗ ହୁଏ ତେବେ ସେ ସ୍ତ୍ରୀ ସ୍ୱାମୀ ଦ୍ୱାରା ନିର୍ଯ୍ୟାତିତା ହୁଏ ।





ଏହି ଗୁପ୍ତବେଶ୍ୟାମାନେ ପ୍ରକାଶ୍ୟ ପୁରୁଷ ଶିକାର କରନ୍ତି ନାହିଁ । ନିଜର ଘାଇ ପଡ଼ଶାରୁ ସେମାନେ ନିଜର ଶିକାର ସଂଗ୍ରହ କରନ୍ତି ।

ଦୋକାନ ବ୍ୟବସାୟୀ କରିବା ସ୍ତ୍ରୀଲୋକମାନଙ୍କ ମଧ୍ୟରୁ ଶତକଡ଼ା ୯୯ କୁଳଟା ହୁଅନ୍ତି । ସେମାନଙ୍କ ମଧ୍ୟରେ ମାଲୁଣୀ, ଗୋପାଳୁଣୀ, କେଉଟୁଣୀ, କୁମ୍ଭାରୁଣୀ ଆଦି ମୁଖ୍ୟ ଅଟନ୍ତି । ମୂଲିଆଣୀ କାମ କରୁଥିବା ସ୍ତ୍ରୀଲୋକ ଯେ କି ଦିନ ତମାମ ବାହାରେ ରହେ ଓ ଯେଉଁ ସ୍ତ୍ରୀଲୋକ ଅବାଧରେ ପରଘରକୁ ଯାଆସ କରେ ସେ ସ୍ତ୍ରୀଲୋକ ମଧ୍ୟ କୁଳଟା ହେବାର ଯଥେଷ୍ଟ ସମ୍ଭବ ।



## ଗୁପ୍ତବେଶ୍ୟାର ଲକ୍ଷଣ

ଯେଉଁ ସ୍ତ୍ରୀ ଲୋକ ଘରେ ସଦର ଦରଜାରେ ଅଧିକାଂଶ ସମୟ ଛିଡ଼ା ହୁଏ ବା ବସେ, ବାହାରେ ଯେଉଁଠି ପୁରୁଷ ସମାଗମ ଅଧିକ, ସେଠିକି ବେଶୀ ଯାଆସ କରେ, କିମ୍ବା ସେଠି ବସି ଗପସପ ଡାକହାକ କରି କୌଣସି କାମର ବାହାନା କରେ । ଝରକା ପାଖରେ ଅଧିକାଂଶ ସମୟ ବସି ବାହାରକୁ ଦେଖାଇ ହୁଏ, ସଡକ, ବଜାର କିମ୍ବା ଗଳିରେ ବାରମ୍ବାର ବୁଲାବୁଲି କରେ ନାଚ କିମ୍ବା ଯାତ୍ରା ମହୋତ୍ସବରେ ଅଧିକ ପରିମାଣରେ ଯୋଗ ଦିଏ । ଅଟ୍ଟହାସ କରି ବଡପାଟିରେ ହସେ । ପୁରୁଷକୁ ଦେଖିଲେ ମୁରୁକେଇ କରି ହସେ ଏବଂ ତାହାକୁ କଣେଇ କରି ଅନାଏ । ବ୍ୟର୍ଥ କଥା ଗୁଡାଏ ବକେ, ଏବଂ କାହାକୁ ଅଯଥା ଉଦାରତା ଓ



ସଜ୍ଜନତା ପ୍ରଦର୍ଶନ କରେ, ସ୍ୱେଚ୍ଛାଚାରିଣୀ ହୁଏ, ବିବାହିତା ହେଲେ ମଧ୍ୟ ବାପଘରେ ରହିବାକୁ ଅଧିକ ଭଲ ପାଏ, ଉପବାସ, ବ୍ରତ, କଥାବାର୍ତ୍ତା, ସ୍ନାନ ଧ୍ୟାନ, ତୀର୍ଥଯାତ୍ରା ଆଦିରେ ଅଧିକ ଭାଗ ନିଏ । ଅପରିଚିତ ବ୍ୟକ୍ତି ସହିତ ମନ ଖୋଲି କରି କଥା କହେ । ଏହିପରି ସ୍ତ୍ରୀଲୋକମାନେ ବ୍ୟଭିଚାରରେ ପ୍ରବୃତ୍ତ ହୋଇ ଗୁପ୍ତବେଶ୍ୟା ବୃତ୍ତି ଆଚରନ୍ତି ।



## ଗୁପ୍ତ ବେଶ୍ୟାବୃତ୍ତିରେ ସହାୟତା କେଉଁମାନେ କରନ୍ତି ?

ଗୁପ୍ତବେଶ୍ୟାବୃତ୍ତିରେ ପୁରୁଷଙ୍କୁ ସର୍ବଦା ପକ୍କା କରି ଦିଅନ୍ତି ନିମ୍ନଲିଖିତ ସ୍ତ୍ରୀଲୋକମାନେ, ଏଣୁ ଏମାନଙ୍କ ପ୍ରତି ସବୁବେଳେ ସତର୍କ ଦୃଷ୍ଟି ରଖିବା ଉଚିତ, । ଯଥା—ଅତି ବୃଦ୍ଧା ସ୍ତ୍ରୀଲୋକ, ପୁରୋହିତ ଘରଣୀ, ଛୋଟ ଛୋଟ ବାଳିକାମାନେ, ଭିକାରୁଣୀ, ସନ୍ନ୍ୟାସିନୀ, ସ୍ତ୍ରୀ ବୈଦ୍ୟ, ଯାଦୁକାରିଣୀ, ଝାଡ଼ାଫୁଙ୍କା କରିବା ସ୍ତ୍ରୀ-ଲୋକ, ହାତର ରେଖା ଆଦି ସାମୁଦ୍ରିକ ଯନ୍ତ୍ରମନ୍ତ୍ର ଦେଖିବା ସ୍ତ୍ରୀଲୋକ, ଦାଇ ଇତ୍ୟାଦି, ଏହି ଜାତୀୟ ସ୍ତ୍ରୀଲୋକମାନେ ଭଲ ଘରର ଝିଅ ବୋହୂଙ୍କୁ ପାପ ପଥକୁ ଟାଣି ଆଣିବାର ଦେଖାଯାଏ । ଏହା ଦ୍ୱାରା ଭଦ୍ର ଘରେ ମଧ୍ୟ ଉପଦଂଶ, ପ୍ରମେହ ପ୍ରଭୃତି ଯୌନ-ବ୍ୟାଧି ଘୋଟି ଯାଏ ।







## ବେଶ୍ୟା ସମ୍ବନ୍ଧେ ବିଷଦ ବିଚାର

ମୋଟ ଉପରେ ଦେଖିବାକୁ ହେଲେ ଏହି କଥା ହିଁ ସାର ଯେ, ଧନ ପାଇଁ ଦେହ ବିକିବା ବେଶ୍ୟାର ହେଉଛି ଜୀବିକା । ଏଣୁ ସମାଜ କର୍ତ୍ତାମାନେ ବେଶ୍ୟା ଓ ବେଶ୍ୟାସକ୍ତ ଦୁଇ କୁଳର ରକ୍ଷା ପାଇଁ ଗୋଟିଏ ବିଧି ବ୍ୟବସ୍ଥା ଛାଡ଼ିବା କିଛି ବିଚିତ୍ର ନୁହେଁ । ପ୍ରାଚୀନ ଆର୍ଯ୍ୟ ମନୀଷୀମାନେ ବିଷୟଟିକୁ ଖୁବ୍ ଉତ୍ତମ ଭାବେ ଆଲୋଚନା କରି ମନୋରଞ୍ଜନ ଓ ସ୍ୱାସ୍ଥ୍ୟନୀତିସମ୍ମତ ନିୟମମାନ କରି ଯାଇଛନ୍ତି । ଏହା ବୋଲି ସମସ୍ତେ ଯେପରି ମନେ ନ କରନ୍ତି ଯେ, ଯେତେବେଳେ ଶାସ୍ତ୍ର ବିଧି ବ୍ୟବସ୍ଥା କରିଅଛି, ସେତେବେଳେ ବେଶ୍ୟାଗମନ ନିନ୍ଦନୀୟ ନୁହେଁ ।

କିନ୍ତୁ ମନେ ରଖିବାକୁ ହେବ କି ହିନ୍ଦୁ, କି ମୁସଲମାନ ବା ଖ୍ରୀଷ୍ଟାନ ସବୁ ଧର୍ମର ଶାସ୍ତ୍ର ବେଶ୍ୟାଗମନକୁ ନିନ୍ଦା କରିଅଛି । ଆଜି କାଲିକାର ବ୍ୟାଧି ପୀଡ଼ିତ ସ୍ୱାସ୍ଥ୍ୟହୀନ ପୁରୁଷ ପକ୍ଷେ ଏହା ଭୀଷଣ ମାରାତ୍ମକ । ବେଶ୍ୟାଗମନର ଫଳାଫଳ ପୂର୍ବେ ବର୍ଣ୍ଣନା କରିଅଛୁ । ଏହି ସବୁ ବିଚାର କଲେ ବେଶ୍ୟାମାନେ ଯେ ସମାଜର ଘୋର କଳଙ୍କ ଏହା ଜାଣିବାକୁ ହୁଏ । ବେଶ୍ୟାଗୃହ ଯେ ନରକର ନାମାନ୍ତର ! ସେଠାରେ ପାଶବିକ ବୃତ୍ତିର ଚରିତାର୍ଥ ଛଡ଼ା ଅନ୍ୟ କିଛି ନାହିଁ କହିଲେ ଏହା ଯୁକ୍ତିହୀନ ହେବ ନାହିଁ ।

ଯେଉଁମାନେ ସଂଯମୀ ହୋଇ, କାମ ଉତ୍ତେଜନାକୁ ନିଜର ଅଧୀନ କରି ପାରିବେ ସେମାନଙ୍କ କଥା ସ୍ୱତନ୍ତ୍ର । ସେମାନେ ସମାଜର ପୂଜ୍ୟ । କିନ୍ତୁ ସେପରି ଉଚ୍ଚ ଧରଣର ପୁରୁଷ ସମାଜରେ ଶତକଡ଼ା କେତେ ଜଣ ଅଛନ୍ତି ?



ଉଗ୍ରକାମ ଭାବାପନ୍ନ ପୁରୁଷ ପାଇଁ ବେଶ୍ୟାର ଆବଶ୍ୟକ ଅଛି । ଏଣୁ ସେମାନଙ୍କ କର୍ତ୍ତବ୍ୟ ବିଷୟରେ କେତେକ ପରାମର୍ଶ ଦେଲେ, ସମାଜର ମଙ୍ଗଳ ଛଡ଼ା ଅମଙ୍ଗଳ ହେବ ନାହିଁ ।

ବେଶ୍ୟା ହେଉଛନ୍ତି ରୂପଜୀବୀ, ଏହା ବୋଲି ଯେ ଯାହାକୁ ମନ ତାହାକୁ ଗ୍ରହଣ କରିବ କିମ୍ବା ନିତାନ୍ତ ନିର୍ଲଜ୍ଜା ହେବ, ଏହାର କିଛି କାରଣ ନାହିଁ । ଯେତେ ହେଲେ ସେ ନାରୀ, ସମାଜର ଦଣ୍ଡିତ ପରିତ୍ୟକ୍ତା ହେଲେ ମଧ୍ୟ ନାରୀର ସହଜାତ ଧର୍ମ ଓ ସମ୍ଭ୍ରମ ମଧ୍ୟ ତାର ରହିବା ଉଚିତ ।



## ବେଶ୍ୟାର କର୍ତ୍ତବ୍ୟ

ସୃଷ୍ଟିର ସ୍ୱଭାବାନୁସାରେ ବୁଝାଯାଉଛି ଯେ, ପୁରୁଷକୁ ପାଇଲେ ବେଶ୍ୟାର ରତି ଓ ଜୀବିକା ଲାଭ ହୁଏ । ସେଥି ମଧ୍ୟରୁ ରତି ସକାଶେ ପ୍ରବୃତ୍ତି ସ୍ୱାଭାବିକ, କିନ୍ତୁ ଅର୍ଥ ପାଇଁ ପ୍ରବୃତ୍ତି କୃତ୍ରିମ । ତାହା ହେଲେ ମଧ୍ୟ ବେଶ୍ୟା ସ୍ୱାଭାବିକ ପ୍ରବୃତ୍ତି ପରି ଅନୁକରଣ କରିବା ଉଚିତ । କାରଣ କାମପରା ସ୍ତ୍ରୀଲୋକ ଠାରେ ପୁରୁଷର ପ୍ରଗାଢ଼ ବିଶ୍ୱାସ ଜନ୍ମିଥାଏ । ପୁରୁଷକୁ ଦେଖାଇ ହେବା ପାଇଁ କେବେହେଁ ଲୋଭ ପ୍ରକାଶ କରିବ ନାହିଁ । ଭଲ ମନ୍ଦର ପରିଣାମ ବୁଝି ଅର୍ଥ ସାଧନ କରିବା ଉଚିତ ।

ପ୍ରତିଦିନ ବସ୍ତ୍ରାଳଙ୍କାର ଭୂଷିତା ହୋଇ, ସାଧାରଣ ଯେପରି ଦେଖି ପାରିବେ ଏହିପରି ଭାବରେ ବସି ରାଜପଥ ଅବଲୋକନ କରିବ, ତାହା ବୋଲି ଅତି ପ୍ରକାଶିତ ହୋଇ ବସିବ ନାହିଁ । କାରଣ

ବେଶ୍ୟାଗୃହ ଗୋଟିଏ ଦୋକାନଦାରୀ କାର୍ଯ୍ୟ । ଅତି ପବିତ୍ରତାରେ ଗୌରବ ନଷ୍ଟ ହୁଏ । ଲୋକଙ୍କୁ ଦେଖାଇ ହୋଇ ବସିବା ଦରକାର । କିନ୍ତୁ ସେଥି ମଧ୍ୟରେ ଟିକିଏ ଲଜ୍ଜାଶୀଳତା ଭାବ ଥିବା ଆବଶ୍ୟକ । ଏହା ଦ୍ୱାରା ସାଧାରଣଙ୍କର ଦର୍ଶନ ଲାଳସା ଅଧିକ ବଢ଼ିଯାଏ ।



## ବେଶ୍ୟା କେଉଁମାନଙ୍କ ସାହାଯ୍ୟ ନେବା ଉଚିତ

ବେଶ୍ୟାମାନଙ୍କର ନିମ୍ନଲିଖିତ ପ୍ରକାର ବ୍ୟକ୍ତିମାନଙ୍କର, ସାହାଯ୍ୟ ନେବା ଉଚିତ—ଯେଉଁ ଲୋକ ଅନ୍ୟ ବେଶ୍ୟା ନିକଟକୁ ଯାଉଥିବା ନାଗରକୁ ମଙ୍ଗାଇ ନିଜ ପାଖକୁ ଆଣି ପାରେ । ଯେଉଁ ଲୋକ ନିଜ ଉପରେ ବିପଦ ପକାଇ ସୁଦ୍ଧା ବେଶ୍ୟାର କାର୍ଯ୍ୟ ଉଦ୍ଧାର କରି ପାରେ, କିମ୍ବା କେହି ନାଗର ବେଶ୍ୟା ପ୍ରତି କୌଣସି ଅତ୍ୟାଚାର କଲେ, ଯେ ଲୋକ ସେ ଅତ୍ୟାଚାରରୁ ବେଶ୍ୟାକୁ ରକ୍ଷା କରେ ଏପରି ଲୋକମାନଙ୍କୁ ଦଲାଲ ବା ଭଡ଼ୁଆ କୁହାଯାଏ ।

ଅତଏବ ମଧ୍ୟ ବେଶ୍ୟାର ନିମ୍ନଲିଖିତ ବ୍ୟକ୍ତିମାନଙ୍କ ଠାରୁ ସାହାଯ୍ୟ ପାଇବା ପାଇଁ ସେମାନଙ୍କୁ ହାତରେ ରଖିବା ଉଚିତ । ଯଥା—ଚୋର ଓ ଗୁଣ୍ଡାଙ୍କ ଉପଦ୍ରବରୁ ରକ୍ଷା କରିବାକୁ ପୁଲିସ, ଦୈବ ଆପଦ ବିପଦରୁ ରକ୍ଷା କରିବା ପାଇଁ ଧର୍ମାଧିକାରୀ, ଶୁଭାଶୁଭ ଲାଭାଲାଭ ଓ ଗମ୍ୟାଗମ୍ୟ ପୁରୁଷ ସମ୍ବନ୍ଧେ ବିଚାର କରିବା ପାଇଁ ଜ୍ୟୋତିଷ, ନିଜର ଜୀବନ ତୁଚ୍ଛ କରି ଯେ ବିପଦ ଆପଦରୁ ରକ୍ଷା କରିବ ଏପରି ବଳିଷ୍ଠ ପୁରୁଷ, ନୃତ୍ୟଗୀତ ସଙ୍ଗୀତ ବିଶାରଦ ପୁରୁଷ ଯେ କି ବାହାରୁ ନିଜର ସାଙ୍ଗସାଥି ଧରି ଆସି ବେଶ୍ୟାଳୟରେ



ସଙ୍ଗୀତ ଚର୍ଚ୍ଚା କରେ, ବେଶ୍ୟାର ରୂପ ଓ ଗୁଣର ପ୍ରଶଂସା କରି ସେ ବାହାର ଲୋକଙ୍କୁ ଆକର୍ଷଣ କରେ ଓ ବେଶ୍ୟା ନିକଟକୁ ଆଣେ ଏପରି ଷିଟ, ବେଶ୍ୟାଳୟକୁ ଯା'ଆସ କରୁଥିବା ନାଗରମାନଙ୍କ ମନକୁ ଯେ ହାସକୌତୁକ କରି ମଜାଏ ଏପରି ବିଦୂଷକ, ଏହାଉପରେ ମାଳାକାର, ବଣିଅ, ରଜକ, ଭଣ୍ଡାର, ମଦବିକ୍ରେତା ଓ ଭିକ୍ଷୁକ ଆଦି ପୁରୁଷ ଯେଉଁମାନେ କି ବେଶ୍ୟାମାନଙ୍କର ଅଧିକ ସମ୍ପର୍କରେ ଆସନ୍ତି ଏବଂ ଅନ୍ୟ ଗୃହକୁ ଏମାନେ ଯାଇ ନାଗରମାନଙ୍କୁ ଆଣି ଯୁଟାଇ ଦେଇ ପାରନ୍ତି ।



## ଗମ୍ୟ ପୁରୁଷ

ବେଶ୍ୟାମାନେ ମୁଖ୍ୟତଃ ଯୋଡ଼ିଏ ଉଦ୍ଦେଶ୍ୟ ନେଇ ପୁରୁଷ ସଂସର୍ଗ କରନ୍ତି, ୧—ଧନ, ୨—ଯଶ । କେବଳ ଧନ ଆଶାରେ ନିମ୍ନଲିଖିତ ପୁରୁଷମାନଙ୍କ ସହିତ ସହବାସ କରିଯାଇ ପାରେ, ଯଥା—ସ୍ୱାଧୀନ ଅର୍ଥାତ୍ ମାତା ପିତା କିମ୍ବା ଅନ୍ୟ କୌଣସି ପ୍ରକାର ବନ୍ଧନ ରହିତ, ପ୍ରଥମ ବୟସର ନବୀନ ଯୁବକ । ଧନବାନ, ଯାହାର ବୃତ୍ତି ସମସ୍ତଙ୍କୁ ଜଣା, ଯାହାର ଧନ ବ୍ୟୟକରିବାକୁ ପୂର୍ଣ୍ଣ ଅଧିକାର ଅଛି, ଯେଉଁ ବ୍ୟକ୍ତି କଷ୍ଟକରି ଧନ ଉପାର୍ଜନ କରିବାକୁ ପଡ଼ି ନାହିଁ । ଯେ ସ୍ପର୍ଦ୍ଧାବାନ, ଯାହାର ଆୟ ନିରବଚ୍ଛିନ୍ନ ଭାବେ ହେଉଥିବ, ଯେଉଁ ଲୋକ ଦୁର୍ଭଗା ହୋଇ ମଧ୍ୟ ନିଜକୁ ସୌଭାଗ୍ୟବାନ ବୋଲି ମନେକରେ, ଯେ ନିଜର ବଡ଼ାଇ ଦେଖାଇ ହେବାକୁ ଭଲପାଏ, ଯେ ସମାନ ସ୍ପର୍ଦ୍ଧୀ—ଅର୍ଥାତ୍ କୁଳ, ବିଦ୍ୟା ଧନ ଓ ବୟସ ମେ କୌଣସି ଗୋଟିକର ସ୍ପର୍ଦ୍ଧୀ କରିପାରେ,





ଯେ ସ୍ୱଭାବତଃ ଦାନଶୀଳ, ରାଜା ବା ବଡ଼ ବଡ଼ ସରକାରୀ କର୍ମଚାରୀମାନଙ୍କ ନିକଟରେ ଯାହାର ବେଶୀ ଖାତିର ଥାଏ, ଦୈବ ପ୍ରମାଣ—ଅର୍ଥାତ୍ ଯେ ମନେ କରେ ଭଗବାନ ଖୁସି ହେଲେ ଧନ ଖୁସି ହୁଏ, କିନ୍ତୁ ଉପଭୋଗରେ ନୁହେଁ, ଯେଉଁ ବ୍ୟକ୍ତି ଧନର ମମତା ରଖେ ନାହିଁ, ଯାହା ଉପରେ କେହି ମୁରବି ନ ଥାଏ, ଯେ ନିଜର ପରିବାର ଠାରୁ ଅଧିକ ପ୍ରାପ୍ତ ହୋଇ ବିଚ୍ଛିନ୍ନ ହୋଇ-ଥାଏ, ଯେ ଧନୀର ଏକମାତ୍ର ପୁତ୍ର । ପ୍ରଚ୍ଛନ୍ନ ଭାବ ସନ୍ୟାସୀ, ଧନ-ବାନ ସୁର ଏବଂ ବୈଦ୍ୟ, ଯାହାଠାରୁ ବେଗରେ ଚିକିତ୍ସା ଅର୍ଥ କରାଯାଏ ସେ ଧନବାନ ନ ହୋଇଥିଲେ ମଧ୍ୟ ତାହା ସହିତ ପ୍ରଣୟ କରିବା ଉଚିତ ।



## ଯଶ ପ୍ରାପ୍ତି ଆଶାରେ ଗମ୍ୟପୁରୁଷ

ପ୍ରେମ ଓ ଯଶପ୍ରାପ୍ତି ଅଭିଳାଷ କରିବା ବେଶ୍ୟା ନିମ୍ନଲିଖିତ ପୁରୁଷମାନଙ୍କ ପାଖକୁ ଯାଏ, ଯଥା—ଉତ୍ତମ କୁଳରେ ଯାହାର ଜନ୍ମ, ବିଦ୍ୱାନ, ଦେଶକାଳ ପାତ୍ର ଜ୍ଞାନ ଯାହାର ଥାଏ, କବି, ବାଗ୍ମୀ, କଥା କହିବାରେ ଯେ ଚତୁର, ଯେ ପ୍ରଗଳ୍‌ଭ, ଶିଳ୍ପକଳା-କୁଶଳୀ, ବିଦ୍ୟା—ବୟୋବୃଦ୍ଧିର ଉପାସକ ଅର୍ଥାତ୍ ଗୁଣୀ ଓ ଜ୍ୟେଷ୍ଠ ଲୋକଙ୍କୁ ଯେ ଆଦର କରେ । ସ୍ପଷ୍ଟବାଦୀ ଯାହାର ଲୁଚଛପା ଉଦ୍ଦେଶ୍ୟ ନ ଥାଏ, ଶ୍ରେଷ୍ଠବୀର, ଅକ୍ରୋଧ, ମହୋତ୍ସାହୀ (ଶୌର୍ଯ୍ୟ, ଅମର୍ଷତା, ଶୀଘ୍ରତା, ଦକ୍ଷତା ପ୍ରଭୃତି ଉତ୍ସାହ ଗୁଣଯୁକ୍ତ) ଦୃଢ଼ଭକ୍ତ, ତ୍ୟାଗଶୀଳ, ମିତ୍ରବତ୍ସଳ, ପ୍ରଗାଢ଼ସ୍ନେହୀ । ପଛରେ ଯେ ନିନ୍ଦା କରେ ନାହିଁ, ତ୍ୟାଗୀ ଅର୍ଥାତ୍ ଅଧିକ ଦାନ କରିବାରେ ସମର୍ଥ



ପ୍ରେମୀ, ଯାତ୍ରା, ମେଳା, ଥିଏଟର, ସଭାସମିତି ଓ କ୍ଲବ ଆଦିରେ ଅଧିକ ଅନୁରାଗ ରଖିବା ବ୍ୟକ୍ତି । ନୀରୋଗ ଓ ସୁଗୋଲ ସୁଠାମ ସ୍ୱାସ୍ଥ୍ୟ-ସମ୍ପର୍ଣ୍ଣ, କଣା କୁଜା କମ୍ବା ଅଙ୍ଗ ହୋଇ ନଥିବ, ସାହସୀ ଓ ଶକ୍ତିମନ୍ତ, ଅମଦ୍ୟପାୟୀ, ଦୟାବାନ, ଯେ ସ୍ତ୍ରୀମାନଙ୍କର ନେତା ହେବାକୁ ଇଚ୍ଛାକରେ ଓ ପୁରୁଷ ଅପେକ୍ଷା ସ୍ତ୍ରୀକୁ ବେଶୀ ପ୍ରେମ କରେ ଅଥଚ ସ୍ତ୍ରୀମାନଙ୍କ ବଶରେ ରହେ ନାହିଁ । ଅତୁର ମଧ୍ୟ ଯେ ନିଷ୍ଠୁର ଓ ଈର୍ଷାଳୁ ନୁହେଁ, ସ୍ୱାଧୀନ ବୃତ୍ତିଧାରୀ, ଏବଂ ଯେ ନିଜଙ୍କ ଭାବେ ଯେ କୌଣସି କ୍ରିୟା ଆରମ୍ଭ କରେ ।



## ଉତ୍ତମ ବେଶ୍ୟାର ଲକ୍ଷଣ

ଲାବଣ୍ୟ-ଯୌବନ ଓ ସୌଭାଗ୍ୟ-ଲକ୍ଷଣଯୁକ୍ତା, ମିଷ୍ଟ ଭାଷିଣୀ, ନାୟକ ଗୁଣମୁଗ୍ଧା, ଅର୍ଥରେ ଯେପରି ଲୋଭ ନଥାଏ, ନାୟକଙ୍କୁ ଅନ୍ତରେ ଓ ବାହାରେ ପ୍ରେମ କରେ । ରତିକ୍ରିୟାରେ ନିପୁଣା, କର୍ତ୍ତବ୍ୟନିଷ୍ଠ ଅର୍ଥାତ୍ ଅସଙ୍କୋଚଧର୍ମିଣୀ, ମାୟାରହିତା, ଏକମାତ୍ର ନାୟକ ପ୍ରତି ପ୍ରେମ ଓ ଶ୍ରଦ୍ଧା ରଖେ, ସର୍ବଦା ନିଜ ବୃତ୍ତିରେ ସନ୍ତୁଷ୍ଟ ରହେ, ଗୋଷ୍ଠୀ ତଥା ଅନ୍ୟ ଲଳିତ କଳାରେ ଅନୁରାଗ ରଖେ । ଏହିସବୁ ଗୁଣଯୁକ୍ତା ନାୟିକା ହିଁ ଉତ୍ତମ ବେଶ୍ୟା ଅଟେ ।



## ନାୟକ ଓ ନାୟିକାର ସାଧାରଣ ଗୁଣ

ବୁଦ୍ଧି, ଶୀଳ, ଅଗୁର, ନମ୍ରତା, କୃତଜ୍ଞତା, ଦୀର୍ଘଦର୍ଶିତା ଓ ଦୂରଦର୍ଶିତା ( ବିଚକ୍ଷଣତା, ) ଅଳଙ୍କ ପ୍ରିୟତା, ଦେଶକାଳ

ପାନ ଛନ, ଯାଚଣ୍ଣ, ଅଇହାସ ( ଅଟ୍ଟହାସ ), କୋଧ ଲୋଭ ବର୍ଜନ, ପ୍ରେମ ଏଣ୍ଡଡ,ପ୍ରିୟତପୂର୍ବାଭିଭାଷଣ,କାମ-ସୂତ୍ରରେ ୧୬-ଅନ୍ୟାନ୍ୟ ଲଳିତକଳା ଜ୍ଞାନ ପୂର୍ଣ୍ଣ, ଏହି ସବୁ ସାଧାରଣ ଜ୍ଞାନ । ଏହାର ବିପରୀତ ହେଲେ ଦୋଷ ବୋଲି ଜାଣିବ ।



## ଅଗମ୍ୟ ପୁରୁଷ ଲକ୍ଷଣ

ନିମ୍ନଲିଖିତ ପୁରୁଷଙ୍କୁ ବେଶ୍ୟା ଗ୍ରହଣ କରିବା ଉଚିତ ନୁହେଁ, ଯଥା—ରାଜଯକ୍ଷ୍ମା ପୀଡ଼ିତ, କୁଷ୍ଠରୋଗୀ, ଯାହାର ମଳରେ କୃମି ପଡ଼େ, ଯାହାର ମୁହଁ ଦୁର୍ଗନ୍ଧଯୁକ୍ତ, ଯେ ଶୌଚାଶୌଚ ବିଚାର ନ ରଖେ, ନିଜର ଭାର୍ଯ୍ୟା ପ୍ରତି ପ୍ରଗାଢ଼ ପ୍ରେମ ରଖେ, କଠୋର ବଚନ କହେ, କୃପଣ, ନିର୍ଦ୍ଦୟ ନିଜର ଗୁରୁଜନଙ୍କଠାରୁ ପରିତ୍ୟକ୍ତ, ଚୋର, ଦମ୍ଭୀ, ଯାଦୁ କିମ୍ବା ବଶୀକରଣ ଜାଣିଥିବା ବ୍ୟକ୍ତି, ମାନ ଅପମାନକୁ ଗ୍ରାହ୍ୟ କରେ ନା, ପରଶ୍ରୀକାତର, ଅତ୍ୟନ୍ତ ଲଜ୍ଜାହୀନ, ଯାହାର ଶୁକ୍ର ସଂସର୍ଗ ମାତ୍ରେ ସ୍ତ୍ରୀ ଗର୍ଭବତୀ ହୁଏ ଏବଂ ଯେଉଁ ପୁରୁଷର ଲିଙ୍ଗ ଅତି ଦୀର୍ଘ ବା ଅତି ସ୍ଥୂଳ ।



## ନାୟକ ସଂସର୍ଗର ଅନ୍ୟକାରଣ

ଧନ ଓ ଯଶ ବ୍ୟତୀତ ଅନ୍ୟ କେତେକ କାରଣରୁ ମଧ୍ୟ ବେଶ୍ୟା ପୁରୁଷ ସଂସର୍ଗ କରେ । ଯଥା—କୌଣସି କୌଣସି ପୁରୁଷ ପ୍ରତି ନାରୀମାନଙ୍କର ସ୍ୱାଭାବିକ । ପ୍ରେମ ଓ ରାଗ ଉତ୍ପନ୍ନ ହେଲେ, ମୃତ୍ୟୁଭୟ ଦେଉଥିବା ବ୍ୟକ୍ତି, ଭୂମି ଆଦି ପାଇବା ଆଶାରେ ସ୍ପର୍ଦ୍ଧା



ଯୋଗୁ ( ଯେପରି ଏହି ନାୟକ ଅନ୍ୟ ବେଶ୍ୟା ପାଖକୁ ନଯାଏ); ବୈଶ୍ୟ ନିର୍ଯାତନ ଯୋଗୁ ( ଅମୁକ ନାୟକ ଅନ୍ୟ ବେଶ୍ୟା ପାଖକୁ ଯାଉଥିଲା । ତାକୁ ଯେ କୌଣସି ମତେ. କୌଶଳ କରି ପଇସାର ଲୋଭ ନ ରଖି, ତାକୁ ନିଜ ପାଖକୁ ଆଣି, ସେହି ନାଗର ଦ୍ୱାରା ସେ ବେଶ୍ୟାର ଅମଙ୍ଗଳ ଘଟାଇବା ), କୌଣସି ବ୍ୟକ୍ତିର ବିଶେଷ ନାମ ଶୁଣିକରି ତା'ର ଯୋଗ୍ୟତା ଜାଣିବାକୁ ଅଭିଳାଷ ହେଲେ; କୌଣସି ଲୋକକୁ ନିଜର ଆଶ୍ରୟକୁ ଆଣି ତା'ଦ୍ୱାରା ଜୀବିକା ଅର୍ଜନ କରିବା ପାଇଁ, ବାରମ୍ବାର ନାନା ପ୍ରକୃତିର ପୁରୁଷ ସଂସର୍ଗରେ ଆସି ମନର ଶ୍ରମ ଓ ଅବସାଦ ମେଣ୍ଟାଇବା ପାଇଁ କୌଣସି ଗୋଟିଏ ପୁରୁଷ ସହିତ ସଂସର୍ଗ କରେ, ଧର୍ମ ( କୌଣସି ଲୋକ ସଂସର୍ଗ କରି ବାକୁ ଲାଳାୟିତ କିନ୍ତୁ ପଇସା ଅଭାବରୁ ତା'ର ସେ ଆଶା ମେଣ୍ଟେ ନାହିଁ, ତା'ର ମନୋରଥ ପୂରଣ କରିଲେ ଧର୍ମ ହେବ ); ଅନୁକମ୍ପା ( 'ତୁମେ ଯଦି ମୋର କାମନା ପୂରଣ ନ କରିବ ତେବେ ମୁଁ ନିଶ୍ଚୟ ମରିବି ଏହିକଥା ଯେ କହେ ତାହା ଉପରେ ଦୟା କରିବା ), ସୁହୃଦ୍ ବାକ୍ୟ ( ମୋର ଜଣେ ପ୍ରଣୟୀ ଲୋକ ଆସିଅଛି ତା ସହିତ ତୁମ୍ଭଙ୍କୁ ଆଜି ପ୍ରୀତି କରିବାକୁ ହବ ) ଲଜ୍ଜା ( ଏ ମୋର ଗୁରୁ ସ୍ଥାନୀୟ, କିନ୍ତୁ ତା'ର ମୋ ସହିତ ପ୍ରୀତି କରିବାକୁ ମନ ଅଛି );ପ୍ରାୟ ସାଦୃଶ୍ୟ, ପୁଣ୍ୟବାନ, ରୂପବାନ ଓ ଧନବାନ, ସୁତରାଂ ଏହା ସହିତ ପ୍ରୀତିକଲେ ମୁଁ ଧନ୍ୟ ହେବି, ରାଗାପନୟ ( ହଠାତ୍ ପୁରୁଷ ସଂସର୍ଗ ପାଇଁ ମନରେ ଲାଳସା ଜନ୍ମିଲା, ଏଣୁ ଯାହାକୁ ସମ୍ମୁଖରେ ପାଏ ତା ସହିତ ପ୍ରୀତିକରେ ); ତ୍ୱଜାତି, ପ୍ରତିବେଶୀ, କିମ୍ବା ଏ ଲୋକ ପ୍ରଭାବଶାଳୀ, ଏହା ସହିତ ସଂସର୍ଗ





କଲେ ନିଜର ପ୍ରଭାବ ବୃଦ୍ଧି ହେବ, ଏହିସବୁ କାରଣରୁ ବିନା ଅର୍ଥରେ ବେଶ୍ୟା ପୁରୁଷ ସଂସର୍ଗ କରିଥାଏ ।

---

## ନାୟକକୁ ନିଜ ଅୟତ୍ତକୁ ଆଣିବାର ଉପାୟ

ନାୟକ ସ୍ୱୟଂ ଉପସ୍ଥିତ ହୋଇ ସଂଗମ ପାଇଁ ପ୍ରାର୍ଥନା କରିଲେ ସେଥିରେ ହଠାତ୍ ରାଜିହେବ ନାହିଁ । କାରଣ ପୁରୁଷର ସ୍ୱଭାବ ହେଉଛି ଯାହାକୁ ସହଜରେ ପାଏ ତାକୁ ସମ୍ମାନ କରେ ନାହିଁ । ନାୟକର ଅଭିପ୍ରାୟ କ'ଣ ତାହା ଜାଣିବା ସକାଶେ ଦାସୀ ମାନଙ୍କୁ, ବିଦୁଷକ, ସଙ୍ଗୀତଜ୍ଞ ପ୍ରଭୃତି ନିଜର ପରିଚିତ ବ୍ୟକ୍ତି ମାନଙ୍କୁ ନାୟକ ନିକଟରେ ନିଯୁକ୍ତ କରିବ । ସେମାନଙ୍କ ଦ୍ୱାରା ନାୟକର ଭୋଗ ବୈରାଗ, ପୁରୁଷତ୍ୱ, ତାର ଟଙ୍କା ପଇସା ଓ ଦବା ନବାର ବିଷୟ ଅବଗତ ହେବା ଉଚିତ । ନାୟକ ଯଦି ବଡ଼ଲୋକ ହୋଇଥାଏ, ତୁମ୍ଭର କୌଣସି ପୁରାତନ ନାୟକକୁ ତାଙ୍କ ସହିତ ନିୟୋଗ କରିବ । ତଦ୍ୱାରା ଅଧିକ ଅର୍ଥ ଉପାର୍ଜନର ସୁବିଧା ହୁଏ । ବିଦୁଷକ, ଦାସୀ କିମ୍ବା ଭଡ଼ୁଆ ଦ୍ୱାରା କୌଣସି ନାଗର ଘରକୁ ଆସିଲେ ତା'ର ପ୍ରୀତି ବଢ଼ାଇବା ପାଇଁ ତାକୁ କୌଣସି ସୁନ୍ଦର ବସ୍ତୁ ନିଜ ହାତରେ ଦେବ, କହିବ; "ମୋର ଏ ସାମାନ୍ୟ ଉପହାରଟି ଅପଣଙ୍କ ଯୋଗ୍ୟ ନ ହେଲେ ମଧ୍ୟ ଗ୍ରହଣ କରନ୍ତୁ ।" ଏହା ଦ୍ୱାରା ନାୟକ ନିଜକୁ ଗୌରବାନ୍ୱିତ ମନେକରେ ଏବଂ ଏହି ପ୍ରେମିକା ଲୋଭହୀନା ବୋଲି ବିଶ୍ୱାସ କରେ । ନିଜଘରକୁ ଆସିଥିବା ନାୟକର ସଙ୍ଗେ ସଙ୍ଗେ ବେଶ୍ୟା ରହି ମିଷ୍ଟାଳାପ କରି ପାନ, ବିଡ଼ି, ସିଗ୍ରେଟ କିମ୍ବା ଗୁଡ଼ାଖୁ ଆଦି ଦେଇ ନିଜ ପ୍ରତି ଆକର୍ଷଣ କରିବା



ଦରକାର । ସଙ୍ଗମ ପରେ ନାୟକ ନିଜ ଘରକୁ ଫେରିବା ବେଳେ କୌଣସି ବିଶ୍ୱସ୍ତ ଦାସୀ କିମ୍ବା ଅନ୍ୟ କେହି ନିଜର ଲୋକ ସଙ୍ଗରେ ଦେଇ କିଛିଦୂର ଅଗେଇ ଦେବା ଉଚିତ । କେହି ନ ଥିଲେ ନିଜେ ଯାଇଁ କିଛିଦୂର ବଳେଇ ଦେଲେ ଚଳେ, କିନ୍ତୁ ବେଶ୍ୟା ସ୍ୱୟଂ ସହସା ନାୟକକୁ ଯାଇ ବଳାଇ ଦେବାଟା ଠିକ୍ ନୁହେଁ । କାରଣ ଏଥି ବେଶ୍ୟା ପ୍ରତି ନାୟକର ଅବଜ୍ଞା ଜାତ ହୁଏ । ବେଶ୍ୟାର ଉଚିତ ହେଉଛି ଆସିଥିବା ନାୟକକୁ ତାମ୍ବୁଲ, ମାଳା ଓ ଚନ୍ଦନ ଅଗୁରୁ ଅନୁଲେପନ ଦେଇକରି ମଧୁର ଏବଂ ସରସ କଥା କହି ତା'ର ମନକୁ ଆକର୍ଷଣ କରିବା । ଯାହା ଦ୍ୱାରା କି ପରସ୍ପର ମଧ୍ୟରେ ପ୍ରେମ ପ୍ରଗାଢ଼ ହେବ । ଏ ସବୁ ଚତୁରା ବେଶ୍ୟାର କାମ ଅଟେ ।



## ନାୟକ ପ୍ରତି ବେଶ୍ୟାର କର୍ତ୍ତବ୍ୟ

କୌଣସି ପୁରୁଷ ସହିତ ପ୍ରେମ ସମ୍ବନ୍ଧ ହୋଇଗଲା ପରେ ତାହାକୁ ପ୍ରସନ୍ନ କରିବାକୁ ବେଶ୍ୟା ପ୍ରତିବ୍ରତା ସ୍ତ୍ରୀ ପରି ଆଚରଣ କରିବ । ନାୟକକୁ ନିଜ ପ୍ରତି ଆସକ୍ତ କରିବାକୁ ସମସ୍ତ ଉପାୟ କରିବ କିନ୍ତୁ ନିଜେ କଦାପି ତାହା ପ୍ରତି ଆସକ୍ତ ହେବନାହିଁ । ଏକଥା ଯେପରି ନାୟକ ଜାଣି ନ ପାରେ ।

ନିଜର ମା ଥିଲେ ଭଲ, କିମ୍ବା ଗୋଟିଏ ଧର୍ମମାତା କରିବାକୁ ହେବ । ଯାହାର ସ୍ୱଭାବ କି ଅତ୍ୟନ୍ତ ସ୍ୱାର୍ଥପର ଏବଂ କ୍ରୂର-ଭାବା-ପନ୍ନ ହୋଇଥିବ । ବେଶ୍ୟା ସେହି ମାତାର ଆୟତ୍ତରେ ରହି ନିଜକୁ ପରାଧୀନା ବୋଲି ପ୍ରମାଣିତ କରୁଥିବ । ଏପରି ହେଲେ ନାୟକଠାରୁ ଧନ ଆଦାୟ କରିବାକୁ ସୁବିଧା ହୁଏ । ନାୟକ ପାଖରେ ବେଶ୍ୟା

ଥିବା ସମୟରେ କୌଣସି କାର୍ଯ୍ୟଛଳରେ ମା ଯାଇ ବେଶ୍ୟାକୁ ଡାକୁଥିବ ଏବଂ ଏପରି ବ୍ୟବହାର କରୁଥିବ ଯେପରି କି ଦୁହିଁଙ୍କ ମଧ୍ୟରେ ପ୍ରେମ ଦୀର୍ଘସ୍ଥାୟୀ ନ ହୁଏ । ଏପରି ସ୍ଥଳେ ବେଶ୍ୟା ଏପରି ହାବଭାବ ଦେଖାଇବ "ଅତି ଅନିଚ୍ଛା ସତ୍ତ୍ୱେ ମା କଥାରେ ବାଧ୍ୟ ହୋଇ ମୁଁ ତୁମ ପାଖରୁ ଯାଉଛି, ନଚେତ୍ ତମକୁ ଛାଡ଼ି ଯିବାକୁ ମୋ ଅନ୍ତର କାନ୍ଦି ଉଠୁଛି" ଏହିକଥା ଯେପରି ନାୟକ ବୁଝିବାକୁ ପାଏ ।

ନାୟକ ପାଖରେ ବସି ପ୍ରେମାଳାପ କରୁଥିବା ସମୟରେ, ମୁଣ୍ଡବ୍ୟଥା, ନେତ୍ରପୀଡ଼ା, ଆଦି ଆକସ୍ମିକ ବ୍ୟାଧିର ଛଳନା କରି କଷ୍ଟ ଅନୁଭବ କରିବ । ଏହା ଦ୍ୱାରା ନାଗରର ଅନୁରକ୍ତି ଓ ସହାନୁଭୂତି ବଢ଼ିଯାଏ । ନାଗରକୁ ପରୀକ୍ଷା କରିବାକୁ ଏହା ଗୋଟିଏ କୌଶଳ ଅଟେ । ଯଦି କୌଣସି କାରଣରୁ ନାୟକ ବିରକ୍ତ ହୋଇ ଅନ୍ୟ ପାଖକୁ ନ ଆସେ ଦାସୀ କିମ୍ବା ଭଉଣୀ ଦ୍ୱାରା ମାଳା କିମ୍ବା ତାମ୍ବୁଳ ତାଙ୍କ ପାଖକୁ ପଠାଇବ । ନାୟକ ଯିବା ଆସିବା କଲେ ନାୟିକା ମୃଦୁ ଓ ମଧୁର ଉପଚାର ଓ ପ୍ରଣୟ ଲୀଳା କରି ନିଜର ରତିକୌଶଳ ଦେଖାଇବ । ନାୟକକୁ କାମ ଶାସ୍ତ୍ର ବର୍ଣ୍ଣିତ ୬୪ ପାଞ୍ଚାଳିକୀ କଳା ଶିଖାଇବ । ଯେଉଁ କାର୍ଯ୍ୟକଲେ ନାୟକ ଖୁସିହେବ ସେ କାର୍ଯ୍ୟ କରିବାକୁ ଅମଙ୍ଗ ହେବ ନାହିଁ । ସଙ୍ଗମବେଳେ ନାୟକ ତାମ୍ବୁଳ, ଅତର କିମ୍ବା ମଦ ଦେଲେ ତାହା ସାଦରେ ଗ୍ରହଣ କରିବ । ମଦ ପିଇବାର ଅଭ୍ୟାସ ନ ଥିଲେ ବିନୟ ସହ ଅସ୍ୱୀକାର କରିବ । ନିଜର ଗୁହ୍ୟ, କକ୍ଷ, ଉରୁ ଓ ଜଙ୍ଘ, ଏହି ସ୍ଥାନଗୁଡ଼ିକ, ଯେ ଗୁଡ଼ିକ ଦେଖିବାକୁ ଅସୁନ୍ଦର ବା ବିକଟ, ସେ ଗୁଡ଼ିକ ସର୍ବଦା ବସ୍ତ୍ରରେ ଘୋଡ଼ାଇବାକୁ ଚେଷ୍ଟା କରିବ; ଯେପରି ନାୟକ ଦେଖିବାକୁ ନ ପାଏ । ଏକାଠି ଶୋଇଥିଲାବେଳେ ନାୟକ ଅଙ୍ଗକୁ ପିଠି କରି ଶୋଇବ



ନାହିଁ । ମୋତେ ଉପରେ ଏପରି ଭାବଭଙ୍ଗୀ ପ୍ରଦର୍ଶନ କରିବ ଯେପରି ନାୟକ ବୁଝେ, ଏ ମୋ'ର ପରମ ହିତାକାଂକ୍ଷିଣୀ । ସେ ଚୁମ୍ବନ ଓ ଆଲିଙ୍ଗନ ଇତ୍ୟାଦି କଲେ ତୁମ୍ଭେ ମଧ୍ୟ ପ୍ରତିଦାନ ସ୍ୱରୂପ ଚୁମ୍ବନ ଆଲିଙ୍ଗନ ନାୟକଙ୍କୁ କରିବ । ଏହା ଦ୍ୱାରା ନାୟକର ଅନୁରକ୍ତି ଅଧିକ ବଢ଼ି ଯାଏ ।

ନାୟକ ଯେତେବେଳେ ଅନ୍ୟମନସ୍କ ହୋଇ କିଛି ଦର୍ଶନ କରିବ ସେ ସମୟରେ ନାୟକଙ୍କୁ ତୁମ୍ଭେ ଏକ ଦୃଷ୍ଟିରେ ଚାହିଁ ରହିବ, ଯେତେବେଳେ ସେ ଉତ୍କଣ୍ଠାରେ ଓ ଉଦ୍‌ବେଗରେ ରାସ୍ତାରେ ଯାଉଥିବ, ତୁମ୍ଭେ କୋଠାଉପରେ କିମ୍ବା ସଦର ଦରଜାରେ ଠିଆ ହୋଇ ନାୟକଙ୍କୁ ଦର୍ଶନ କରିବ । ତୁମ୍ଭେ ତା'ଙ୍କୁ ଦର୍ଶନ କରୁଛ ଏକଥା ନାୟକ ରାସ୍ତା ଉପରୁ ଦେଖି ପାରିଲେ ତାଙ୍କୁ ଲଜ୍ଜା ବୋଧ-ହେବ । ସେ ଯାହାକୁ ହିଂସା କରେ ତୁମ୍ଭେ ତାହା ପ୍ରତି ହିଂସା କରିବ ଏବଂ ତାହାର ଯେଉଁଟି ପ୍ରିୟ ତୁମ୍ଭେ ତା'ଙ୍କୁ ପ୍ରେମ କରିବ । ତାହା ପକ୍ଷରେ ଯେଉଁଟି ସୁନ୍ଦର ସେଥି ପ୍ରତି ଅନୁରାଗ ପ୍ରକାଶିତ କରିବ । ସେ ହସିଲେ କିମ୍ବା କାନ୍ଦିଲେ ତୁମ୍ଭେ ମଧ୍ୟ ହସ ଏବଂ ଶୋକ ପ୍ରକାଶ କରିବ । ଅନ୍ୟ ସ୍ତ୍ରୀ ପ୍ରତି ସେ ଅସକ୍ତ କି ନା ତା ଜାଣିବା ନିମିତ୍ତ ଗୁପ୍ତଚରାଦି ଦ୍ୱାରା ଅନୁସନ୍ଧାନ କରିବ । ଏଥିପାଇଁ ରାଗ କରିବ କିନ୍ତୁ ତାହା ଯେପରି ଦୀର୍ଘକାଳ ସ୍ଥାୟୀ ନ ହୁଏ । ନିଜେ ନାୟକ ଅଙ୍ଗରେ ନଖ ଦଶନ-ଚିହ୍ନ ଅଙ୍କିଦେଇ, ଅନ୍ୟ ସ୍ତ୍ରୀ କରିଅଛି ବୋଲି ଆଶଙ୍କା ପ୍ରକାଶ କରିବ । ନାୟିକା ଯେ ନାୟକର ପ୍ରତି ବିଶେଷ ଅନୁରାଗ କରିଥାଏ ଏହା କଥାରେ ପ୍ରକାଶ କରିବ ନାହିଁ; କିନ୍ତୁ ତାହା ଆକାର ପ୍ରକାରରେହିଁ ଦେଖାଇବ—ଅର୍ଥାତ୍— 'ମୁଁ ତୁମକୁ ଘଡ଼ିଏ ନ ଦେଖିଲେ ଚଳିପାରୁ ନାହିଁ । ଏଣୁ ତୁମ୍ଭେ ମୋ ପାଖକୁ ବରାବର

ଅଥ, "ଏ କଥା କେବେହେଁ କହିବ ନାହିଁ । କିନ୍ତୁ ଏପରି ବ୍ୟବହାର ଦେଖାଇବ ଯେପରି ତୁମ୍ଭେ ସେ ନାୟକ ପାଇଁ ବଡ଼ କାମାତୁର ହୋଇ ପଡ଼ିଛ । ରୋଗର ଛଳନା ଦେଖାଇ ନାୟକର ପ୍ରୀତି ଅର୍ଜନ କରିବାକୁ ହେବ । ନାୟକ ଆସିଲେ କହିବ "କାଲି ରାତିରେ ସ୍ୱପ୍ନରେ ତୁମ ସଙ୍ଗେ ସହବାସ କରୁ କରୁ ହଠାତ୍ ନିଦ ଭାଙ୍ଗିଗଲା । ସେହି ସମୟଠାରୁ ମୋ'ର ମୁଣ୍ଡବିନ୍ଧା ଶରୀର ବଡ଼ ଅସୁସ୍ଥ ବୋଧ ହେଉଛି ।"

ନାୟକ ଯଦି କୌଣସି ଦେବତା, ପୁଷ୍କରିଣୀ, ବିଦ୍ୟାଳୟ, ସ୍ନାନଘାଟ, ବା ମଣ୍ଡପ, ମନ୍ଦିର ସ୍ଥାପନ କରିଥାଏ ତେବେ ସେ ସବୁର ଗୁଣଗାନ କରି ନାୟକର ପ୍ରଶଂସା କରିବ । ମଝିରେ ମଝିରେ ସାମାନ୍ୟ ଅବଜ୍ଞା ବି ପ୍ରକାଶ କରୁଥିବ । ନାୟକର ଯେ ବିଷୟରେ ରୁଚି ସେହି ବିଷୟ ଅନୁଷ୍ଠାନ କରିବ । କଥାବାର୍ତ୍ତା ସମୟରେ ନାୟକ ଯଦି ଅନ୍ୟ ସ୍ତ୍ରୀ କିମ୍ବା ଅନ୍ୟ ବେଶ୍ୟା କଥା ପକାଏ ସେକଥା ଚୁପ୍‌ଚାପ୍ ଶୁଣିବ କି କୌଣସି ପ୍ରକାର ଈର୍ଷା ବା କ୍ରୋଧ ପ୍ରକାଶ କରିବ ନାହିଁ । ତା'ର ଦୀର୍ଘଶ୍ୱାସ ଉଠିଲେ, କୌଣସି କଥା ଭୁଲି-ଗଲେ, ହାଇ ଉଠିଲେ, କିମ୍ବା ଝୁଣ୍ଟିପଡ଼ିଲେ ନାୟକ ପ୍ରତି ବେଶ୍ୟା ଆନ୍ତରିକ ସହାନୁଭୂତି ଦେଖାଇବ । ନାୟକର ଛିଙ୍କ ଆସିଲେ ବେଶ୍ୟା ସେଠି ବିସ୍ମୟ ପ୍ରକାଶ କରି "ଅଜରାମର ହୋଇଥାଅ" କହି ତା'ର ଦୀର୍ଘାୟୁ କାମନା କରିବ । ତା'ର କୌଣସି ଆତ୍ମୀୟ ସ୍ୱଜନର କିଛି ଅନିଷ୍ଟ ଶୁଣିକରି ବେଶ୍ୟା ଦୁଃଖ ପ୍ରକାଶ କରିବ । ନାୟକ ଯେତେ ପଚାରିଲେ ସୁଦ୍ଧା ଦୁଃଖର ବାସ୍ତବିକ କାରଣ ନ କହି ରୋଗବ୍ୟାଧି ଆଦିର ବାହାନା କରିବ । ବେଶ୍ୟାର ଉଚିତ ହେଉଛି ନାୟକର ସମ୍ମୁଖରେ ଅନ୍ୟ ପୁରୁଷର ଗୁଣ ଚର୍ଚ୍ଚା କରିବ ନାହିଁ । କାରଣ ଅନ୍ୟ ପୁରୁଷର ଆସକ୍ତା ବୋଲି ନାୟକ ସନ୍ଦେହ କରେ । ନିଜ ନାୟକ-



ପାରେ ଯଦି କିଛି ଦୋଷ ବା ଅବଗୁଣ ଥାଏ, ସେହି ଦୋଷ ବା ଅବଗୁଣ ପାଇଁ ନାୟକ ସମ୍ମୁଖରେ ଅନ୍ୟ ପୁରୁଷକୁ ମଧ୍ୟ ନିନ୍ଦାକରିବ ନାହିଁ, କାରଣ ତଦ୍ୱାରା ନାୟକ ବୁଝିବ ଯେ ଅନ୍ୟ ପୁରୁଷ ଛଳନାରେ ଏ ବେଶ୍ୟା ମୋତେ ହିଁ ନିନ୍ଦା କରୁଛି । ତା'ର ଯଦି କୌଣସି ଆତ୍ମୀୟ ସ୍ୱଜନର ମୃତ୍ୟୁଘଟେ ତେବେ ଏ ସମୟରେ ବେଶ୍ୟା ଅଳଙ୍କାରାଦି ଶୃଙ୍ଗାର ତ୍ୟାଗ କରିବ । ନାୟକର କିଛି ବିପଦ ଆପଦ ପଡ଼ିଲେ ଉପଚାରାଦି କରି ସହାନୁଭୂତି ଦେଖାଇବ । ଏହା ଦ୍ୱାରା ଉଭୟଙ୍କ ମଧ୍ୟରେ ଆତ୍ମୀୟତା ବଢ଼ି ଯାଏ । ନାୟକ ଉପରେ କୌଣସି ବିପତ୍ତି ପଡ଼ିଲେ କିମ୍ବା କୌଣସି ପ୍ରକାର ମାଲି ମୋକଦ୍ଦମାରେ ଜଡ଼ିତ ହେଲେ ତାହାର ମୁକ୍ତି ପାଇଁ ଦେବାଦେବୀଙ୍କ ନିକଟରେ ପୂଜାଦି ମନାସିବ ।"ମୋ'ର ଧନଥିଲେ ଖର୍ଚ୍ଚକରି ଉଦ୍ଧାର କରନ୍ତି" ବୋଲି କହି ଉତ୍କଣ୍ଠା ଭାବ ଦେଖାଇବ । ନାୟକର ବିପଦ ଘୁଞ୍ଚି ଗଲେ ମନାସିଥିବା ପୂଜାଆଦି ନିଜ ଖର୍ଚ୍ଚରେ କରି ପକାଇବ । ଏହା ଦ୍ୱାରା ନାୟକ ତୁଷ୍ଟହୋଇ ସମସ୍ତ ଖର୍ଚ୍ଚ ବହନକରେ । ନାୟକ ଯଦି ଖଟଉପରେ ବସିବହେ ବେଶ୍ୟା ତା କୋଳରେ ଶୋଇ ପଡ଼ି ତା'ର ଗଳାରେ ହସ୍ତ ଜଡ଼ିତ କରିବ । ସେ ଯଦି ଦେବ ଦର୍ଶନ ଆଦିକୁ ଯାଏ ବେଶ୍ୟା ମଧ୍ୟ ତା ପଛେ ପଛେ ଦେବ ଦର୍ଶନକୁ ଯିବ । ନାୟକ ଆଗେ ନିଜର ପୁତ୍ର କାମନା କରିବ । ଯଦି କୌଣସି ବିଷୟ ନେଇ ନାୟକ ସହିତ ମତଭେଦ କିମ୍ବା ବିବାଦ ହୋଇ ଯାଏ ତେବେ ବେଶ୍ୟା ସେ ଦୋଷସବୁ ନିଜ ଉପରେ ପକାଇ କହିବ, "ମୋର ବିବାଦ କରିବାକୁ ବଳନାହିଁ ।" ନାୟକର ଖାଇବା ପିଇବା ଓ ଆରାମ ତ ବେଶ୍ୟା ତୀକ୍ଷ୍ଣ ଦୃଷ୍ଟି ରଖିବ । ନାୟକର ରୂପ, ଗୁଣକୁ ପ୍ରଶଂସା କରିବା ଉଚିତ । ତା'ର ମନରଞ୍ଜନାର୍ଥେ





'ଦୂର୍ବଳବାରେ ମୁଁ ଯେପରି ତୁମ୍ଭକୁ ପତି କରି ପାଏ" ଏ କଥା ପ୍ରକାଶ କରିବ । ଯେପରି ବେଶଭୂଷାହେଲେ ନାୟକର ରୁଚି ଉପଯୁକ୍ତ ହେବ ସେହିପରି ବେଶଭୂଷା ହେବ । ତାକୁ ବଶୀଭୂତ କରିବାକୁ କୌଣସି ପ୍ରକାର ଯାଦୁ ବା ବଶୀକରଣ ଆଦି ନିଜେ କରିବ ନାହିଁ କିମ୍ବା ଅନ୍ୟ ଦ୍ୱାରା କରାଇବ ନାହିଁ । ଏହା ଦ୍ୱାରା ନାୟକ ସଶଙ୍କିତ ହୋଇ କିଛି ଦିନ ମଧ୍ୟରେ ବିରକ୍ତ ହୋଇଯାଏ । ଯଦି ବେଶ୍ୟାର ମାଆ ସେହି ବେଶ୍ୟାକୁ ନାୟକ ନିକଟରୁ ଅନ୍ତର କରି ଅନ୍ୟ କୌଣସି ନାୟକକୁ ସୁହାଇବାକୁ ଚେଷ୍ଟାକରେ, ତେବେ ବେଶ୍ୟା ନାୟକ ବିୟୋଗରେ ଉପାସ କରିବା, ବିଷଖାଇ ମରିବା, ଦୌଡ଼ିଦେବା ଇତ୍ୟାଦି ଛଳନା ପୂର୍ଣ୍ଣ ଢଙ୍ଗଦେଖାଇଲେ ନାୟକର ବିଶେଷ ଆସକ୍ତି ଜନ୍ମେ । ନାୟକ ପାଖକୁ କୌଣସି ଦାସୀ ଦ୍ୱାରା କହି ପଠାଇବ "ମୋ ମାଆ ମୋତେ ଅନ୍ୟ ପୁରୁଷ ସଂସର୍ଗ କରିବାକୁ ବାଧ କରୁଛି, କିନ୍ତୁ ମୁଁ ଅନ୍ୟ ପୁରୁଷର ଛାଇ ସୁଦ୍ଧା ମାଡ଼ିବାକୁ ଇଚ୍ଛା କରେନା" ଏହା ଦ୍ୱାରା ନାୟକଠାରୁ ଅଧିକ ଧନ ମିଳେ । ନାୟକ ବିଦେଶ ଯାଉଥିଲେ ଶୀଘ୍ର ଫେରି ଆସିବାକୁ ଶପଥ ନିଅନ୍ତି କରାଇବ । ନାୟକ ବିଦେଶରୁ ଫେରି ଆସିଲେ ଦେବାଦେବୀ ପୂଜା ଆଦି କରି ଅତି ଆତ୍ମୀୟତା ଦେଖାଇବାକୁ ହେବ ।



## ଆସକ୍ତ ପୁରୁଷର ଲକ୍ଷଣ

ଯେ ଲୋକ ସବୁ ପ୍ରକାରେ ବିଶ୍ୱସ୍ତ, ପ୍ରବୃତ୍ତି ଓ ନିବୃତ୍ତିରେ ଯେ ସମାନ ଭାବାପନ୍ନ, ଯେ ବେଶ୍ୟାର ପ୍ରୟୋଜନ ଜାଣିବା ମାତ୍ରେ ତତ୍‌କ୍ଷଣାତ୍ ତାହା ପୂରଣ କରେ ଏବଂ ସର୍ବଦା ତାହା କଥାରେ



ବଶୀଭୂତ ଥାଏ । ଏପରି କି ନିଜର ଧନ ଓ ପରିବାରକୁ ଉପେକ୍ଷା କରିପାରେ । ଏହିପରି ପୁରୁଷ ପାଇଲେ ତାହା ପ୍ରତି ଉଚିତ ବ୍ୟବହାର କରି ଧନ, ମାନ, ଯଶ ସବୁ ଆଦାୟ କରିଯାଇ ପାରେ ।



## ବେଶ୍ୟାର ପ୍ରକୃତ ରୂପ

ବେଶ୍ୟାର ମନୋବୃତ୍ତି ଅତ୍ୟନ୍ତ ସ୍ୱଚ୍ଛ । ଏହାର ସ୍ନେହ ସ୍ୱାଭାବିକ କି କୃତ୍ରିମ ଜାଣିବା କଠିନ । ସେ ଅତ୍ୟନ୍ତ ଲୋଭୀ । ତା'ର ଅନୁରାଗ ଓ ହାବ ଭାବରୁ ମନୋବୃତ୍ତିର ପରିଚୟ ପାଇବା କଷ୍ଟକର । ବେଶ୍ୟା ପୁରୁଷକୁ ଯେତେ ସ୍ନେହ ଦେଖାଇଲେ ବି ସେଥିରେ ଶତକଡ଼ା ନବେ ଭାଗ କୃତ୍ରିମତା ଥାଏ ଜଣେ ନାଗରକୁ ସ୍ନେହ ଦେଖାଇ ଅର୍ଥ ଶୋଷଣ ପରେ ଅନ୍ୟ ନାଗର ଖୋଜିବୁଲେ । ପୁରୁଷ ଏହା ଜାଣି ସୁଦ୍ଧା ଜାଣିପାରେ ନାହିଁ । ଏଣୁ ପ୍ରତ୍ୟେକ ପୁରୁଷ ବେଶ୍ୟାର ଏ କପଟ ଅନୁରାଗ ପ୍ରତି ସାବଧାନ ରହିବା ଉଚିତ ।



## ବେଶ୍ୟାର ଧନପ୍ରାପ୍ତି କୌଶଳ

ବେଶ୍ୟାସକ୍ତ ପୁରୁଷଠାରୁ ଦୁଇ ପ୍ରକାରରେ ଧନ ମିଳେ । ୧-ସ୍ୱାଭାବିକ ରୀତିରେ, ୨-ଅସ୍ୱାଭାବିକ ରୀତିରେ । ଯଦି ସ୍ୱାଭାବିକ ଉପାୟରେ ନାଗରଠାରୁ ଧନ ମିଳୁଥାଏ ସେଠି ଆଉ ଅସ୍ୱାଭାବିକ ଉପାୟରେ ଧନ ଗ୍ରହଣ କରିବା ପାଇଁ ନାଗର ଉପରେ ଗୁପଦେବା ଉଚିତ ନୁହେଁ । କାରଣ ତା ଦ୍ୱାରା ଅର୍ଥଲୋଲୁପତା ପ୍ରକାଶ ପାଏ । ଯେଉଁ ଯେଉଁ ଉପାୟରେ ଧନ ସଂଗ୍ରହ କରାଯାଏ ତାହା ନିମ୍ନରେ ଦିଆଗଲା, ଯଥା—"ଅଲଙ୍କାର ମିଷ୍ଟାନ୍ନ ଅନ୍ନ,ଅନ୍ନ,ସୁଗନ୍ଧ,ପୁଷ୍ପମାଳା





ବସ୍ତ୍ର, କୁଙ୍କୁମ, ଚନ୍ଦନ, ତାମ୍ବୁଲ, ତୈଳ ଓ ଅତରାଦିର ମୂଲ୍ୟ, ଦୋକାନଦାରର ବାକି ପଡ଼ିଅଛି” ଏକଥା ନାୟକଙ୍କୁ ଶୁଣାଇ କହିବ ଏବଂ ନାୟକର ଅତୁଳ ଧନର ପ୍ରଶଂସା କରିବ । ବ୍ରତ ଉପବାସ, ତୀର୍ଥଯାତ୍ରା, ଧର୍ମ, ବାନ୍ଧବ ଆଗମନ ଓ ଭୋଜି ଆଦି ସକାଶେ ଧନର ଆବଶ୍ୟକ, ଏହାର ବାହାନା କରିବ । “ତୁମ୍ଭ ପାଖକୁ ଆସିବା ସମୟରେ ଗୁଣ୍ଡା କମ୍ବା ଚୋରର ହାତରେ ପଡ଼ି ଅଳଙ୍କାରତକ ହରାଇଲି, ଏଣୁ ନୂଆ ଅଳଙ୍କାର ଆବଶ୍ୟକ ।” “ଧାର କରିକରିଥିବାରୁ ଆଜି ମାଆ ସହିତ ଭାରି ଝଗଡ଼ା ହୋଇଛି ତେଣୁ ମୋ ମନ ଖରାପ” ଏ କଥା ନାଗରକୁ ଶୁଣାଇବ । ରୋଗ, ବୈଦ୍ୟ ଓ ଘର ମରାମତି ବା ସଫାଇର ବାହାନା କରି ନାୟକଠାରୁ ଧନ ସଂଗ୍ରହ କରିବ । କୌଣସି ଅଳଙ୍କାର ବିକ୍ରେତା ବା ବସ୍ତ୍ର ଓ ବାସନ ବିକ୍ରେତାକୁ ନାୟକର ସମ୍ମୁଖରେ ଡାକି ଜିନିଷର ଦରଦସ୍ତୁର କରିକି କହିବ “ଜିନିଷଟା ମୋ'ର ନିତାନ୍ତ ଦରକାର କିନ୍ତୁ ପଇସା ଅଭାବରୁ ନେଇ ପାରୁ ନାହିଁ” । ଦୂତୀ ଦ୍ୱାରା, ‘ଅନ୍ୟ ବେଶ୍ୟାର ବହୁ ରୋଜଗାର ହୁଏ’ ଏ କଥା ନାୟକଙ୍କୁ ଶୁଣାଇବ । ପିଲାଙ୍କ ଭଳି ଅଳଦାର କରି କହିବ “ମୋତେ ଏ ଜିନିଷଟା ଯଦି ନଦେବ ତେବେ ମୁଁ ତୁମ୍ଭ ପାଖକୁ ଆସିବି ନାହିଁ ।” ଏସବୁ ହେଉଛି ଧନ ପ୍ରାପ୍ତିର କୌଶଳ ।

---

## ବିରକ୍ତ ପୁରୁଷର ଲକ୍ଷଣ

ଯେଉଁ ନାୟକ ବିରକ୍ତ ହୋଇଯାଏ ତାହାଠାରୁ ଧନ ଗ୍ରହଣ କରିବାର ଉପାୟ ଓ ସେ ପ୍ରକୃତ ବିରକ୍ତ ହୋଇଛି କି ନା ତାହା



ନିମ୍ନଲିଖିତ ବିଷୟରୁ ଜାଣି ପାରିବ । ଯଥା—ଯାହା ଦେବା କହିଛ, ସେଥିରୁ କମ୍ କିମ୍ବା ଅତିରିକ୍ତ ଦିଏ । ବେଶ୍ୟାର ବିପକ୍ଷମାନଙ୍କ ସହିତ ପ୍ରୀତି କରେ । ଗୋଟିଏ ବିଷୟର ଛଳରେ ଅନ୍ୟ ଗୋଟିଏ ବିଷୟରେ ଅନୁଷ୍ଠାନ କରେ । ପ୍ରତିଦିନ ଯାହା ଦେବାର କଥା ତା ଦିଏ ନାହିଁ । ବେଶ୍ୟା କୌଣସି କଥା ମାଗିଲେ ତାହା ଭୁଲିଯାଏ ଅଥବା କହେ "ମୁଁ ତ ଏହା ଦେବାକୁ କହି ନ ଥିଲି" । ଅନ୍ୟ ନାୟିକା ପାଖରେ ଯାଇ ଶୟନ କରେ । ପୂର୍ବ ପରିଚିତ ବେଶ୍ୟାର ସହଚରୀ ସହିତ ଏକାନ୍ତରେ ସେହି ବେଶ୍ୟାର ଗୁପ୍ତକଥା ସବୁ କହେ । ଏହି ସବୁ ହେଉଛି ବିରକ୍ତ ପୁରୁଷର ଲକ୍ଷଣ । ଏ ଭଳି ପୁରୁଷକୁ ବିଦାୟ କରିବାକୁ ହେଲେ ନିମ୍ନୋକ୍ତ ଉପାୟ ଅବଲମ୍ବନୀୟ । ଯଥ—ନାୟକ ଯେ ତୁମ୍ଭ ଉପରେ ବିରକ୍ତ, ତୁମ୍ଭେ ଏ କଥା ଜାଣିଛ ବୋଲି ଯେପରି ସେ ଜାଣି ନପାରେ । ତତ୍ପରେ ନାୟକର ଉତ୍ତମ ଓ ମୂଲ୍ୟବାନ ବସ୍ତୁ କିଛି ଛଳେ ବଳେ କୌଶଳରେ ଅଧିକାର କରିବ । ଅନ୍ୟ ବେଶ୍ୟାଠାରୁ ଋଣ କରିବାର ବାହାନାରେ ସେହି ବସ୍ତୁକୁ ନିଜ ଅଧିକାରରେ ରଖିବ । ଏଥିରେ ମନାନ୍ତର ହେଲେ ମାଲି ମକଦ୍ଦମାର ଆଶ୍ରୟ ନେବ । ଏହା ଦ୍ୱାରା କେହି କେହି ନାୟକ ଭୟରେ ଅସକ୍ତ ହୁଅନ୍ତି ବା ଦୂର ହୋଇ ଯାନ୍ତି । ଯଦି ସେ ନିଃସ୍ୱ ହୋଇ ମଧ୍ୟ ଆସକ୍ତି ପ୍ରକାଶ କରେ କିନ୍ତୁ ଅର୍ଥଲାଭ ଆଶା ନ ଥାଏ, ତେବେ ଅନ୍ୟ ନାୟକର ଆଶ୍ରୟ ନେଇ ତାକୁ ଦୂର କରିଦେବ ।







## ଆସକ୍ତ ପୁରୁଷଙ୍କୁ ଅନ୍ତର କରିବା କୌଶଳ

ନାଗରକୁ ଅନ୍ତର କରିବାକୁ ଦୁଇପ୍ରକାର ଉପାୟ ଅବଲମ୍ବନ କରାଯାଇ ପାରେ । ଯଥା—ପ୍ରକାଶ୍ୟଭାବେ ଓ ଗୁପ୍ତଭାବେ । ନାୟକ ଯାହାକୁ ଭଲ ପାଆନ୍ତି ନାହିଁ, ଯେ ନାୟକର ଶତ୍ରୁ, ବେଶ୍ୟା ସେହି ପୁରୁଷର ସେବା କରିବ । ସେ ଯାହାକୁ ନିନ୍ଦାକରେ ଏ ତାକୁ ପ୍ରଶଂସା କରିବ । ନାୟକକୁ ଦେଖି ଶ୍ରେଷ୍ଠ ଶବ୍ଦ ସ୍ୱରୂପ ଓଠ କାମୁଡ଼ିବ ଓ ଭୂମିରେ ପଦାଘାତ କରିବ । ସେ ଯେଉଁ ସବୁର ବିନ୍ଦୁବିସର୍ଗ ଜାଣେନା, ସେହିପରି ଲଜ୍ଜାକର ବିଷୟ ଅବଲମ୍ବନ କରି ଲୋକ ମଧ୍ୟରେ ପ୍ରଚାର କରିବ । ଯାହା ସେ ଜାଣେ, ସେଥିରେ ବିସ୍ମୟ ପ୍ରକାଶ ନ କରି କୁତ୍ସା ରଟନା କରିବାକୁ ଚେଷ୍ଟା କରିବ । ଅନ୍ୟ ଦ୍ୱାରା ତାହାର ଅନିଷ୍ଟ କରିବାକୁ ଚେଷ୍ଟା କରିବ । ତାକୁ ଅପେକ୍ଷା ନ କରି ଅନ୍ୟ ପୁରୁଷ ସହିତ ସଙ୍ଗମ କରିବ, ଏକଥା ଯେପରି ସେ ଜାଣିବାକୁ ପାଏ । ସେ ସାମାନ୍ୟ ଦୋଷକଲେ ମଧ୍ୟ ଗୁରୁତର ଭାବେ ନିନ୍ଦା କରିବ । ଯଦି ସେ ଅନୁନୟ କରି ରତି-କାର୍ଯ୍ୟରେ ବ୍ୟାପୃତ ହୋଇ ମଦ୍ୟ ବା ତାମ୍ବୁଲାଦି ଖାଇବାକୁ ଦିଏ ତାହା ଗ୍ରହଣ କରିବ ନାହିଁ । ଚୁମ୍ବନ କରିବାକୁ ଉଦ୍ୟତ ହେଲେ ମୁଖ ଦେଖାଇବ ନାହିଁ । ଜଘନ ଦେଶ ଛୁଇଁବାକୁ ଦେବ ନାହିଁ । ନଖଦଶନ-କ୍ଷତ ସହ୍ୟ ନ କରି ବିରକ୍ତ ହେବ । ଆଲିଙ୍ଗନ କରିବାକୁ ଉଦ୍ୟତ ହେଲେ ହାତରେ ପିନ୍ଧିଥିବା କଙ୍କଣାଦି ଦ୍ୱାରା ବ୍ୟବଧାନ ସୃଷ୍ଟି କରିବ । ଯେବେ ସେ ତୃପ୍ତିକୁ ଅର୍ଜ୍ଜନ କରି ନପାରେ । ବଳାତ୍କାରରେ ସହବାସ କରିବାକୁ ଚେଷ୍ଟାକଲେ ଅଙ୍ଗପ୍ରତ୍ୟଙ୍ଗ ଦ୍ୱାରା ଏପରି ବାଧା ସୃଷ୍ଟି କରିବ ଯେପରି ସେ କୃତକାର୍ଯ୍ୟ ହୋଇ



ନ ପାରେ । ଅତିରିକ୍ତ ନିଦ୍ରାର ଭାବ ଦେଖାଇ ଯେତେବେଳେ ଦେଖିବ ଯେ, ସେ ଅତ୍ୟନ୍ତ ଶ୍ରାନ୍ତ ହୋଇ ପଡ଼ିଛି, ସେତେବେଳେ ତାକୁ ଯୌନ ଯୋଗ ପାଇଁ ଆହ୍ୱାନ କରିବ । ଏହା ଦ୍ୱାରା ଅଧିକାଂଶ ପୁରୁଷର ରେତ ସ୍ଖଳିତ ପ୍ରାପ୍ତ ହୋଇ ଯାଇଥାଏ । ଏଣୁ ସେମାନେ ପୂର୍ଣ୍ଣ ସହବାସ କରିବାକୁ ସକ୍ଷମ ହୋଇ ପାରନ୍ତି ନାହିଁ । ଏହି ଅସମର୍ଥତା ଯୋଗୁ ସେମାନଙ୍କୁ ଉପହାସରେ ଉଡ଼ାଇ ଦେବ । ଯଦିବା କେହି ସମର୍ଥ ପୁରୁଷ ସେ ସମୟରେ ପ୍ରଚଣ୍ଡ ରତି କରେ ସେପରି ସ୍ଥଳେ ତାହାକୁ ଅଭିନନ୍ଦନ କରିବ ନାହିଁ । ଦିନ ବେଳା ନାୟକ ରତି କରିବାକୁ ଆକର୍ଷଣ କଲେ କେଳି ମନ୍ଦିରରୁ ବାହାରି ଯାଇଁ ଅନ୍ୟ ଧନୀ ନାୟକ ସହିତ ସହବାସରେ ମାତିବ । ଯେତେବେଳେ ନାୟକ ବେଶ୍ୟାଗୃହକୁ ଆସିବ, ସେତେବେଳେ ବେଶ୍ୟା ତାକୁ ଦେଖା ଦେବ ନାହିଁ । ଯଦି ଦେଖା ଦେବ ଏପରି ଜିନିଷ ମାଗିବ ଯେ, ଯାହା ସେ ଆଦୌ ପୂରଣ କରି ପାରିବ ନାହିଁ । ଏହି ସବୁ ଉପାୟ ଅବଲମ୍ବନ କଲେ ବେଶ୍ୟା ନିର୍ଦ୍ଧନ ନାୟକମାନଙ୍କୁ ଦୂରକରି ଅନ୍ୟ ଧନୀ ନାୟକର ଆଶ୍ରୟ ନିଏ ।



## ପୂର୍ବପରିଚିତ ନାୟକ ସହିତ ପୁନର୍ମିଳନର ଉପାୟ

ବର୍ତ୍ତମାନ ଯାହାର ଧନ ଶୋଷଣ ହୋଇ ସାରିଛି, ତାହାକୁ ପରିତ୍ୟାଗ କରି ପୂର୍ବ ପରିଚିତ କୌଣସି ଧନବାନ ନାୟକର ଅନୁସନ୍ଧାନ କରିବ । ସେ ଯଦି କୌଣସି ବେଶ୍ୟା ପାଖକୁ ଯାଉଥାଏ ତା'ର ସନ୍ଧାନ ନେବ । ଏହି ବିଶୀର୍ଣ୍ଣ-ନାୟକ ୬ପ୍ରକାର ତାହା ନିମ୍ନରେ ପ୍ରଦତ୍ତ ହେଲା । ଯଥା—





୧—ଏଠାରୁ ଯେ ନିଜେ ଚାଲି ଯାଇଛି ଏବଂ ସେଠାରୁ ମଧ୍ୟ ସ୍ୱୟଂ ଅପସରି ଆସିଛି ।

୨—ଏଠୁ ଓ ସେଠ ଉଭୟ ସ୍ଥାନରୁ ବିତାଡ଼ିତ ହୋଇଅଛି ।

୩—ଏଠୁ ନିଜ ସ୍ୱୟଂ ଚାଲିଯାଇଛି; କିନ୍ତୁ ସେଠୁ ବିତାଡ଼ିତ ହୋଇ ଯାଇଛି ।

୪—ଏଠୁ ସ୍ୱୟଂ ଅପସରି ଯାଇଛି, କିନ୍ତୁ ସେଠି ଅବସ୍ଥାନ କରିଅଛି ।

୫—ଏଠୁ ବିତାଡ଼ିତ ହୋଇ ଅପସରି ରହିଛି, କିନ୍ତୁ ସେଠୁ ନିଜ ଇଚ୍ଛାରେ ଅପସରି ରହିଛି ।

୬—ଏଠୁ ବିତାଡ଼ିତ ହୋଇ ଅପସରି ରହିଛି; କିନ୍ତୁ ସେଠାରେ ଅବସ୍ଥାନ କରିଅଛି ।

ଏମାନଙ୍କ ଭିତରେ କିଏ ବିଶ୍ୱାସଯୋଗ୍ୟ ଓ କିଏ ବିଶ୍ୱାସ ଯୋଗ୍ୟ ନୁହେଁ ତାହାର ବିଚାର କରାଯାଉ ଅଛି । ଉପରୋକ୍ତ ନଂ୧ ମ୍ବର ନାୟକ ଯଦି କୌଣସି ଭଡୁଆ ବା ପାଖଲୋକ ଦ୍ୱାରା ପୁଣି ପ୍ରବେଶ କରିବାକୁ ଚେଷ୍ଟାକରେ ଓ ଉଭୟ ବେଶ୍ୟାର ଗୁଣ ଅବଗୁଣରେ ଅପେକ୍ଷା ନ କରେ ତେବେ ସେ ଚଞ୍ଚଳ-ବୁଦ୍ଧି-ନାୟକ ପୁନର୍ଗ୍ରହଣର ଯୋଗ୍ୟ ନୁହେଁ ।

ନଂମ୍ବର ନାୟକ, ସେ ଯଦି ଅନ୍ୟ ବହୁ ଲାଭକାରିଣୀ ନାୟିକା ଦ୍ୱାରା ନିଷ୍କାସିତ ହୋଇଥାଏ ଏବଂ ସେହି ନାୟିକା ପ୍ରତି ତାହାର ରୋଷ ଉତ୍ପାଦନ କରାଇ ତାହା ପ୍ରତି ବିରାଗ ଜନ୍ମାଇ ଦେଲେ "ମୋ ପକ୍ଷେ ମଙ୍ଗଳ ହେବ" ଏପରି ବୁଝାଗଲେ ସେ ନାୟକ ଗ୍ରହଣ ଯୋଗ୍ୟ ।



ନବମ୍ବର ନାୟିକ ଯଦି ପୂର୍ବାପେକ୍ଷା ଅଧିକ ଧନ ଦାନ କରେ ତେବେ ସେ ଗ୍ରହଣଯୋଗ୍ୟ । କିନ୍ତୁ ଯଦି ସେ ଧନୀ ହୋଇ ଙ୍କର ମଧ୍ୟ ଅନୁଦାର ଓ କୃପଣ, ତେବେ ତାହାଙ୍କୁ ତ୍ୟାଗ କରିବା ଉଚିତ ।

୪ର୍ଥ ନମ୍ବର ନାୟିକ ଯଦି ପୁନଃପ୍ରବେଶ କରିବାକୁ ଚାହିଁ ପଠାଏ ତେବେ ତାହା ଠିକ୍ କି ନା ନିର୍ଣ୍ଣୟ କରିବାକୁ ହେବ । ଯଥା—ବେଶୀ ସୁନ୍ଦରୀ ବା ଗୁଣବତୀ ଦେଖି ମୋ ପାଖରୁ ଚାଲି ଯାଇଥିଲି, କିନ୍ତୁ ସେଠାରେ ସେପରି ଗୁଣ ବା ସୌନ୍ଦର୍ଯ୍ୟ ଅନୁଭବ ନ କରି ପୁଣି ଫେରି ଆସିବାକୁ ଚାହୁଁଅଛି । "ପୁନର୍ବାର ଫେରି ଆସିବା ଦ୍ୱାରା ମୋ'ର ଅଧିକ ଅର୍ଥଲାଭ ହେବ" ଏପରି ବିଶ୍ୱାସ ହେଲେ ସେ ଗ୍ରହଣ ଯୋଗ୍ୟ ।

୫ମ ନମ୍ବର ନାୟିକ ଚାହିଁ ଦ୍ୱାରା ବିଶ୍ୱାସଯୋଗ୍ୟହେବାକୁଚେଷ୍ଟା କରୁଅଛି ବୋଲି ଯଦି ଜଣାଯାଏ, ତେବେ ସେ ନାୟିକ ତର୍କଣୀୟ । ପୁଣି ଏପରି ଅବସ୍ଥାରେ ସେ ଯଦି ଅନୁରାଗ ବଶତଃ ଆସିବାକୁ ଚାହେଁ ତେବେ ସେ ନିଷ୍ପ୍ରବେଶୀ ଦାନ କରିବ । ଅଜ୍ ମଧ୍ୟ ଯେଉଁ ନାୟିକ ମୋ'ର ଗୁଣର ପକ୍ଷପାତ ହୋଇ ଅନ୍ୟ ନାୟିକାର ଚରିତ୍ରଲାଭ କରି-ପାରେ ନାହିଁ, ସେ ମଧ୍ୟ ନିଶ୍ଚୟ ବିଶ୍ୱାସ ଯୋଗ୍ୟ । "ପୂର୍ବେ ମୁଁ ଯାହାକୁ ଅନ୍ୟାୟ ପୂର୍ବକ ବାହାର କରି ଦେଇଛି, ସେ ପୁଣି ମୋ ନିକଟକୁ ଆସି ବୈର ନିର୍ଯ୍ୟାତନ କରିବାକୁ ଇଚ୍ଛା କରୁଅଛି । ଅଥବା ମୁଁ ଅଭିଯୋଗ କରି ତାହାର ଧନ ଅପହରଣ କରିଅଛି, କିନ୍ତୁ ତାହା ସହିତ ଖୁବ୍ କମ ରତିକ୍ରୀଡ଼ା କରିଅଛି । ଏକ୍ଷଣି ସେ ଯଦି ମୋତେ ବିଶ୍ୱାସ ଦେଖାଇ ସେହି ଧନ ଅପହରଣ କରିବାକୁ





ଚେଷ୍ଟାକରେ କିମ୍ବା ଭୃତ୍ୟ ଦ୍ୱାରେ ଉକ୍ତ ସେହି ଧନ ଚୋରି କରିବାକୁ ଚେଷ୍ଟାକରେ, ଅଥବା ବର୍ତ୍ତମାନ ମୁଁ ଯେଉଁ ନାୟକ ସହିତ ରହି ବହୁ ଅର୍ଥାଗମ କରୁଅଛି, ତାହା ସହିତ ମୋର ମତଭେଦ ଘଟାଇ ତାଙ୍କୁ ମୋ ଠାରୁ ଅନ୍ତର କରିବାକୁ ଚେଷ୍ଟା କରେ," ଏପରି ବ୍ୟକ୍ତି ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ଏଣୁ ତାଙ୍କୁ ଗ୍ରହଣ କରିବା ଅନୁଚିତ ।

ଯେଉଁ ନାୟକ "ଅସ୍ଥିର ବୁଦ୍ଧି, ବର୍ତ୍ତମାନ ଅନୁରାଗ ଅଛି, ଓ ଧନଦାନ କରିବାକୁ ସମ୍ମତ କିନ୍ତୁ ପରେ ଅନୁରାଗ ରହିବ ନାହିଁ କି ଧନ ମଧ୍ୟ ଦେବ ନାହିଁ ।" ଏପରି ଜଣାଗଲେ ସେ ନାୟକ ବିଶ୍ୱାସଯୋଗ୍ୟ ନୁହେଁ ।

ନିଷ୍କାସିତ ନାୟକ ପୁଣି ଆସିବାକୁ ଯଦି ଇଚ୍ଛାକରେ, ତାହା ସମ୍ବନ୍ଧେ ନିମ୍ନଲିଖିତ ବିଷୟ ଗୁଡ଼ିକ ବିଚାର୍ଯ୍ୟ । ଯଥା— ଦୁଃଖୀ ଦେଖି ନିଶ୍ଚେ ମୁଁ ତାକୁ ବାହାର କରି ଦେଇଅଛି, ସୁତରାଂ ସେ ଅନ୍ୟ ବେଶ୍ୟାର ଆଶ୍ରୟ ଗ୍ରହଣ କରିଅଛି, କିନ୍ତୁ ମୋ ଉପରୁ ତାହାର ଅନୁରାଗ ଲେଶମାତ୍ର କମିନାହିଁ ।" ଯଦି ଏପରି ହୋଇଥାଏ ତେବେ ସେହି ନାୟକଙ୍କୁ ଯତ୍ନ ସହିତ ଆଣିବା ଉଚିତ । ମୋ ପାଖରୁ ବାହାର ଯାଇ ସେଠି ସେ ଶାନ୍ତି ପାଇ ନାହିଁ, କିମ୍ବା ଯାହା ନିକଟରେ ଅଛି ସେ ତାହାର ସମସ୍ତ ଅର୍ଥ ନଷ୍ଟ କରି ଦେଉଅଛି, ଏହି ଜଣାଗଲେ ସେ ନାୟକକୁ ଅତି ଶୀଘ୍ର ଫେରାଇ ଆଣିବା ଉଚିତ । ତାହା ନ ହେଲେ ସେ ବେଶ୍ୟା ସମସ୍ତ ଅର୍ଥ ଆତ୍ମସାତ କରିଦେବ । ସେ ନାୟକ ଯଦି ସମ୍ପ୍ରତି ଅନେକ ସମ୍ପତ୍ତି ହସ୍ତଗତ କରିଥାଏ, ଯଦି କୌଣସି ଅନୁଷ୍ଠାନ କିମ୍ବା ଅଫିସର ଅଧ୍ୟକ୍ଷ ହୋଇଥାଏ ସେ ମଧ୍ୟ ଗ୍ରହଣ ଯୋଗ୍ୟ ।



"ତାର ସ୍ତ୍ରୀ ବିଯୋଗ ଘଟି ଅଛି ଅଥଚ ସେ ବିପୁଳ ଧନସମ୍ପତ୍ତିର ଅଧିକାରୀ, କିନ୍ତୁ ତାହା ଉପରେ କେହି ଅଭିଭାବକ ନାହିଁ।" ଏପରି ନାୟକଙ୍କୁ ଯେ କୌଣସି ମତରେ ଗ୍ରହଣ କରିବା ଆବଶ୍ୟକ।

"ଯେ ନାୟକଙ୍କର ଜଣେ ଧନୀ ବନ୍ଧୁ ଅଛି, ମୁଁ ଏହାକୁ ପୁନ ଗ୍ରହଣ କଲେ ସେ ଧନୀ ମଧ୍ୟ ମୋର ହସ୍ତଗତ ହେବ," ଏପରି ନାୟକ ମଧ୍ୟ ଗ୍ରହଣୀୟଯୋଗ୍ୟ। ଅଥବା "ଏହାର ମିତ୍ର ମୋ'ର ବିପକ୍ଷ ଗୋଟିଏ ବେଶ୍ୟାକୁ କାମନା କରୁଅଛି, ମୁଁ ଯଦି ଏହାକୁ କୌଶଳରେ ହସ୍ତଗତ କରେ, ତେବେ ତା'ର ମିତ୍ରକୁ ସେ ବେଶ୍ୟାଠାରୁ ଭିନ୍ନ କରାଇ ଦେଇ ପାରିବି"। ଏପରି ଭାବିଲେ ସେ ନାୟକଙ୍କୁ ଗ୍ରହଣ କରିବ।

ଯେଉଁ ବ୍ୟକ୍ତିର କୁଳଶୀଳ ବିଦିତ ଅଛି, ପୂର୍ବରୁ ତା'ର ସହବାସ ଶକ୍ତି ସମ୍ବନ୍ଧେ ପରିଚୟ ଅଛି ଏବଂ ଯେ ସୁନ୍ଦର ଉପଯୁକ୍ତ ପ୍ରୟୋଗରେ ସମର୍ଥ ଏପରି ପୁରୁଷ ବିଶ୍ୱାସଯୋଗ୍ୟ।

ଗମ୍ୟନାୟକ ନିକଟରୁ ଅନ୍ୟ ନାୟିକାକୁ ଦୂର କରିଦେବାରେ ବା ଅନ୍ୟ ନାୟିକା ନିକଟରୁ ଗମ୍ୟନାୟକର ଭେଦସୃଷ୍ଟି କରିବାରେ, କିମ୍ବା ଅନ୍ୟ ନାୟିକା ଦ୍ୱାରା ପୂର୍ବ ପରିଚିତ ନାୟକର ଅର୍ଥ ନଷ୍ଟ ହେବାର ଜାଣିଲେ, ଏ ସବୁ ନାୟକ ଗ୍ରହଣ କରିବା ଅବଶ୍ୟ କର୍ତ୍ତବ୍ୟ।

ଅନ୍ୟ ନାୟକର ଦୂତ ଆସିଅଛି ଦେଖି, ଯେଉଁ ନାୟକ ଅତିରିକ୍ତ ଧନଦାନ କରେ ସେପରି ନାୟକକୁ ଅସନ୍ତୁଷ୍ଟ କରିବା ଆଦୌ ଉଚିତ ନୁହେଁ। ପ୍ରଥମେ ପରିଣାମ ଦେଖି ଲାଭ କ୍ଷତିର





ବସ୍ତୁର କର ପ୍ରୀତ ଅପ୍ରୀତର ଲକ୍ଷ୍ୟ ରଖି ବଚକ୍ଷଣା ଗଣିକା ବଣୀର୍ଣ୍ଣ ବ୍ୟକ୍ତିମାନଙ୍କୁ ଗ୍ରହଣ କରିବା ବୁଦ୍ଧିମତୀର କାର୍ଯ୍ୟ ।



## ଲାଭାଲାଭ ବଚାର

ଅନ୍ୟମତେ ବାରଙ୍ଗନା ୩ ପ୍ରକାର । ଯଥା—ଏକପରିଗ୍ରହା, ଅର୍ଥାତ୍ ଗୋଟିଏ ପୁରୁଷ ସହିତ ସମ୍ବନ୍ଧ କରିବା ବେଶ୍ୟା, ଅନେକ ପରିଗ୍ରହା; ଯେ ବହୁ ପୁରୁଷ ସହିତ ସମ୍ବନ୍ଧ କରେ ଓ ଅପରିଗ୍ରହା ସେ କାହାରିକୁ ପ୍ରେମ କରେ ନାହିଁ ।

ପୂର୍ବେ ଯାହା ସବୁ କୁହାଗଲା ସେ ସବୁରେ ଏକପରିଗ୍ରହାରେ ଲାଭାଲାଭ ବିଷୟ ବର୍ଣ୍ଣିତ ହୋଇଅଛି । ବର୍ତ୍ତମାନ ନିମ୍ନରେ ଅପରି-ଗ୍ରହାର ବିଷୟ କୁହାଯିବ ।

ପ୍ରତିଦନ ବହୁ ପରିମାଣରେ ନାୟକ ଆସି ଯୁଟିଲେ ବେଶ୍ୟାର ବହୁତ ଲାଭ ହୋଇଥାଏ । ଏଣୁ ଜଣକୁ ଆଶ୍ରୟ କରି ବସିବା ଠିକ୍ ନୁହେଁ । ଗଣିକା ନାୟିକାର ଉଚିତ ହେଉଛି ଯେ, ଦେଶ, କାଳ, ପାତ୍ର ତଥା ନିଜର ଗୁଣ ଓ ସୌଭାଗ୍ୟ, ଅନ୍ୟ ବେଶ୍ୟାର ଗୁଣ ଓ ସୌଭାଗ୍ୟ ସହିତ ତୁଳନା କରି ଗୋଟିଏ ରାତ୍ର ନାଗର ସହିତ ସହବାସ କରିବାର ମୂଲ୍ୟ କମ୍ ବେଶୀ ନିଶ୍ଚିତ କରିବ । ଦର ବେଶୀ ଶୁଣିବା ଦ୍ୱାରା ଯଦି ନାୟକ ଫେରିଯାଏ ତେବେ ଦୂତ ପଠାଇ ତାକୁ ନିଜକର ଅଣିବା ଦରକାର । ଯଦି ଏକ ସମୟରେ ଏକାଧିକ ନାଗର ଆସି ଯୁଟନ୍ତି, ସବୁଠାରୁ ଯେ ଅଧିକ ଧନଦେବ ତାହାର ସହିତ ସହବାସ କରିବ । ସୁନା, ରୁପା, ତମ୍ବା, କଂସା;



ବସ୍ତ୍ର, ସୁଗନ୍ଧିତ ଦ୍ରବ୍ୟ, ପାନ, ଧାନ୍ୟ ଓ ପଶୁଆଦି ଯେ କୌଣସି ବସ୍ତୁ ଯଦି ନାୟକ ଦିଏ ତାହା ଗ୍ରହଣ କରିବ । ଯଦି ନାୟକ ଗୁଣୀ ଓ ପ୍ରଭାବଶାଳୀ ବ୍ୟକ୍ତି ହୋଇଥାଏ, ଧନ ନ ଦେଲେ ବି ତାହାକୁ ସନ୍ତୁଷ୍ଟ କରିବା ଦରକାର । କାରଣ ବିପଦ ଆପଦରେ ସେ ସାହାଯ୍ୟ ହୋଇଥାଏ । ବାତ୍ସ୍ୟାୟନ କହିଛନ୍ତି ଅନୁରାଗୀ, ତ୍ୟାଗୀ ଓ ଦାନ-ଶୀଳ ଏହି ତ୍ରିବିଧ ନାୟକମଧ୍ୟରେ ଦାନଶୀଳହିଁ ଗ୍ରହଣ ଯୋଗ୍ୟ । କାରଣ ପୁରୁଷ ଅନୁରାଗୀ କି ତ୍ୟାଗୀ ହେଲେ ବେଶ୍ୟାର ପେଟ ପୂରିବ ନାହିଁ । କେହି କେହି ଅନୁରାଗୀ ନାୟକ କୃପଣ ହେଲେ ମଧ୍ୟ ଅନୁରାଗ ବଶରୁ ଧନ ଦେଇ ପାରନ୍ତି । କିନ୍ତୁ ତ୍ୟାଗୀଠାରୁ ଧନ ମିଳିବାର ଆଶା ଖୁବ୍ କମ୍ ।

ଧନ ପ୍ରାପ୍ତି ଆଶାରେ କୌଣସି ମିତ୍ରକୁ ଉପେକ୍ଷା କରିବ ନାହିଁ । କାରଣ ଧନ ଆଜି ନ ହୁଏତ କାଲି ଅନ୍ୟ ନାୟକ ଠାରୁ ମିଳିପାରେ କିନ୍ତୁ ମିତ୍ର ମିଳିପାରେ ନାହିଁ ।

କୌଣସି ନାୟକଙ୍କ ସଙ୍ଗେ ଅନର୍ଥ ଘଟି ବିପଦର ଆଶଙ୍କା ଥିଲେ ଅର୍ଥାଗମ ଆଶା ଛାଡ଼ି ଆଗ ତାହାର ଆଶା ପୂର୍ଣ୍ଣ କରିବା ଉଚିତ । କାରଣ ଅନର୍ଥ ଘଟି ଅର୍ଥାଗମରେ ବାଧା ପଡ଼େ ।

ଏହି ଅପରିଗ୍ରହ ବେଶ୍ୟା ମଧ୍ୟ ତ୍ରିବିଧ । ଯଥା—ଗଣିକା, ରୂପାଜୀବା ଓ କୁମ୍ଭଦାସୀ । ସେମାନଙ୍କ ମଧ୍ୟରେ ମଧ୍ୟ ଉତ୍ତମା, ମଧ୍ୟମା ଓ ଅଧମା ଭେଦରେ ୩ପ୍ରକାର ଶ୍ରେଣୀ ବିଭାଗ ଅଛି ।

ଦେବତା ପ୍ରତିଷ୍ଠା, ମନ୍ଦିର ନିର୍ମାଣ, ପୁଷ୍କରିଣୀ ଖନନ, ପଥ ନିର୍ମାଣ, କୂପ ଖନନ, ବୃକ୍ଷ ରୋପଣ, ବ୍ରାହ୍ମଣଙ୍କୁ ଦାନ, ଜଳସତ୍ର

ଦେବା ଇତ୍ୟାଦ ପ୍ରବର୍ତ୍ତିନ କରିବା ବାହାନାରେ ସେହିପରି ବ୍ୟସ୍ତ-ସହିତ୍ତ୍ର ନାୟକ ଠାରୁ ଅର୍ଥ ଆଦାୟ କରିବ । ସେହି ସବୁ ଧର୍ମ କାର୍ଯ୍ୟ କଲାପରେ କିଛି ଅର୍ଥ ବଳାଇ ନିଜ ପାଇଁ ନେବ । ଏହା ଉତ୍ତମ ଗଣିକାମାନଙ୍କର ଲାଭକରିବା ଉପାୟ ଅଟେ ।

ରୂପାଜୀବାକୁ ମଧ୍ୟମା ଗଣିକା କୁହାଯାଏ । ଏ ଅଳଙ୍କାର ତିଆରି କରିବା ପାଇଁ, ଘର ସୁସଜ୍ଜିତ କରିବା ପାଇଁ, ଉତ୍ତମ ବସ୍ତ୍ର ଓ ବାସନ କୁସନ କିଣିବା ପାଇଁ, ଚାକର ଚାକରାଣୀଙ୍କ ଖର୍ଚ୍ଚ ପାଇଁ, ନିଜର ବେଶ ଭୂଷା ପାଇଁ ବହୁତ ଧନ ଆଦାୟ କରିନିଏ ।

ଅଧମା ଗଣିକାକୁ କୁମ୍ଭଦାସୀ କହନ୍ତି । ଏ ବସ୍ତ୍ର ଭୂଷଣ ଖାଇବା ଜିନଷ, ତେଲ, ସୁଗନ୍ଧ ଦ୍ରବ୍ୟ, ତାମ୍ବୁଲ ଓ ସୁବର୍ଣ୍ଣାଦି ନାନାପ୍ରକାର ଭୋଗ୍ୟ ବସ୍ତୁ ନିମିତ୍ତ ନାୟକ ଠାରୁ ପ୍ରଚୁର ଧନ ନିଏ ।



## ଅନେକ ପରିଗ୍ରହା

ଯେଉଁ ଗଣିକା ଏକ ସମୟରେ ଏକାଧିକ ପୁରୁଷ ସହିତ ସଂସର୍ଗ କରେ ତାକୁ ଅନେକ ପରିଗ୍ରହା ବା "ସମସ୍ତଭୋଗୋଗା" କୁହାଯାଏ ।

ନାଗରଗଣ ଏକତ୍ରରେ ମିଳିତ ହୋଇ ଗୋଟିଏ ବେଶ୍ୟାକୁ ରମଣ କଲେ ଏହାକୁ ଗୋଷ୍ଠୀରମଣ କହନ୍ତି । ସେହି ବେଶ୍ୟା ଏକ ଦୁଇ ବା ବହୁ ସହିତ ସଂସର୍ଗ କରି ପ୍ରତ୍ୟେକଙ୍କୁ ଆଦର ଓ ଆପ୍ୟାୟିତ କରିବ ଏବଂ ପ୍ରତ୍ୟେକଙ୍କ ଠାରୁ ଅର୍ଥଲାଭ କରିବା ପାଇଁ

# କାମ-ବିଜ୍ଞାନ ୨ୟ




ଶ୍ୱାସ ପ୍ରଶ୍ୱାସ ଗ୍ରହଣ ଓ ଶିରା ପ୍ରଶିରାରେ ରକ୍ତ ସଞ୍ଚାଳନର ବ୍ୟାୟାମ ।
( ୨୮୦ ପୃଷ୍ଠା ଦ୍ରଷ୍ଟବ୍ୟ )



ଚେଷ୍ଟା କରିବ । ମାତା ଦ୍ୱାରା କୁହାଇବ, ଯେଉଁ ଲୋକ ଆମର ଅମୁକ ବାସନା ପୂରଣ କରିବ, ମୋ ଦୁହିତା ଆଜି ତାହାର ସହିତ ସଂସର୍ଗ କରିବ । ସେମାନଙ୍କ ମଧ୍ୟରେ ସଂସର୍ଗ କରିବା ପାଇଁ ସଙ୍ଘର୍ଷ ଉପସ୍ଥିତ ହେଲେ ନିମ୍ନୋକ୍ତ ପ୍ରକାରରେ ଲାଭାଲାଭ ବିବେଚନା କରି ଦେଖିବ—ଏକ ପ୍ରକାରରେ ଅର୍ଥ କି ସର୍ବ ପ୍ରକାରରେ ଅର୍ଥ, ଏକ ପ୍ରକାରରେ ଅନର୍ଥ କି ସର୍ବ ପ୍ରକାରରେ ଅନର୍ଥ, ଅର୍ଥ ରୂପେ ଅର୍ଥ କି ସର୍ବ ରୂପେ ଅର୍ଥ, ଅର୍ଥ ରୂପେ ଅନର୍ଥ କି ସର୍ବ ରୂପେ ଅନର୍ଥ ଉପସ୍ଥିତ । ଯେଉଁଟି ବେଶୀ ଦେଖିବ, ହୁଏତ ସେହି ଗୋଟିକ ଗ୍ରହଣ କରିବ । ନଚେତ୍ ପରିତ୍ୟାଗ କରିବ । ଅର୍ଥାତ୍ ସେମାନଙ୍କ ମଧ୍ୟରୁ ଯାହା ସହିତ ସହବାସ କଲେ ବିପଦ ନାହିଁ, ଅଥଚ ଧନ ଆଗମ ହେବ, କିମ୍ବା ଧନ ଆଗମ ହେବ କିନ୍ତୁ ଅନର୍ଥ ଘଟିବାର ସମ୍ଭବ, ଏହିସବୁ ବିଷୟ ପ୍ରତି ନଜର ଦେଇ ସହବାସ କରିବ, ନଚେତ୍ ବର୍ଜନ କରିବ ।



## ଅର୍ଥ ଅନର୍ଥ ଓ ସଂଶୟ ବିଚାର

ବେଶ୍ୟା ଅର୍ଥାଗମ କରିବାରେ ସତ୍‌ମାର୍ଗ ଅବଲମ୍ବନ କରିବା ସର୍ବଥା ବିଧେୟ । ନଚେତ୍ ମହା ବିପଦ ଘଟିବାର ସମ୍ଭାବନା । ଅନର୍ଥ ଓ ସଂଶୟ ସ୍ୱୟଂ ନାୟିକାର ନିଜ କାର୍ଯ୍ୟକଳାପ ଦ୍ୱାରା ଉତ୍ପନ୍ନ ହୋଇଥାଏ । ସେଥି ପ୍ରତି ସତର୍କ ରହିବା ଉଚିତ । ନାୟିକାର ବୁଦ୍ଧିହୀନତା, ଅତ୍ୟନ୍ତ ଅନୁରାଗ, ଅନ୍ଧପ୍ରେମ, ଅହଙ୍କାର, ଗର୍ବ, ମିଥ୍ୟା, ଦମ୍ଭ, ସରଳତା, ଅନ୍ଧବିଶ୍ୱାସ, ଦୁଃସାହସ ଓ ଅତ୍ୟନ୍ତ କ୍ରୋଧ; ଏହି ସବୁଥିରୁହିଁ ଅନର୍ଥ ଘଟିବାର ସମ୍ଭାବନା । ଅତ୍ୟନ୍ତ





ଓ ଅଜଣା ଅଶୁଣା ନାୟକଙ୍କୁ ଗ୍ରହଣ କରିଲେ ଧନ ନାଶ ଘଟେ ରୋଗ ଉତ୍ପତ୍ତି ହୁଏ । ଏପରି କି ପ୍ରାଣର ଆଶଙ୍କା ମଧ୍ୟ ଥାଏ । ଏଥି ଯୋଗୁ ଭାବି ଚିନ୍ତି ନାୟକଙ୍କୁ ଗ୍ରହଣ କରିବା ଉଚିତ । ଅଧିକ ଧନର ଲୋଭ କଦାପି କରିବ ନାହିଁ ।

ଅର୍ଥ, ଧର୍ମ ଓ କାମ; ଏହା ତ୍ରିବର୍ଗ । ଏହାର ଦ୍ୱାରା ମାନବ ସଂସାରରେ ସୁଖୀ ହୁଏ । ଏହାର ବିପରୀତ ଅନର୍ଥ, ଅଧର୍ମ ଓ ଦ୍ୱେଷ । ଏହି ତିନୋଟି ଅନର୍ଥ-ତ୍ରି-ବର୍ଗ ସଂସାରର ସୁଖ ନଷ୍ଟ କରେ ।

ନାୟକ ମଧ୍ୟ ଉତ୍ତମ, ମଧ୍ୟମ ଓ ଅଧମ; ଏହି ତିନି ପ୍ରକାର ଅଛନ୍ତି । ଉତ୍ତମ ନାୟକ ସହିତ ସହବାସ କରିଲେ ଧନ ଓ ଯଶ ପ୍ରାପ୍ତି ହୁଏ । ପ୍ରଭାବ ମଧ୍ୟ ବଢ଼େ । ମଧ୍ୟମ ପୁରୁଷ ସହିତ ସହାବାସ କରିଲେ ସାମାନ୍ୟ ଧନ ଓ ଯଶ ପ୍ରାପ୍ତ ହୁଏ କିନ୍ତୁ ଅଧମ ନାୟକ ସର୍ବଦା ପରିତ୍ୟଜ୍ୟ । କୃପଣ, କୁରୂପ, କୃତଘ୍ନ ଓ କପଟି ପୁରୁଷ ସହିତ ସହବାସ କରି ବେଶ୍ୟା ଯେଉଁ ଧନ ଅର୍ଜନ କରେ ତା' ଦ୍ୱାରା ତା'ର ଅକୀର୍ତ୍ତି ବଢ଼େ । କୌଣସି ଶ୍ରୀମନ୍ତ ଧନବିଳାସୀ ପୁରୁଷ ତା ପାଖକୁ ଯାଏ ନାଁ । ଏହିପରି ଅଧିକ ପ୍ରଭାବଶାଳୀ ଏବଂ ରାଜା ମହାରାଜାଙ୍କର ପ୍ରିୟ ଲୋକ ତଥା ଆଶ୍ରିତ ଲୋକଙ୍କ ସହିତ ସହବାସ କରିଲେ ଅନର୍ଥ ଘଟିବାର ସମ୍ଭାବନା ଥାଏ । ବେଶ୍ୟାର ଶରୀର ଉପରେ ଆଘାତ, ଅନେକ କଷ୍ଟ, ଏପରିକି ପ୍ରାଣ-ସଙ୍କଟ ମଧ୍ୟ ଘଟିପାରେ ।

କୌଣସି ଗୃହସ୍ଥ ଲୋକ କୌଣସି ବେଶ୍ୟାର ପ୍ରେମରେ ଆସକ୍ତ ହୋଇ ଆତ୍ମହତ୍ୟା କରିବାକୁ ଯଦି ଚେଷ୍ଟା କରେ, ତାହା ବେଶ୍ୟା ଜାଣି ସଙ୍ଗମ ଦାନ କରି ଯଦି ଆକାଂକ୍ଷା ପୂରଣ କରିଦିଏ, ଏପରି ସ୍ଥଳେ ସେ ଲୋକର ପ୍ରାଣ ରକ୍ଷା ହେଲା ଏବଂ ତା'ର କୁଟୁମ୍ବର ମଧ୍ୟ



ରକ୍ଷା ହେଲା । ଏହାକୁ **ଧର୍ମାନୁବନ୍ଧ** କହନ୍ତି । ବେଶ୍ୟାର ଦେଖିବା ଉଚିତ ଯେ, ନାୟକ ସମ୍ଭୋଗ କରିବା ପୂର୍ବରୁ ଅର୍ଥ ଦେଉଛି କି ସମ୍ଭୋଗ ସୁଖ ମେଣ୍ଟାଇବା ପରେ ଦେଉଛି । ଯଦି ପୂର୍ବରୁ ଧନ ଦେଇ ଦିଏ ତ ତେବେ ଆଉ ଅର୍ଥ ସଂଶୟ ରହିଲା ନାହିଁ । ଯଦି ପରେ ଦେବାକୁ କୁହେ ତେବେ ସେଠାରେ ଅର୍ଥ ପ୍ରାପ୍ତିର ସଂଶୟ ରହିଲା । ଏଣୁ ଅର୍ଥ ଆଗରୁ ଆଦାୟ କରି ନେବା ଉଚିତ ।

ଯଦି କୌଣସି ପୁରୁଷ କୌଣସି ନାୟିକା ପ୍ରତି ଅନୁରକ୍ତ ହୋଇ ମୁମୂର୍ଷୁ ଅବସ୍ଥାକୁ ଆସେ ଏବଂ ନାୟିକା ତାହା ସହିତ ସହବାସ ନ କରି ପରିତ୍ୟାଗ କରେ, ଏପରି ସ୍ଥଳେ ନାୟିକାର ଭାବିବା ଉଚିତ ଯଦି ଏହି ପୁରୁଷର ମୃତ୍ୟୁ ଘଟେ ତେବେ ମୋ'ର ଅଧର୍ମ ହେବ । ଏହାକୁ ଧର୍ମ ସଂଶୟ କୁହାଯାଏ । ଆହୁରି ମଧ୍ୟ ବେଦପାଠ, ବ୍ରହ୍ମଚର୍ଯ୍ୟ, ଦୀକ୍ଷିତ, ତପସ୍ୱୀ ଓ ସନ୍ନ୍ୟାସୀ, ଏମାନେ ଯଦି ବେଶ୍ୟାକୁ ଦେଖି କାମାତୁର ହୋଇ ମରଣୋନ୍ମୁଖ ହୁଅନ୍ତି ଏବଂ ବେଶ୍ୟା ଏମାନଙ୍କ ଅବସ୍ଥା ଦେଖି ଦୟା ପୂର୍ବକ ସେମାନଙ୍କୁ ସଙ୍ଗମ ଦିଏ, ଏହା ଦ୍ୱାରା ଧର୍ମ ଓ ଅଧର୍ମ ଉଭୟର ସଂଶୟ ରହେ । ପ୍ରାଣରକ୍ଷା କରିବା ଧର୍ମ ହୁଏ, କିନ୍ତୁ ବ୍ରହ୍ମଚର୍ଯ୍ୟ, ତପସ୍ୱୀ ଆଦିଙ୍କର ଧର୍ମ ନିୟମ ଖଣ୍ଡନ କରିବାରେ ବେଶ୍ୟାର ପାପ ବି ହୁଏ ।

ବେଶ୍ୟାମାନେ ଆପଣାର ଯୁବତୀ କନ୍ୟାମାନଙ୍କୁ ବେଶ୍ୟା କରିବାକୁ ହେଲେ ପ୍ରଥମେ ଗୋଟିଏ ଅନୁଷ୍ଠାନ କରିବାକୁ ହୁଏ । କୌଣସି ଜ୍ଞାନୀ, ଶୂରବୀର, ସୌନ୍ଦର୍ଯ୍ୟ, ଧନୀ, ବିଳାସୀ ଯୁବକମାନଙ୍କୁ ନିମନ୍ତ୍ରଣ କରି କହେ, ଯେ ଯୁବକ ମୋର ଝିଅକୁ ଅମୁକ ଅମୁକ ବସ୍ତ୍ରାଳଙ୍କାର ଓ ଏତେ ସେତେ ଟଙ୍କା ଦେବ ସେ ମୋର ଝିଅ





ସହିତ ପ୍ରଥମସଙ୍ଗମ କରି ପାରିବ । ଅଧୁନା ମଧ୍ୟ ସେମାନେ ନିଜର ଯୁବତୀ କନ୍ୟା ପ୍ରତି ସେହି ସ୍ଥାନର ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତିର ତରୁଣ ପୁତ୍ର-ମାନଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି । କୌଣସି ସଙ୍ଗୀତାଳୟ ବା କଳାପୀଠରେ, ଯେଉଁଠି କି ତରୁଣ ଯୁବକମାନେ ସଙ୍ଗୀତ ବିଦ୍ୟା ଶିକ୍ଷା କରୁଥାନ୍ତି, ସେଠାରେ ନିଜର କନ୍ୟାମାନଙ୍କୁ ଶିକ୍ଷାର୍ଥିନୀ ଭାବରେ ରଖନ୍ତି । ଏହା ଦ୍ୱାରା ଧନୀ ତରୁଣ-ଯୁବକମାନଙ୍କ ସହିତ ସେମାନଙ୍କ ପ୍ରେମାଳାପ ଘଟି ବିପୁଳ ଧନ ପ୍ରାପ୍ତି ହୁଏ । ଅଧୁନା ମଧ୍ୟ କୌଣସି କୌଣସି ତରୁଣ ଯୁବକ କୌଣସି କୌଣସି ବେଶ୍ୟାର କନ୍ୟାକୁ ବିବାହ କରିବାର ଦେଖା ଯାଇଅଛି ।

ବେଶ୍ୟାର ଅନୁକୂଳ ଉତ୍ତମ, ମଧ୍ୟମ ଓ ଅଧମ ନାୟକ ତଥା ସହାୟକ, ନାୟକକୁ ପ୍ରସନ୍ନ କରିବା, ଧନପ୍ରାପ୍ତିର ଉପାୟ, ନିର୍ଦ୍ଧନ ନାୟକକୁ ବିତାଡ଼ିତ କରି ଦେବା, ପୂର୍ବନାୟକକୁ ଗ୍ରହଣ କରିବା, ଲାଭାଲାଭର ବିଚାର, ଅର୍ଥାନୁବନ୍ଧ, ଅନର୍ଥ ଓ ସଂଶୟ ବିଚାର ଆଦି ବିଷୟ ବିଷଦ ଭାବରେ ବର୍ଣ୍ଣନା କରି ଆମ୍ଭେମାନେ ଏଠାରେ ବେଶ୍ୟା ପ୍ରକରଣ ଶେଷ କଲୁ ।





# ଦ୍ୱିତୀୟ ଅଧିକରଣ

## ପରଦାର ପ୍ରକରଣ

### ପରଦାର ସମ୍ବନ୍ଧେ ପ୍ରାଚୀନତା ଓ ପୌରାଣିକ ଉପାଖ୍ୟାନ

ମାତୃବତ୍ ପରଦାରେଷୁ ପର ଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ।
ଆତ୍ମବତ୍ ସର୍ବଭୂତେଷୁ ଯଃ ପଶ୍ୟତି ସ ଜିତେନ୍ଦ୍ରିୟଃ ॥
ନହୀଦୃଶମନାୟୁଷ୍ୟଂ ଲୋକେ କିଂଚନ ବିଦ୍ୟତେ ।
ଯାଦୃଶଂ ପୁରୁଷସ୍ୟେହ ପରଦାରୋପସେବନମ୍ ॥

ପୃଥିବୀର ସବୁ ସଭ୍ୟ ଜାତି ଓ ସମାଜ ପରସ୍ତ୍ରୀ ଗମନକୁ ନିନ୍ଦା କରିଅଛନ୍ତି । ଏହା ଯେପରି ଗର୍ହିତ ସେହିପରି ମଧ୍ୟ ଅଧର୍ମ କାର୍ଯ୍ୟ । ଏହା ଜାଣି ଶୁଣି ସୁଦ୍ଧା ପୃଥିବୀର କୌଣସି ସମାଜ ବା ଦେଶ ଏଥିରୁ ଅବ୍ୟାହତି ପାଇ ନାହିଁ । ବିଶେଷତଃ ବର୍ତ୍ତମାନ ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଏହା ବହୁଳ ଭାବରେ ଦେଖା ଯାଉଅଛି ।

ପୌରାଣିକ ଯୁଗରେ ଏହାର ପ୍ରଚଳନ ମଧ୍ୟ କମ୍ ନ ଥିଲା । ଲକ୍ଷ ଲକ୍ଷ ବର୍ଷ ପୂର୍ବରୁ ଏହା ଚଳି ଆସୁଅଛି । ପୁରାଣରେ ସୁର-ରାଜ ଇନ୍ଦ୍ର, ଚନ୍ଦ୍ରଦେବ, ସୂର୍ଯ୍ୟ, ବଶିଷ୍ଠ, ବୃହସ୍ପତି, ଶୁକ୍ର, ଅଗସ୍ତି ଋଷି, ବ୍ୟାସ, ଭଗବାନ ଶ୍ରୀକୃଷ୍ଣ ଆଦି ଏହି ଦୋଷରେ ଦୁଷ୍ଟ ହୋଇ ବର୍ଣ୍ଣନା କରାଯାଇ ଅଛି । ବ୍ରହ୍ମବୈବର୍ତ୍ତ ପୁରାଣରେ ଲେଖା





ଅଛି "ଥରେ ଇନ୍ଦ୍ର ମନ୍ଦାକିନୀ ନଦୀ ତଟରେ ଗୌତମ ଋଷିଙ୍କ ପତ୍ନୀ ଅହଲ୍ୟାଙ୍କୁ ଦେଖି ମୁଗ୍ଧ ହୋଇଗଲେ । ଗୌତମ ତପସ୍ୟାର୍ଥେ ଦୂର ଅରଣ୍ୟକୁ ଯିବାର ସୁଯୋଗ ପାଇ ଇନ୍ଦ୍ର ଗୌତମ ରୂପ ଧାରଣ କରି ଅହଲ୍ୟାକୁ ହରଣ କରି କାମ ପିପାସା ମେଣ୍ଟାଇ ଥିଲେ । ଗୌତମ ଫେରିଆସି ଯୋଗ ବଳରେ ଏହାର ସନ୍ଧାନ ପାଇ 'ଇନ୍ଦ୍ରର ଦେହରେ ସହସ୍ର ଯୋନି ହେଉ' ବୋଲି ଶାପ ଦେଇ ଏବଂ ଅହଲ୍ୟାକୁ ପାଷାଣ କରି ଦେଇଥିଲେ ।"

ନୃସିଂହ ପୁରାଣରେ ଲେଖାଅଛି "ଦିନେ କୁବେରଙ୍କର ପତ୍ନୀ ଚିତ୍ରସେନା ମାନସରୋବରକୁ ସ୍ନାନକରିବାକୁ ଯାଇଥିଲେ । ଇନ୍ଦ୍ର ତାର ରୂପରେ ମୁଗ୍ଧ ହୋଇ ତାଙ୍କୁ ମନ୍ଦର ପର୍ବତର କନ୍ଦରକୁ ନେଇ ଯାଇ ତାଙ୍କପ୍ରତି ବ୍ୟଭିଚାର କରିଥିଲେ । କୁବେର ନିଜର ପତ୍ନୀର ଅନୁସନ୍ଧାନରେ ଜଣେ ରାକ୍ଷସୀ ପଠାଇଥିଲେ । ସେ ରାକ୍ଷସୀ ଖୋଜି ଖୋଜି ଯାଇଁ ମହାତ୍ମା ତୃଣବିନ୍ଦୁ ଋଷିଙ୍କ ଆଶ୍ରମରେ ଥିବା ସମୟରେ, ଋଷିଙ୍କ ନିବାରଣ ସତ୍ତ୍ୱେ, ଇନ୍ଦ୍ର ସେ ରାକ୍ଷସୀକୁ ହତ୍ୟା କରିଥିଲେ । ତେଣୁ ଋଷି ତୃଣବିନ୍ଦୁ ରୋଷ ହୋଇ ଶାପ ଦ୍ୱାରା ଇନ୍ଦ୍ରଙ୍କୁ ସ୍ତ୍ରୀ କରି ଦେଇ ଥିଲେ ।" ଇନ୍ଦ୍ରଙ୍କ ସମ୍ବନ୍ଧରେ ଏହିପରି କେତେକ କିମ୍ବଦନ୍ତୀ ପୁରାଣରେ ଦେଖିବାକୁ ମିଳେ ।

ପୁଣି ନୃସିଂହ ପୁରାଣରେ ବର୍ଣ୍ଣିତ ଅଛି-ଦିନେ ଦେବଗୁରୁ ବୃହସ୍ପତିଙ୍କ ପତ୍ନୀ ତାରା ନିଜର ଜଜମାନ ଚନ୍ଦ୍ରମାଙ୍କ ଘରକୁ ଯାଇଥିଲେ । ଉଭୟେ ଉଭୟଙ୍କୁ ଦେଖି ପରସ୍ପର ଆସକ୍ତହୋଇ ବ୍ୟଭିଚାରରେ ମାତି ତାରା ଚନ୍ଦ୍ରମାଙ୍କ ଗୃହରେ କିଛି ଦିନ ରହିଗଲେ । ବୃହସ୍ପତି ଏ କଥା ଜାଣିପାରି ତାରାଙ୍କୁ ଫେରାଇ ଆଣିବାକୁ ଜଣେ ଶିଷ୍ୟକୁ ପଠାଇଥିଲେ ।



କିନ୍ତୁ ତାରା ଫେରିଆସିବାକୁ ରାଜି ନହୋଇ କହିଲେ "ମୋର ସ୍ୱାମୀ ବୃହସ୍ପତିଙ୍କୁ କହିବ, ସେ ଯେପରି ତାଙ୍କର ବଡ଼ଭାଇ ଉତଥ୍ୟଙ୍କ ସ୍ତ୍ରୀ ମମତାଙ୍କୁ ପତ୍ନୀ ରୂପେ ଗ୍ରହଣ କରି ନେଇଛନ୍ତି, ମୁଁ ମଧ୍ୟ ସେହିପରି ତାଙ୍କର ଶିଷ୍ୟ ଚନ୍ଦ୍ରମାଙ୍କୁ ଗ୍ରହଣ କରିଛି ।" ଏଥିରେ ବୃହସ୍ପତି ଓ ଚନ୍ଦ୍ରମାଙ୍କର କଳହ ଉପସ୍ଥିତ ହୋଇ ଉଭୟ ଯୁଦ୍ଧ କରିବାକୁ ତତ୍ପର ହୋଇ ଗଲେ । କିନ୍ତୁ ବ୍ରହ୍ମାଦି ଦେବତାମାନେ ଆସି ବିବାଦ ମେଣ୍ଟାଇ ଦେଇ ତାରାଙ୍କୁ ପୁନର୍ବାର ବୃହସ୍ପତିଙ୍କୁ ଦେଲେ । କିନ୍ତୁ ତାରା ଚନ୍ଦ୍ରମାଙ୍କ ସହବାସରେ ଗର୍ଭଧାରଣ କରିଥିଲେ । ସେଥିରେ ଯେଉଁ ପୁତ୍ର ଜନ୍ମ ହେଲା ତାହାଙ୍କ ନାମ ହେଲା ବୁଧ । ଏଣୁ ବୁଧଙ୍କୁ ଚନ୍ଦ୍ରମାଙ୍କ ପୁତ୍ର ବୋଲି କୁହାଯାଏ ।

ଚନ୍ଦ୍ରମାଙ୍କ ବଡ଼ଭାଇ ସୂର୍ଯ୍ୟ ତ ଆହୁରି ଦୁଇ ପାଦ ଆଗକୁ ବଢ଼ାଇ ସ୍ୱର୍ଗ ମଣ୍ଡଳ ଛାଡ଼ି ଆସି ମର୍ତ୍ତ୍ୟ ମଣ୍ଡଳରେ ହାଜର । ମହାଭାରତରୁ ପଢ଼ିଥିବେ, କୁନ୍ତୀଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କର କନ୍ୟା କାଳରେ ଦିବାକର ତାଙ୍କ ପ୍ରତି ବ୍ୟଭିଚାର କରିଥିଲେ । ଯେଉଁ ବ୍ୟଭିଚାର ଫଳରେ କି ଦାନୀ କର୍ଣ୍ଣଙ୍କର ଜନ୍ମ ।

ଦୈତ୍ୟଗୁରୁ ଶୁକ୍ର ଥରେ ଘୋର ତପସ୍ୟାରେ ନିମଗ୍ନ ହେଲେ । ଏହା ଦେଖି ଇନ୍ଦ୍ର ଇନ୍ଦ୍ରପଦ ହରାଇବା ଆଶଙ୍କାରେ ଶୁକ୍ରଙ୍କ ତପସ୍ୟା ଭଙ୍ଗ ପାଇଁ ନିଜର କନ୍ୟା ଜୟନ୍ତୀଙ୍କୁ ପଠାଇଲେ । ଜୟନ୍ତୀଙ୍କର ଚେଷ୍ଟା ବ୍ୟର୍ଥ ହେଲା ନାହିଁ । ଶୁକ୍ର ବର୍ଷ ବର୍ଷ ଧରି ସେ କନ୍ୟା ସହିତ ବ୍ୟଭିଚାରରେ ବ୍ରତୀ ହେଲେ ।

ବ୍ରହ୍ମା ନିଜର ନନ୍ଦିନୀ ସରସ୍ୱତୀଙ୍କ ପ୍ରତି ମଧ୍ୟ ଆସକ୍ତ ହୋଇ ମୈଥୁନ ଅଭିପ୍ରାୟ ଜଣାଇଲେ ଏବଂ ବ୍ୟଭିଚାର ମଧ୍ୟ କରିଥିଲେ ।

"ତାଂ ଦୃଷ୍ଟ୍ୱାଭିମତାଂ ବ୍ରହ୍ମା ମୈଥୁନାୟା ଜୁହାବତାମ ।"





ପଦ୍ମ ପୁରାଣରେ ବର୍ଣ୍ଣିତ ଅଛି "ବିଷ୍ଣୁ ଜଳନ୍ଧର ରୂପ ଧାରଣ କରି ତା'ର ପତ୍ନୀ ବୃନ୍ଦା ସହିତ ବ୍ୟଭିଚାର କରିଥିଲେ । ସେଥିରେ ଲେଖା ଅଛି—

ପ୍ରସ୍ପୃଂଗାଢ଼ଂ ସମାଲିଂଗ୍ୟ ଚୁଚୁମ୍ବରତ ଲୋଲୁପା ।
ମୋକ୍ଷାଦପ୍ୟଧିକଂ ସୌଖ୍ୟଂ ବୃନ୍ଦା ମୋହନ ସଂଭବମ୍ ।

ଅର୍ଥାତ୍—ବିଷ୍ଣୁ ବୃନ୍ଦାର ସ୍ୱାମୀରୂପ ଧାରଣ କରିଥିଲେ ସୁଦ୍ଧା, ତା ସହିତ ରତକ୍ରୀଡ଼ାରେ ଏପରି ପ୍ରଗାଢ଼ ଆଲିଙ୍ଗନ ଚୁମ୍ବନ କରିଥିଲେ ଯେ, ଜଳନ୍ଧର ସହବାସରେ ବୃନ୍ଦାର ଯେଉଁ ଚରମତୃପ୍ତି ଲାଭ ହୁଏ, ଏ ସହବାସରେ ତାହାଠାରୁ ସେ ବଳି କରି ଆନନ୍ଦ ପାଇଥିଲା । ଏଣୁ ତା'ର ସ୍ୱାମୀ ନୁହେଁ ବୋଲି ଜାଣି ପାରି ବିଷ୍ଣୁଙ୍କୁ 'ପ୍ରସ୍ତର ହୋଇଯାଅ ବୋଲି' ଶାପ ଦେଇଥିଲା ।

ମହାଯୋଗୀ ମହାଦେବ ମଧ୍ୟ ପରଦାର ରୂପକ ମହାପାପରୁ ମୁକ୍ତି ପାଇନାହାନ୍ତି । ଲିଙ୍ଗ ପୁରାଣରେ ଲେଖାଅଛି "ଶିବ ଅତିଥି ରୂପଧାରଣ କରି ସୁଦର୍ଶନ ନାମକ ଜଣେ ମହାତ୍ମାଙ୍କ ପତ୍ନୀ ସହିତ ଦୂଷିତ ବ୍ୟବହାର କରିଥିଲେ ।" ଥରେ ଶିବ ଗୋଟିଏ ସୁନ୍ଦରୀ କନ୍ୟା ପ୍ରତି ଏପରି ଆସକ୍ତ ହୋଇଗଲେ ଯେ, ସେ ଗଣେଶ ଓ ପାର୍ବତୀଙ୍କ ସମ୍ମୁଖରେ ମଧ୍ୟ ଦୌଡ଼ିଯାଇ ତାକୁ ଆଲିଙ୍ଗନ କରିଥିଲେ । ସେହି ଆଲିଙ୍ଗନରେ ହିଁ ସମ୍ଭୁଙ୍କର ବୀର୍ଯ୍ୟ ସ୍ଖଳିତ ହୋଇଗଲା । ଏକଥା ଶ୍ରୀମଦ୍ ଭାଗବତରେ ବର୍ଣ୍ଣିତ ଅଛି । ଅଧିକ ମଧ୍ୟ ମହାଦେବ ପ୍ରତାରଣାରେ ଦେବୀ ଅଞ୍ଜନାଙ୍କୁ ନିଜ ପାଖକୁ ଡାକି ତାଙ୍କ କର୍ଣ୍ଣରେ ବୀର୍ଯ୍ୟପାତ କରିଥିଲେ । ଏହିପରି ପରସ୍ତ୍ରୀଗମନ ସମ୍ବନ୍ଧେ ଅନେକ କଥା ପୁରାଣମାନଙ୍କରେ ଦେଖିବାକୁ ମିଳେ ।




ହସ୍ତ ଓ ଛାତିର ଦୃଢ଼ତା ଆଣିବାର ବ୍ୟାୟାମ ।

( ୭[illegible] ପୃଷ୍ଠା ଦ୍ରଷ୍ଟବ୍ୟ )



ଏଥିରୁ ବୁଝିବାକୁ ହେଉଛି ଯେ, ଦେବତା ବଡ଼ ବଡ଼ ତପସ୍ୱୀ ମୁନି ଆଦି ଯେତେବେଳେ ଏଥିରୁ ବାହାର ପାଇ ନାହାନ୍ତି, ମର୍ତ୍ତ୍ୟଲୋକ-ବାସୀ ମନୁଷ୍ୟ ତ ନିତାନ୍ତ ଦୁର୍ବଳ ଚିତ୍ତ, ସେ ବା ଏଥିରୁ ମୁକ୍ତ ହେବ କିପରି ।

କିନ୍ତୁ କଥାରେ ଅଛି—

ଏ ବଡ଼ ଲୋକଙ୍କର ମତ
ଅଳପ ଲୋକେ ବିପରୀତ ।

ଏଣୁ ମାନବ ସଭ୍ୟତା ପକ୍ଷରେ ପରଦାର ଏକ ମହା ଗର୍ହିତ କାର୍ଯ୍ୟ ।

ପୁରୁଷ ଏକସ୍ତ୍ରୀବ୍ରତୀ ହେବା ଆବଶ୍ୟକ, ଏହା ଆମର ପୁରାଣ, ବେଦ, ଉପନିଷଦ ଆଦି ସମସ୍ତ ସିଦ୍ଧାନ୍ତ ଗ୍ରନ୍ଥମାନ ସ୍ୱୀକାର କରିଅଛି । ବର୍ତ୍ତମାନ ପାଶ୍ଚାତ୍ୟ ଦାର୍ଶନିକମାନେ ମଧ୍ୟ ଏହି ମତ ପୋଷଣ କରନ୍ତି । କିନ୍ତୁ ଏହି ଏକଦାର ବ୍ରତ ଆମ ଦେଶରେ ଶତ-କଡ଼ା କେତେଜଣ ମାନି ଚଳୁଛନ୍ତି ? ଖୁବ୍ କମ୍ କହିଲେ ଅତ୍ୟୁକ୍ତି ହେବନାହିଁ ।

ଅତି ପ୍ରାଚୀନ କାଳରେ, ଯେତେବେଳେ ସଭ୍ୟତାର ବିକାଶ ହୋଇ ନ ଥିଲା, ବିବାହ ପଦ୍ଧତିର ସୃଷ୍ଟି ହୋଇ ନ ଥିଲା, ସେତେବେଳେ ପରସ୍ତ୍ରୀଗମନ ଏକ ସାଧାରଣ ପ୍ରଥା ଥିଲା ।

---

## ଭୌତିକ ସଭ୍ୟତାର ଯୁଗ

କାପ୍ଟେନ ଏବଙ୍ଗ୍ ସାହେବ କହନ୍ତି ଯେ ସଭ୍ୟତା ପରସ୍ତ୍ରୀ ଗମନରେ ବିରୋଧ କରେ ନାହିଁ । ସଭ୍ୟତା ଦୁଇ ପ୍ରକାର ଅଟେ





୧—ଭୌତିକ, ଓ ୨—ଆଧ୍ୟାତ୍ମିକ । ଭୌତିକ ସଭ୍ୟତାର ଲକ୍ଷ୍ୟ ହେଲା ସଂସାରିକ ସୁଖ । "Eat drink and be marry । କିନ୍ତୁ ଆଧ୍ୟାତ୍ମିକ ସଭ୍ୟତାର ଲକ୍ଷ୍ୟ ହେଉଛି "ଆତ୍ମାନନ୍ଦ" । ଦୁଇର ଉଦ୍ଦେଶ୍ୟ ମଧ୍ୟ ଭିନ୍ନଭିନ୍ନମୂଳକ ଅଟେ । ଏଥିରୁ ଅନୁମାନ ହୁଏ, ଏବଙ୍ଗ୍ ସାହେବ ଭୌତିକ ସଭ୍ୟତାକୁ ସ୍ୱୀକାର କରନ୍ତି ।

ଏହା ମଧ୍ୟ ମାନିବାକୁ ହେବ ଯେ, ପ୍ରଥମେ ଭୌତିକ ସଭ୍ୟତାର ଉତ୍ପତ୍ତି ହୋଇଥାଏ । ତତ୍ପରେ ବୁଦ୍ଧିର ବିକାଶ ସଙ୍ଗେ ସଙ୍ଗେ ମନୁଷ୍ୟ ଆଧ୍ୟାତ୍ମିକ ସଭ୍ୟତାକୁ ପ୍ରାପ୍ତ ହୁଏ । ଆମ ଦେଶରେ ପୂର୍ବେ ଭୌତିକ ସଭ୍ୟତାବାଦୀ ଲୋକଙ୍କୁ ରାକ୍ଷସ ଓ ଆଧ୍ୟାତ୍ମ୍ୟବାଦୀ ଲୋକଙ୍କୁ ଦେବତା ବୋଲି କୁହା ଯାଇଅଛି । ରାମ ଓ ରାବଣ ଏହାର ଜ୍ୱଳନ୍ତ ଉଦାହରଣ । ଭୌତିକ କାଳରେ ପରସ୍ତ୍ରୀଗମନକୁ ଗୋଟିଏ ମାମୁଲି କଥା ବୋଲି ଧରା ଯାଉଥିଲା । କିନ୍ତୁ ଏ ଆଧ୍ୟାତ୍ମିକ ଯୁଗରେ ଏହା ଅପରାଧ ବୋଲି ଗର୍ଣ୍ୟ ହେଲା । ମନୁଷ୍ୟପଦବାଚ୍ୟ ହେବାକୁ ହେଲେ ନିଜର ଚିତ୍ତବୃତ୍ତି ଓ ସ୍ୱଭାବକୁ ଦମନ କରି ବୁଦ୍ଧିର ପ୍ରଧାନତା ସ୍ୱୀକାର କରିବାକୁ ହେବ । ମନନଶୀଳ ହୋଇଥିବାରୁ ଏହି ପ୍ରାଣୀଙ୍କୁ ମନୁଷ୍ୟ ବୋଲି ଯାଉଅଛି ।



## ବାମ ମାର୍ଗ

ପ୍ରତ୍ୟେକ ଜାତି, ସମାଜ ଓ ଦେଶରେ ସମୟେ ସମୟେ କେତେବେଳେ ଭୌତିକ ଓ କେତେବେଳେ ଆଧ୍ୟାତ୍ମିକ ବୃତ୍ତିର ପ୍ରାବଲ୍ୟ ହୋଇଥାଏ । ପୃଥିବୀର ପ୍ରଳୟ ପର୍ଯ୍ୟନ୍ତ ମଧ୍ୟ ଏହାର କ୍ରମ ଚାଲୁ ରହିବ । ମହାଭାରତ ଯୁଦ୍ଧ ପୂର୍ବରୁ ଆମ ଭାରତ ବର୍ଷରେ



ଭୌତିକବାଦର ଖୁବ୍ ପ୍ରାବଲ୍ୟ ଦେଖା ଯାଇଥିଲା । ସେତେବେଳେ ଦେଶରେ ଗୃହଅଡ଼େ ବ୍ୟଭିଚାର ଚାଲିଯାଉ ଥିଲା । ପରସ୍ତ୍ରୀ ଗମନ ଅପରାଧ ବୋଲି ଧରାଯାଉ ନ ଥିଲା । ଜାପାନରେ ମଧ୍ୟ ୪୦।୫୦ ବର୍ଷ ପୂର୍ବେ ପରସ୍ତ୍ରୀ ମୈଥୁନ ଓ ପରପୁରୁଷ ସଂଯୋଗ ପ୍ରକାଶ୍ୟ ଭାବରେ ମଧ୍ୟ ଚାଲୁଥିଲା । ଏହାକୁ ଏକ ନିନ୍ଦନୀୟ ପ୍ରଥା ବୋଲି କେହି ଘୃଣା କରୁ ନ ଥିଲେ । ଭୌତିକ ଯୁଗରେ ଆମ ଦେଶରେ ପରସ୍ତ୍ରୀ ଗମନକୁ ଧର୍ମର ଅଙ୍ଗ ସ୍ୱରୂପ କରି ଦିଆ ଯାଇଥିଲା । ଏହି ଧର୍ମର ନାମ ଥିଲା "ବାମମାର୍ଗ" । ଏହି ଧର୍ମ ବର୍ତ୍ତମାନ ମଧ୍ୟ ଭାରତର କୌଣସି କୌଣସି ପ୍ରାନ୍ତ ଦେଶରେ ଯେପରି ଗୁଜରାଟ, ନେପାଳ ଆଦି କେତେକ ଦେଶର ଅସଭ୍ୟ ସମାଜରେ ଚାଲୁଥିବାରୁ ଶୁଣାଯାଏ । ଏହାକୁ କୁଣ୍ଡା-ପନ୍ଥ ବା କେଞ୍ଚୁଲି-ପନ୍ଥ ମଧ୍ୟ କହନ୍ତି ।

ଏହି ବାମ ମାର୍ଗ ଧର୍ମରେ ପଞ୍ଚମକାର ହେଉଛି—

"ମଦ୍ୟଂମାଂସଂଚ ମତ୍ସ୍ୟଂଶ୍ଚ ମୁଦ୍ରା ମୈଥୁନ ମେବଚ,
ମକାର ପଞ୍ଚକଶ୍ଚୈବ ମହାପାତକ ନାଶନଂ ।"

ଖାଲି ଏତିକି ନୁହେଁ, ଏମାନଙ୍କ ଶାସ୍ତ୍ରରେ ପରସ୍ତ୍ରୀ ଗମନକୁ ମଧ୍ୟ ଧର୍ମସଙ୍ଗତ କରି ଦିଆ ଯାଇଥିଲା । ରୁଦ୍ରଯାମଳ ଗ୍ରନ୍ଥରେ ଲେଖାଅଛି—

ବାରାଙ୍ଗନା ପ୍ରୟାଗଶ୍ଚ ରଜକୀ ପୁଷ୍କରସ୍ତଥା ।
ଚର୍ମକାରୀ ଭବେତ୍‌କାଶୀ ସର୍ବତୀର୍ଥା ରଜସ୍ୱଳା ।

ଅର୍ଥାତ୍—ବେଶ୍ୟାଗମନରେ ପ୍ରୟାଗରେ ତ୍ରିବେଣୀସ୍ନାନ ଫଳମିଳେ, ଧୋବଣୀ ସହିତ ବ୍ୟଭିଚାର କରିଲେ ତୀର୍ଥରାଜ





ପୁଷ୍କରରେ ବାସ କରିବାର ଫଳମିଳେ; ଚମାରୁଣୀ ସହିତ ସମ୍ଭୋଗ କଲେ କାଶି ନିବାସର ଫଳମିଳେ ଏବଂ ରଜସ୍ୱଳା ସ୍ତ୍ରୀ ସହିତ ସହବାସ କଲେ ସମସ୍ତ ତୀର୍ଥର ଫଳ ଲାଭହୁଏ ।

ଉପର ଲିଖିତ ବାମମାର୍ଗ ଉକ୍ତିଗୁଡ଼ିକ କେବେ ଧର୍ମସଙ୍ଗତ ହୋଇପାରେ କି ? ଏହା ପ୍ରକାରାନ୍ତରେ ପରଦାରକରଣକୁ ସ୍ୱୀକୃତି କରୁ ନାହିଁକି ? ତଥାପି ଏହା ମଧ୍ୟ ସମସ୍ତ ଗତିରେ ତିଷ୍ଠି ରହିଥିଲା ।

ଅଧିକ ମଧ୍ୟ ଦେଖିଲୁ, ଏହି ବାମମାର୍ଗ ମାନେ ଶିବଲିଙ୍ଗକୁ ପାର୍ବତୀଙ୍କ ଭଗରେ ସ୍ଥାପିତକରି ପୂଜା କରିବାର ପ୍ରଥା ପ୍ରଚଳନ କରି ଦେଇ ଯାଇ ଅଛନ୍ତି । ଆଜି ମଧ୍ୟ ଆମ ଦେଶରେ ସର୍ବତ୍ର ଶିବ ଲିଙ୍ଗର ପୂଜା ପ୍ରଚଳନ ଅଛି । ଏହା କେବଳ ସେହି ବାମମାର୍ଗି-ମାନଙ୍କର ଦୟା ବୋଲି ବୁଝିବାକୁ ହେବ । ସମୟରେ ଏହି ବାମ ମାର୍ଗ-ପନ୍ଥା ଭାରତବାସୀଙ୍କୁ ଖୁବ୍ ଜୋରରେ ଗ୍ରାସିଥିଲା । ନଗ୍ନମୂର୍ତ୍ତି, ମୈଥୁନାସକ୍ତ ମୂର୍ତ୍ତି, ଓ ଲିଙ୍ଗଯୋନିର ପୂଜା ତାହାର ଚିହ୍ନ ଅଟେ ।

ସେହି ସମୟରେ ପୁରୀର ଜଗନ୍ନାଥମନ୍ଦିର ଏହି ବାମମାର୍ଗି ମାନଙ୍କର ମୁଖ୍ୟ କେନ୍ଦ୍ରସ୍ଥଳ ଥିଲା । ଜଗନ୍ନାଥ ମନ୍ଦିରରେ ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ, ଅଧିକ ମଧ୍ୟ ସମସ୍ତ ଭାରତବର୍ଷର କେତେକ ମନ୍ଦିର ଗାତ୍ରରେ ଯେଉଁ ଅଶ୍ଳୀଳ ମୂର୍ତ୍ତି ସବୁ ଦେଖିବାକୁ ମିଳେ ତାହା ଏହି ବାମମାର୍ଗର ପ୍ରଭାବ ବୋଲି ଅନୁମିତ ହୁଏ ।

ପ୍ରାୟ ୪୫୦୦ ବର୍ଷ ପୂର୍ବେ ପରସ୍ତ୍ରୀଗମନର ପ୍ରଚଳନ ସମସ୍ତ ପୃଥିବୀ ବ୍ୟାପି ଥିଲା । ପ୍ରାଚୀନ ପୁସ୍ତକମାନ ଅଧ୍ୟୟନ କଲେ ଦେଖିବାକୁ ମିଳେ ଯେ ଅନ୍ୟ ଦେଶରେ ପ୍ରତ୍ୟେକ ନବବଧୂ ବିବାହର ଦଶମଦିନ ରାଜସେବା ନିମିତ୍ତ ଉପଢୌକନ ସହ ରାଜନବାକୁ ଯାଉଥିଲେ



ଏବଂ ରାଜା ତାହା ସହିତ ମୈଥୁନ କରୁଥିଲେ । ଅପରାନ୍ତକ ଦେଶର ( ଭାରତବର୍ଷର ପଶ୍ଚିମପ୍ରାନ୍ତ ଦେଶ ବିଶେଷ ) ଶ୍ରେଷ୍ଠ ଓ ଧନୀଲୋକ-ଙ୍କର ସ୍ତ୍ରୀମାନେ ଦେଶର ରାଜାଙ୍କ ପାଖକୁ ଉପଢୌକନ ନେଇକରି ଯାଇଁ ରାଜମୈଥୁନ ଉପଭୋଗ କରି ନିଜକୁ ଭାଗ୍ୟବତୀ ମନେ କରୁଥିଲେ । ବିଦର୍ଭଦେଶର ରାଣୀମାନେ ଦେଶର ସୁନ୍ଦର ଯୁବକ-ମାନଙ୍କୁ ରାତିରେ ଦାସୀମାନଙ୍କ ଦ୍ୱାରା ଅନ୍ତଃପୁରକୁ ନେଇ ଶିଳ'ସ ବାସନା ପୂରଣ କରୁଥିଲେ । ଅପରାନ୍ତକ ଦେଶର ଗରିବ ଲୋକମାନେ ନିଜର ସ୍ତ୍ରୀକୁ ଧନୀ ଓ ଜମିଦାର ମାନଙ୍କର ନିକଟକୁ ପଠାଇ ଦେଉ ଥିଲେ । ସୌରାଷ୍ଟ୍ର ଦେଶରେ ରାଜାଙ୍କ ସହିତ ଆମୋଦ ପ୍ରମୋଦ କରିବାକୁ ସୁନ୍ଦରୀ ସ୍ତ୍ରୀମାନେ ଦଳବାନ୍ଧି ଯାଉଥିଲେ । ଏହି ପ୍ରଥା କେବଳ ଯେ ଭାରତରେ ଥିଲା, ତାହା ନୁହେଁ, ଚୀନ ଦକ୍ଷିଣ ଆମେ-ରିକା, ଇରାକ, ଗ୍ରୀସ ଆଦି ଦେଶମାନଙ୍କର ମଧ୍ୟ ପ୍ରଚଳିତ ଥିଲା ।



## ପରଦାର ସମ୍ବନ୍ଧେ କେତୋଟି କଥା

ପରଦାର ସଂସର୍ଗ ବଡ଼ ନିନ୍ଦନୀୟ; ଶାସ୍ତ୍ରବିରୁଦ୍ଧ ଓ ସମାଜ ବିରୁଦ୍ଧ କାର୍ଯ୍ୟ ଅଟେ । ଏହା ଜାଣି ସୁଦ୍ଧା ପୁରୁଷ ଏହି ମାର୍ଗରେ ପାଦ ବଢ଼ାଏ । ଆମର ଇତିହାସ ପୁରାଣ ଆଦିରେ ଏହାର ଶତ ଶତ ଜ୍ୱଳନ୍ତ ଦୃଷ୍ଟାନ୍ତମାନ ବିଦ୍ୟମାନ ଥିବାର ପୂର୍ବରେ ବର୍ଣ୍ଣନା କରିଅଛୁ । ରାବଣର ସୀତା ହରଣ, ଦ୍ରୌପଦୀର ବିବସ୍ତ୍ର କରଣ ଆଦି ପୌରାଣିକ ଉପାଖ୍ୟାନ, ତଥା ଅଲ୍ଲାଉଦ୍ଦିନ ପଦ୍ମିନୀଙ୍କ ପାଇଁ ଚିତୋର ଆକ୍ରମଣ ଇତ୍ୟାଦି ମୂଳରେ ପରଦାର କଥାଟି ନିହିତ ରହିଅଛି । କୁଳବଧୂ ପାଇଁ, କୌରବ ରମଣୀ ଅମ୍ବା ଓ ଅମ୍ବାଳିକାଙ୍କୁ ସତ୍ୟବତୀ ସେମାନଙ୍କ





ଦେବନ୍ଦ୍ରୁର ବ୍ୟାସଦେବଙ୍କ ସହ ରମଣ କାର୍ଯ୍ୟ କରିବାକୁ ପ୍ରବୃତ୍ତିାଇ ଥିଲେ । ପୁଣି ଶ୍ରୀକୃଷ୍ଣଙ୍କର ରାଧା ଓ ଗୋପୀମାନଙ୍କ ସହ ଯେଉଁ ରାସଲୀଳାର ବର୍ଣ୍ଣନା ଅଛି; ତାହା ପରଦାର କରଣ ଛଡ଼ା ଅନ୍ୟ କ'ଣ ହୋଇପାରେ ? ଏସବୁରୁ ପ୍ରମାଣ ମିଳେ ସେ ଯୁଗରେ କେଡ଼େ ନିର୍ଲଜ ଭାବରେ ପରଦାର କରାଯାଉ ଥିଲା । ନିମ୍ନରେ କୃଷ୍ଣ ଓ ଗୋପୀମାନଙ୍କ ମଧ୍ୟରେ କଥୋପକଥନର ଗୋଟିଏ ରହସ୍ୟମୟ ଶ୍ଳୋକ ଦେଲି—

କୌଣସି ଗୋପୀ କୃଷ୍ଣଙ୍କୁ ଦିନେ କହୁଥିଲା—
ପରସ୍ତ୍ରୀ ଯୌବନଂ ଦୃଷ୍ଟ୍ୱା ଦଗ୍‌ଧକାମାନଳେନ ଚେତ୍,
ସ୍ୱଗଳେ କଳସୌ ବଦ୍ଧ୍ୱା ନିମଜ୍ଜ ଯମୁନା ଜଳେ ।

ଦେଖିକର ଯଦି ପରନାରୀର ଯୌବନ,
ଜ୍ୱଳି ଉଠେ କାମାନଳେ ତେବେ ତତକ୍ଷଣ ।
କଳସୀ ବାନ୍ଧଣି ତୁମ୍ଭେ ଆପଣାର ଗଳେ,
ହରି ! ବୁଡ଼ି ମର ଯାଇ ଯମୁନାର ଜଳେ ।

କୃଷ୍ଣ ଗୋପୀଙ୍କୁ ଉତ୍ତର ଦେଲେ—

କୁଚକୁମ୍ଭୌ ଗଳେ ବଦ୍ଧ୍ୱା ଦ୍ୱୌବାହୁ ରଜ୍ଜୁମେ ଦତ,
ଯୌବନଂ ଯମୁନା ଦୃଷ୍ଟ୍ୱା ତଦ୍‌ଜଳେ ମଜ୍ଜତେ ମୟା ।

କୁଚ କୁମ୍ଭ ଦୁଇ ତୋର ବାନ୍ଧଣି ଗଳାରେ,
ଦୁଇବାହୁ ରଜ୍ଜୁ କର ଲଗାଇ ତହିଁରେ ।
ଯୌବନ ଯମୁନାଜଳେ ତୋହର ଲୋ ସଖୀ
ବୁଡ଼ି ମରିବି ମୁଁ ଆଜି ଦେଖୁଥିବୁ ତୁହି ।



ଶାସ୍ତ୍ର ଓ ସମାଜ ଯାହା କହୁ, ଦେଶର ଆଇନ କାନୁନ ଯାହା ହେଉ, ତଥାପି ମନୁଷ୍ୟ ଶରୀର ଏହି ଦୁର୍ବଳତା ଓ ଅସଂଯମତା ଏଡ଼ିବାର ଉପାୟ ନାହିଁ । ପୃଥିବୀର ପ୍ରାୟ ଅଧିକାଂଶ ପୁରୁଷ ଏହି ଦୋଷରେ ଦୂଷିତ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ପରଦାର ପ୍ରସଙ୍ଗଟି କୌଣସି ପୁସ୍ତକରେ ଅନ୍ତର୍ଭୁକ୍ତ ଦେଖିଲେ ନୀତି ବାଗୀଶମାନେ ବିରକ୍ତି ପ୍ରକାଶ କରି ପାରନ୍ତି । ଏହା ମଧ୍ୟ ସ୍ୱାଭାବିକ । କିନ୍ତୁ ବିଷୟଟାକୁ ଯେତେ ଗୋପନୀୟ ରଖିଲେ ସୁଦ୍ଧା ସେ ଦୋଷ ଦୂର ହୋଇଯିବ ଏହା କଦାପି ନୁହେ । ଏକ ସମୟରେ ସମାଜ ପରଦାର କରୁଥିବା ପୁରୁଷକୁ କଠୋର ଦଣ୍ଡ ଦେଉଥିଲା, ଏପରିକି ସମୟେ ସମୟେ ପୁରୁଷର ଲିଙ୍ଗ ଛେଦନ ଦଣ୍ଡର ବ୍ୟବସ୍ଥା ଥିଲା । ତଥାପି ପରଦାର ବନ୍ଦ ହୋଇ ନ ଥିଲା । ଏଣୁ ଅମ୍ଭେମାନେ ଏହି ପ୍ରସଙ୍ଗଟି ସୂକ୍ଷ୍ମାନୁଭାବରେ ବିଶ୍ଳେଷଣ କରିବାକୁ ଯାଉଛୁ ଯେ,କେଉଁ କାରଣରୁ ପୁରୁଷ ପରଦାର କରିବାକୁ ଯାଏ ଏବଂ କେଉଁ କାରଣରୁ ସ୍ତ୍ରୀ ପରପୁରୁଷରତା ହେବାକୁ ମନ ବଳାଏ । ଏତକ ଜାଣି ପାରିଲେ ସମାଜର ଅଧିକାଂଶ ସ୍ତ୍ରୀ ପୁରୁଷ ସେଥି ପ୍ରତି ସାବଧାନ ରହିଲେ ସେମାନଙ୍କର ଦାମ୍ପତ୍ୟ ପ୍ରେମ ସୁଦୃଢ଼ ହୋଇ କେହି ଆଉ ଏ ପାପପଥରେ ଗୋଡ଼ ବଢ଼ାଇବେ ନାହିଁ ।

ପରଦାର ଏକ ଘୋର ଗର୍ହିତ କର୍ମ । ତଥାପି ଆମର ପ୍ରାଚୀନ କାମଶାସ୍ତ୍ର ରଚୟିତାମାନେ ତହିଁର ଉଲ୍ଲେଖ ଓ ଉପାୟମାନ ବର୍ଣ୍ଣିତ କରିଯାଇ ଅଛନ୍ତି । କାରଣ ଶାସ୍ତ୍ର ସବୁକାଳ ଓ ସବୁ ସମାଜ ପାଇଁ ଲିଖିତ । ଏଣୁ ଅସ୍ମମାନଙ୍କର ଏହି ଗ୍ରନ୍ଥ ନୀତିଶାସ୍ତ୍ର ନୁହେ ବୋଲି





ଆମ୍ଭେମାନେ ବାଧ୍ୟ ହୋଇ ଏହାର ଆଧୁନିକ ଗବେଷଣା କରିଅଛୁ । ଉଦ୍ଦେଶ୍ୟ, ଏହାର ଅନୀତିକୁ ଯେତେଦୂର ସଂକୀର୍ଣ୍ଣ ସୀମାରେଖାରେ ରଖା ଯାଇପାରେ ତହିଁର ଚେଷ୍ଟା କରିବା । ଅତଏବ ମଧ୍ୟ ଆମର ଏହି ଶାସ୍ତ୍ରରେ ଏ ବିଷୟଟି ନ ରହିଲେ ଶାସ୍ତ୍ରଟି ଅପୂର୍ଣ୍ଣାଙ୍ଗ ରହିଯିବ ।

ପରଦାର ଦ୍ୱାରା କ୍ରମେ ସମାଜର ଅନାଚାର ବଢ଼େ । ବର୍ଣ୍ଣସଙ୍କର ସନ୍ତାନ ଜନ୍ମ ଲଭନ୍ତି । ଲୋକାପବାଦ ସହିତ ଅନେକ ଭୟାନକ ବ୍ୟାଧି ମଧ୍ୟ ଉତ୍ପନ୍ନ ହୋଇ ସମାଜକୁ ଦୁର୍ବଳ ଓ ନିସ୍ତେଜ କରେ । କାରଣ, କେଉଁ ପୁରୁଷ ବା ସ୍ତ୍ରୀ ଠାରେ କି ପ୍ରକାର ଯୌନବ୍ୟାଧି ଅଛି ବା ନ ଅଛି ତାହା ଜାଣିବାର ଉପାୟ ନାହିଁ । କିନ୍ତୁ ବ୍ୟାଧି ସଂକ୍ରମିତ ହୋଇ ଗଲେ ତାହା ଭବିଷ୍ୟତ ବଂଶଧରଙ୍କୁ ଦୂଷିତ କରେ । ଏଣୁ ଏହା ସର୍ବଥା ବର୍ଜ୍ଜନୀୟ ।



## ଦେଶରେ ପରଦାର ବୃଦ୍ଧି ପାଇବାର କାରଣ

ଆମ ଦେଶରେ 'ପରଦାର' ଏହି ମହାପାପଟି ବ୍ୟାପକ ହୋଇ ଯାଇଅଛି । ପରଦା ପ୍ରଥାଟି ମଧ୍ୟ ଗୋଟିଏ କାରଣ, ଯାହା ଯୋଗୁ ଅସଂଯମୀ ଓ ଲମ୍ପଟ ପୁରୁଷର ମନ ସ୍ତ୍ରୀକୁ ଦେଖିବା ପାଇଁ କୌତୂହଳୀ ହୁଏ । ଅଜ୍ଞାନ ଓ ମୂର୍ଖତା ଯୋଗୁ ପୁରୁଷର ଓ ସ୍ତ୍ରୀର ହିତାହିତ ଜ୍ଞାନ ରହେ ନାହିଁ । ଆମ ଭାରତବର୍ଷର କେତେକ ପ୍ରଦେଶରେ ପୁରୁଷ ତୁଳନାରେ ସ୍ତ୍ରୀ ସଂଖ୍ୟା କମ୍ । ଏଣୁ ପ୍ରତ୍ୟେକ ପୁରୁଷକୁ ବିବାହର ସୁଯୋଗ ମିଳେ ନାହିଁ । ଅବିବାହିତ ପୁରୁଷ ବ୍ରହ୍ମଚର୍ଯ୍ୟ ଓ



ସଂଯମ ରକ୍ଷା କରି ନ ପାରି ଅନ୍ୟ ସ୍ତ୍ରୀକୁ ଶିକାର କରି ବୁଲେ । ସମାଜ ଏପରି ପୁରୁଷକୁ କୌଣସି ପ୍ରକାର ଦଣ୍ଡ ଦେଇ ପାରେ ନାହିଁ । ସରକାର ଯଦି ଏଥିରେ ହସ୍ତକ୍ଷେପ କରନ୍ତି ଏବଂ ପୁରୁଷକୁ ଦୋଷୀ ସାବ୍ୟସ୍ତ କରି ଦଣ୍ଡ ଦିଅନ୍ତି, ତଥାପି ସ୍ତ୍ରୀର ସର୍ବନାଶ ହୁଏ । ପ୍ରକାଶ୍ୟରେ ଭ୍ରଷ୍ଟା ବୋଲି ପ୍ରମାଣିତ ହୋଇ କୁଳରୁ ବାହାରି ଯାଇ ବେଶ୍ୟାବୃତ୍ତି ଅବଲମ୍ବନ କରେ । ଆମ ହିନ୍ଦୁ ସମାଜରେ ତା'କୁ ପୁନର୍ଗ୍ରହଣ କରିବାର ବ୍ୟବସ୍ଥା ନାହିଁ । ତେଣୁ ସେହି ପତିତା ସ୍ତ୍ରୀଲୋକ ନିଜର ଜୀବିକା ନିର୍ବାହ ପାଇଁ ଏବଂ ରାଗରେ ପ୍ରତିଶୋଧ ନେବା ପାଇଁ ସେହି ସମାଜପତିମାନଙ୍କୁ ନିଜ ଜାଲରେ ପକାଇ ପ୍ରତିଶୋଧ ନିଏ । ତେବେ ଆଜି କାଲି ଅନାଥାଶ୍ରମ ମାନ ସ୍ଥାପିତ ହୋଇ ଭୁଲ ବାଟରେ ଗୋଡ଼ ବଢ଼ାଉଥିବା ନାରୀମାନଙ୍କୁ ଆଶ୍ରୟ ଦିଆଯାଉ ଅଛି ।

ଭାରତ ବର୍ଷ ଗ୍ରୀଷ୍ମପ୍ରଧାନ ଦେଶ । ଏହାର ପ୍ରାକୃତିକ ସମ୍ପଦ ସବୁଠାରୁ ବେଶୀ । ଏଣୁକରି ଲୋକେ ଅଳ୍ପ ପରିଶ୍ରମରେ ଜୀବିକା ନିର୍ବାହ କରି ପାରନ୍ତି । ଫଳରେ ଲୋକଙ୍କ ମନରେ ଅଳ୍ପ ବୟସରେ କାମଭାବର ଉଦ୍ରେକ ହୋଇଥାଏ ଏବଂ ସେ ସମାଜର କଠୋର ବନ୍ଧନକୁ ଏଡ଼ି କାମ ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ନାନାଦି ଅସତ୍ ଉପାୟ ଖୋଜି ବୁଲେ ।

ମନୁଷ୍ୟର ଏହି ପ୍ରକୃତି ହେବାର କାରଣ, ସମାଜରେ ବ୍ରହ୍ମଚର୍ଯ୍ୟ ଶିକ୍ଷାର ଅଭାବ ହେତୁ ତା'ର ମନରେ ସଦା ସର୍ବଦା କାମର ତରଙ୍ଗ ଖେଳୁଅଛି । ଚକ୍ଷୁକର୍ଣ୍ଣାଦି ପଞ୍ଚେ-ନ୍ଦ୍ରିୟମାନେ ନିଜ ନିଜର ସ୍ୱାଭାବିକ କ୍ରିୟା ଗୁଣ ବଶତଃ ଏହି କାମ





ତରଙ୍ଗ ବୃଦ୍ଧି କରାଉଥାନ୍ତି । ଏହା ମାତ୍ରାଧିକ୍ୟ ଘଟିଲେ ମନୁଷ୍ୟ ଉଚ୍ଛୃଙ୍ଖଳ ହୋଇ ପଡ଼େ ଏବଂ ସେ ପଶୁ ସଙ୍ଗେ ସମାନ ହୁଏ ।

କାମବିଜ୍ଞାନ ପ୍ରଥମ ଖଣ୍ଡରେ "ବିବାହରେ ଜ୍ୟୋତିଷ" ପରିଚ୍ଛେଦରେ କୁହାଯାଇ ଅଛି ଯେ ଆମ ଦେଶରେ ବିବାହ ପୂର୍ବରୁ ଉଭୟ ଜାତକର ଦଶଗୋଟି ମେଳକ ଯୋନିକୂଟାଦି ବିଚାର କରି ପାତ୍ର ପାତ୍ରୀର ନିର୍ଣ୍ଣୟ କରାଯାଏ । ସେଥିରେ ନାଗ ନାଡ଼ୀ ଓ ନର ରାକ୍ଷସ ଆଦିର ଯେ ବିଚାର ଅଛି, ତାହାର ମୂଳରେ ଗୋଟିଏ ସୂକ୍ଷ୍ମ ତତ୍ତ୍ୱ ନିହିତ ଅଛି । ଅଧୁନା ମଧ୍ୟ କେତେକ ବୃଦ୍ଧ ଲୋକେ ବର କନ୍ୟାଙ୍କର ହସ୍ତ ପାଦ ଆଦିର ସାମୁଦ୍ରିକ ଚିହ୍ନ ଦେଖି, ଏ ବରକୁ ଏ କନ୍ୟା ଉପଯୁକ୍ତ କି ନା, ନିର୍ଣ୍ଣୟ କରିଥାନ୍ତି । ଏ ସବୁର ପ୍ରକୃତ ତଥ୍ୟ ଯାହା, ଆଜିକାଲି ସେ କଥା ଉପରେ ବାସ୍ତବ ଦୃଷ୍ଟି ଦିଆ ଯାଉ ନାହିଁ । କିନ୍ତୁ ପ୍ରକୃତ ତଥ୍ୟ ହେଉଛି ଯେ ଉଭୟ ସ୍ତ୍ରୀ ପୁରୁଷଙ୍କର ସଂଯୋଗ ଘଟିଲେ ଦାମ୍ପତ୍ୟ ସୁଖ ଉଭୟଙ୍କର ସୁଖକର ହେବ କି ନା, ଜନନେନ୍ଦ୍ରିୟର ସମତା ଅଛି କି ନା; ଏହିସବୁ ଭାବିବାର କଥା । ଏଣୁ ପଦ୍ମିନୀକୁ ଶଶକ ଜାତୀୟ ପୁରୁଷ, ଚିତ୍ରିଣୀକୁ ମୃଗ ଜାତୀୟ ପୁରୁଷ, ଶଙ୍ଖିନୀକୁ ବୃଷ ଜାତୀୟ ପୁରୁଷ ଓ ହସ୍ତିନୀକୁ ଅଶ୍ୱ ଜାତୀୟ ପୁରୁଷ ଉପଯୁକ୍ତ ବୋଲି ପ୍ରାଚୀନ ରତିଶାସ୍ତ୍ର ବର୍ଣ୍ଣନା କରିଅଛି । ଏହା ଆମର ବିବାହ ବିଜ୍ଞାନ ୧୯୪ ପୃଷ୍ଠାରେ ଦ୍ରଷ୍ଟବ୍ୟ ।

କେତେକ ପୁରୁଷ ବଡ଼ ଚଞ୍ଚଳ ପ୍ରକୃତିର ଥାଆନ୍ତି । ସେମାନେ ନିତ୍ୟ ନୂତନ ସମ୍ଭୋଗ ଇଚ୍ଛା କରନ୍ତି । ଏହିପରି କେତେକ ସ୍ତ୍ରୀ ମଧ୍ୟ ଅଛନ୍ତି ସେମାନଙ୍କ ପ୍ରକୃତି ମଧ୍ୟ ବଡ଼ ଚଞ୍ଚଳ । ସେମାନେ ମଧ୍ୟ



ନିତ୍ୟ ନୂତନ ପୁରୁଷ ସମ୍ଭୋଗ କାମନା କରନ୍ତି । ଏହି ସବୁ ଉପରୋକ୍ତ କାରଣମାନ ହିଁ ପରଦାର ବୃଦ୍ଧି ପାଇବାର ପ୍ରଧାନ ଉଦ୍ଦେଶ୍ୟ ।



## ଅନ୍ୟ ସ୍ତ୍ରୀ ଗମନ କେଉଁ ଅବସ୍ଥାରେ କର୍ତ୍ତବ୍ୟ

ଏହା ନିତାନ୍ତ ଗର୍ହିତ କାର୍ଯ୍ୟ । ଏକଥା ଜାଣି ସୁଦ୍ଧା ଆମର ପ୍ରାଚୀନ ଆର୍ଯ୍ୟଋଷିମାନେ କାମଶାସ୍ତ୍ରରେ ପରଦାର କରିବାର ଉପାୟମାନ ବର୍ଣ୍ଣନା କରି ଯାଇଛନ୍ତି । କାରଣ; ଶାସ୍ତ୍ର ସବୁ ସମସ୍ତ ସବୁ ସମାଜ ପାଇଁ ଲିଖିତ । ଏହାକୁ କୌଣସି ଗଣ୍ଡି ମଧ୍ୟରେ ଆବଦ୍ଧ ରଖିବା ଉଚିତ ନୁହେଁ । ଆମ୍ଭେମାନେ ମଧ୍ୟ ଏହି ପ୍ରସଙ୍ଗକୁ, ଇଚ୍ଛା ନ ଥିଲେହେ ବର୍ଣ୍ଣନା କରିବାକୁ ବାଧ୍ୟ ହେଉଅଛୁ । ଏହା ବୋଲି ପାଠକେ ଯେପରି ନ ଭାବନ୍ତି ଯେ, ଆମ୍ଭେମାନେ ପରଦାର କ୍ରିୟାକୁ ସମର୍ଥନ କରୁଅଛୁ ।

କିନ୍ତୁ ପରଦାରକରଣ ନିତାନ୍ତ ନିନ୍ଦନୀୟ ହେଲେ ମଧ୍ୟ ତାହା ଯେ ନ ଘଟୁଛି ବା ନ ଘଟିବ ଏହା ମଧ୍ୟ କେହି କହି ପାରିବେ ନାହିଁ । ଏହାର ପ୍ରତିକାର ବା ପ୍ରତିଷେଧ ଖାଲି ଆଇନ ବଳରେ ହୋଇପାରିବ ଏହା ମଧ୍ୟ ଅସମ୍ଭବ । ଏଥିପାଇଁ ଲୋଡ଼ା ଦେଶରେ ନୀତିଶିକ୍ଷାର ପ୍ରଚାର, ସଂଯମ ଓ ଧର୍ମଭାବର ଅଭିବୃଦ୍ଧି । ଯେତେ ଯାହା କଲେ ମଧ୍ୟ ଏହି ପ୍ରଥା ଯେ ସମୂଳେ ଲୋପ ପାଇବ, ଏହା ଅଶାତୀତ । ଏଣୁ ତାହାର ଆବଶ୍ୟକତା, ସୀମା, ଉପାୟ, ସତର୍କତା ଓ ବିପଦ ଏ ସବୁ ବିଷୟରେ ପଦେ ଅଧେ ସୂଚାଇବା ଆମ୍ଭେମାନେ ଉଚିତ ମନେ କରୁ । ପୁରାତନ ଯୌନଶାସ୍ତ୍ର ବିଜ-





ରହସ୍ୟ, ଅନଙ୍ଗରଙ୍ଗ, ରତିରତ୍ନ ପ୍ରଦୀପିକା ଆଦି ଗ୍ରନ୍ଥରେ ଏ ସମ୍ବନ୍ଧେ ନାନା ଉଦାହରଣ ଦିଆ ଯାଇଅଛି ।

ଶାସ୍ତ୍ରରେ 'ଆପଦ ଧର୍ମ' ବୋଲି ଗୋଟିଏ ନିର୍ଦ୍ଦେଶ ଅଛି । ମନୁଷ୍ୟ ସେ ସମୟରେ କିଛି ଅଧର୍ମ କରି ପକାଇଲେ ସେ କ୍ଷମା ପାଇ ପାରେ । ଏହି 'ଆପଦ ଧର୍ମ' ଯୁକ୍ତି ଅନୁସାରେ ଆମ୍ଭମାନଙ୍କର ପ୍ରାଚୀନ ଶାସ୍ତ୍ରକାରମାନେ ପରଦାର ପ୍ରଥାକୁ ମଧ୍ୟ ଆଶ୍ରୟ ଦେଇ ଅଛନ୍ତି । ଯୌନ ଶାସ୍ତ୍ର ଅନଙ୍ଗରଙ୍ଗରେ ଗୋଟିଏ ଶ୍ଳୋକ ଅଛି ଯଥା—

ନାରୀ ପ୍ରୋନ୍ନତ ଯୌବନା ଅଭିଲଷିତଂ କାନ୍ତାଂ ନ ଚେଦାପ୍ନୁୟା—
ଦୁନ୍ମାଦଂ ମରଣଂ ଚ ବିନ୍ଦନ୍ତି ତଦା କନ୍ଦର୍ପ ସମ୍ମୋହିତା ।
ସଂଚିନ୍ତ୍ୟଂ ସମାଗତାଂ ପରବଧୂଂ ରତ୍ୟର୍ଥିନୀଂ ସ୍ୱେଚ୍ଛୟା ।
ଗଚ୍ଛେତ୍ରକାପିନ ସର୍ବଦା ସୁମତ ମାନିତ୍ୟାହି ବାତ୍ସ୍ୟାୟନଃ ॥

ଅର୍ଥାତ୍—ଯଦି କୌଣସି କାମବିହ୍ୱଳା ରମଣୀ ତା'ର ଆକାଂକ୍ଷିତ ପୁରୁଷକୁ ନ ପାଇ ବିଜ-ପାଗଳିନୀ ହୋଇ ମରଣମୁଖୀ ହୁଏ, ସେପରି ଅବସ୍ଥାରେ ସେ ଯଦି କୌଣସି ପୁରୁଷକୁ ରତି ପ୍ରାର୍ଥନା କରେ ତେବେ ତାହାର ସେ ବାସନା ପୂରଣ କରିବା ଅବଶ୍ୟକ । ସେହିପରି ଅନ୍ୟ ସ୍ତ୍ରୀକୁ ଦେଖି କୌଣସି ପୁରୁଷ ଯଦି ମରଣୋନ୍ମୁଖ ହୁଏ, ଜୀବନ ରକ୍ଷା ପାଇଁ ସେ ପୁରୁଷ ମଧ୍ୟ ପରଦାର କରିପାରେ ।

ମୋ'ର ଶତ୍ରୁ ତା'ର ନିଜ ସ୍ତ୍ରୀର ଅତି ବଶୀଭୂତ, ମୁଁ ଯଦି ତା'ର ସ୍ତ୍ରୀ ସହିତ ସହବାସ କରି ତାକୁ ମୋ ବଶକୁ ଆଣି ପାରେ, ତେବେ ସେ ସ୍ତ୍ରୀ ତା'ର ସ୍ୱାମୀକୁ ମୋ ସଙ୍ଗେ ଶତ୍ରୁତା କରିବାରୁ ନିବୃତ୍ତ ହେବାକୁ ବାଧ୍ୟ କରି ପାରେ ।



ଗୋଟିଏ ସ୍ତ୍ରୀର ସ୍ୱାମୀ ପ୍ରବଳ ପରାକ୍ରାନ୍ତ ଓ ଧନଶାଳୀ । ସେ ଲୋକ ମୋର ଶତ୍ରୁ ସଙ୍ଗେ ଯୋଗ ଦେଲେ ମୋ'ର ସର୍ବନାଶ ଘଟି ପାରେ । ମୁଁ ଯଦି ସେହି ସ୍ତ୍ରୀ ସହିତ ସହବାସ କରି ମୋ ପ୍ରତି ଆସକ୍ତା କରି ପାରେ ତେବେ ସେ ସ୍ତ୍ରୀ ତା'ର ସ୍ୱାମୀକୁ ମୋ ବିରୁଦ୍ଧରେ ନ ଯିବାକୁ ଏବଂ ମୋ ଶତ୍ରୁ ସଙ୍ଗେ ଯୋଗ ନ ଦେବାକୁ ବାଧ୍ୟ କରାଇ ପାରେ, ଏହା ଦ୍ୱାରା ମୋ'ର ଉପକାର ହେବ, ଶତ୍ରୁ ମଧ୍ୟ ପରାଜିତ ହେବ ।

ମୋ'ର ଅର୍ଥାଭାବ ଘଟି ପରିବାର ପୋଷଣରେ ଅସୁବିଧା ଘଟୁଅଛି । କୌଣସି ଧନୀ ଲୋକର ସ୍ତ୍ରୀକୁ ଯଦି ମୁଁ ସହବାସ ଦ୍ୱାରା ବଶୀଭୂତା କରିପାରେ ତେବେ ସେ ସ୍ତ୍ରୀଠାରୁ ମୁଁ ଧନ ପାଇବାର ସମ୍ଭାବନା । କିମ୍ବା କୌଣସି ଲୋକ ମୋ'ର ସର୍ବସ୍ୱ ଅପହରଣ କରିଅଛି । ମୁଁ ଯଦି ତା'ର ସ୍ତ୍ରୀକୁ ସ୍ୱବଶରେ ଆଣି ପାରେ ତେବେ ହୃତ ଧନ ଫେରି ଆସିବାର ସମ୍ଭାବନା ।

କୌଣସି ଫେରାର ଆସାମୀ ବା ଲୁକାୟିତ ଶତ୍ରୁକୁ ଧରିବା ପାଇଁ ଅମୁକ ଗୃହସ୍ୱାମୀର ସ୍ତ୍ରୀ ସଙ୍ଗେ ପ୍ରଣୟ ଆବଶ୍ୟକ । ଏହା ବିବେଚିତ ହେଲେ ଲୋକେ ରାଜଆଦେଶରେ ପରଦାର କରିପାରନ୍ତି ।

ତଥାପି ଗୋଟିଏ କଥା ପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ ଯେ, ଯଦି କୌଣସି ପରଦାର ସତୀ, ସାଧ୍ୱୀ, ପତିବ୍ରତା, ଧର୍ମପରାୟଣା ହୋଇଥାଏ, ସେ ହେଉଛି ଆମ୍ଭମାନଙ୍କ ସମାଜର ଗୃହଲକ୍ଷ୍ମୀ ସ୍ୱରୂପ । ସେହିମାନଙ୍କ ପୁଣ୍ୟ ବଳରେ ସେମାନଙ୍କ ପରିବାରର ଓ ସେ ଗ୍ରାମର, ଦେଶ ଓ ସମାଜର ଅଶେଷ କଲ୍ୟାଣ ସାଧିତ ହେବ । ଏଣୁ ଏପରି ଲକ୍ଷ୍ମୀସଦୃଶା ଦେବୀ ଦେଶ ଓ ଦଶର କଲ୍ୟାଣକାରିଣୀ

ପରଦାର ପ୍ରତି ଯେଉଁ ପାଷାଣ୍ଡ ପାପଦୃଷ୍ଟି ନିକ୍ଷେପ କରେ ଓ ତାଙ୍କୁ ପାପ ପଥକୁ ଟାଣିଆଣିବାକୁ ଚେଷ୍ଟା କରେ, ତା ଠାରୁ ବଳି ପାପୀ ଓ ସମାଜର କ୍ଷତିକାରକ କେହି ନାହିଁ କହିଲେ ଚଳେ ।

ଶାସ୍ତ୍ରର 'ଆପଦ ଧର୍ମ' ନିର୍ଦ୍ଦେଶାନୁସାରେ ଯଦି ଏହି ଘୃଣିତ ପ୍ରଥା ଆଚରଣ କରିବାକୁ ହୁଏ ତେବେ ତାହା ନିମ୍ନଲିଖିତ ସ୍ତ୍ରୀ ମାନଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରେ—(୧) ବେଶ୍ୟା ପଣ ଆଚରଣ କରୁଥିବା ସାଧାରଣ ସ୍ତ୍ରୀ, (୨) ବ୍ୟଭିଚାରିଣୀ ରମଣୀ ବୋଲି ଆଗରୁ ଜଣାଥିବା ସ୍ତ୍ରୀ ଲୋକ, ଏହିପରି ସ୍ଥଳେ ଏହା ପ୍ରଯୁଜ୍ୟ । ତଥାପି ଏହା ଆଚରଣ କରିବା ମଧ୍ୟ ଉଚିତ ନୁହେଁ ।

ଶୀର୍ଷ ବର୍ଣ୍ଣିତ କାରଣ ଗୁଡ଼ିକ ବଶତଃ ପରଦାରକୁ ଶାସ୍ତ୍ର ସମର୍ଥନ କରୁଥିଲେ ସୁଦ୍ଧା ଏହା ପର ଘୃଣ୍ୟ, ସମାଜର କ୍ଷତିକାରକ ପ୍ରଥା ଆଉ ନାହିଁ କହିଲେ ଚଳେ ।



## ନାରୀ ଚରିତ୍ର ପରୀକ୍ଷା

ତେଷ ସାଧ୍ୱମସାଧ୍ୱତ୍ୱଂ ଗମ୍ୟତ୍ୱମାୟତିଂ
ବୃତ୍ତିଂ ଗୃଢ଼ିତ ଏବ ପରୀକ୍ଷେତେ—( ବାତ୍ସ୍ୟାୟନ )

ଏହି ନାରୀକୁ ନିଜର ବଶକୁ ଆଣି ହେବ କି ନାହିଁ, ବିଶ୍ୱାସ ଯୋଗ୍ୟା କି ନା, ସମ୍ଭୋଗ କରିବାର ଉପଯୁକ୍ତା ଅଟେ କି ନା, ଅଥବା କୁଷ୍ଠ ବା ଉନ୍ମାଦାଦି ସଂକ୍ରାମକ ରୋଗ ପୀଡ଼ିତା କି ନୁହେଁ, ଏହା ସଙ୍ଗେ ସମ୍ଭୋଗ କଲେ ସ୍ୱାସ୍ଥ୍ୟ ଓ ସମାଜ ଉପରେ କି ପ୍ରଭାବ ପଡ଼ି ପାରେ, ତା'ର ଓ ମୋର ଉଭୟଙ୍କର ମାନସିକ ପ୍ରବୃତ୍ତି ମଧ୍ୟରେ



ସାମଞ୍ଜସ୍ୟତା ଅଛି କି ନା, ଅଧିକନ୍ତୁ ମଧ୍ୟ ସ୍ତ୍ରୀ ଏ ପଥରେ ଗୋଡ଼ ବଢ଼ାଇବା ପୂର୍ବରୁ ପୂର୍ବାପର ବିଚାର, ସମ୍ଭବ, ଅସମ୍ଭବ ଓ ଧର୍ମାଧର୍ମ ବିବେଚନା, ତଥା ବିପଦ ଆପଦ ଭଲଭାବରେ ପରୀକ୍ଷା କରି ଦେଖିବା ଉଚିତ । ନଚେତ୍ ଧରା ପଡ଼ିଲେ ଦୁଇକୂଳକୁ ଘୋର କଳଙ୍କ ।



## କାମ-ବିକାରର ଦଶ ଅବସ୍ଥା

ଅନ୍ୟସ୍ତ୍ରୀ ଗମନ କରିବାରେ ଅନେକ କାରଣ ଥିଲେ ମଧ୍ୟ ଆତ୍ମରକ୍ଷା ହେଉଛି ସର୍ବପ୍ରଧାନ । ଅମୁକ ସ୍ତ୍ରୀକୁ ନ ପାଇ ଅମୁକ ଲୋକ ଆତ୍ମହତ୍ୟା କରିବା ବା ଅମୁକ ପୁରୁଷକୁ ନ ପାଇ ଅମୁକ ସ୍ତ୍ରୀ ଆତ୍ମଘାତିନୀ ହେବା, ଏହାର ଭୂରିଭୂରି ପ୍ରମାଣ ଦେଖିବାକୁ ମିଳେ । କାମରିପୁ ପ୍ରବଳତମ ହେଲେ ଏବଂ ତା'ର ଚରିତାର୍ଥ ନ ହେଲେ ପୁରୁଷ ବା ସ୍ତ୍ରୀ ଦୁହିଁଙ୍କ ମନରେ କ୍ରମେ କ୍ରମେ ଦଶଟି ଅବସ୍ଥା ଜାତ ହୋଇ ଥାଏ । ଆମର ବରେଣ୍ୟ କବି ଅଭିମନ୍ୟୁ, ଉପେନ୍ଦ୍ରଭଞ୍ଜ ଆଦି ଏହାକୁ ଦଶାବିକାର ବୋଲି ସେମାନଙ୍କ କାବ୍ୟରେ ବର୍ଣ୍ଣନା କରିଅଛନ୍ତି । ତାହା ପୁରୁଷ ପକ୍ଷେ ବର୍ଣ୍ଣନା କରାଗଲା—

**ନେତ୍ରପ୍ରୀତି**—ପରସ୍ତ୍ରୀ ଦର୍ଶନରେ ତାକୁ ଶୃଙ୍ଗାର କରିବାରେ ଇଚ୍ଛା ଜନ୍ମିଲେ ପୁରୁଷ ମନରେ କାମର ଉଦ୍ରେକ ହୁଏ । ଏଣୁ ତା'ର ଚକ୍ଷୁ ଅତି ଆନନ୍ଦ ପୂର୍ଣ୍ଣ ଓ ସ୍ନିଗ୍ଧଭାବ ଧାରଣ କରେ ।





**ମନୋଭଙ୍ଗ**—ନେତ୍ରପ୍ରୀତି ଘଟିଲାପରେ ବିଷୟ ପ୍ରାପ୍ତି ନ ଘଟିଲେ ମାନସିକ ଅସନ୍ତୋଷ ଘଟେ । ଏହି ଅସନ୍ତୋଷକୁ ମନୋଭଙ୍ଗ କୁହାଯାଏ ।

**ସଙ୍କଳ୍ପୋତ୍ପତ୍ତି**—ତାହା ପରେ କିପରି ସେ ସ୍ତ୍ରୀକୁ ପାଇବ, ଏହାର ଉପାୟ ସ୍ଥିର କରିବାକୁ ସ୍ଥିର ସଙ୍କଳ୍ପ ହୁଏ ।

**ନିଦ୍ରାଚ୍ଛେଦ**—ସେହି ସଙ୍କଳ୍ପ ଦ୍ୱାରା ଆଉ ଭଲ ନିଦ ହୁଏ ନାହିଁ ।

**କୃଶତା**—ଏହି ନିଦ୍ରାଚ୍ଛେଦରୁ ଦେହ କ୍ରମଶଃ କ୍ଷୀଣ ହୋଇ କୃଶତା ପ୍ରାପ୍ତ ହୁଏ ।

**ବିଷୟବ୍ୟାବୃତ୍ତି**—ଅନ୍ୟ ବିଷୟବାସନା ଭଲ ଲାଗେ ନାହିଁ । ସେହି ରମଣୀ ଚିନ୍ତାରେ ଦିନ ରାତି ଘାରି ହୋଇ ବିଷୟ ପ୍ରତି ବିତୃଷ୍ଣା ଜନ୍ମେ ।

**ଲଜ୍ଜାପ୍ରଣାଶ**—ବିଷୟବ୍ୟାବୃତ୍ତ ହେଲେ କ୍ରମଶଃ ଲଜ୍ଜାପ୍ରଣାଶ ଉପସ୍ଥିତ ହୁଏ । ତତ୍ପରେ ସେ ଲୋକ ନିର୍ଲଜ୍ଜ ହୋଇ ପଡ଼େ । ଗୁରୁ ଗୁରୁଜନମାନଙ୍କୁ ଭୟ କରେ ନାହିଁ ।

**ଉନ୍ମାଦାବସ୍ଥା**—ଲଜ୍ଜା ଓ ଭୟ ନ ଥିବାରୁ ସେ ଉନ୍ମାଦାବସ୍ଥା ପ୍ରାପ୍ତ ହୁଏ ।

**ମୂର୍ଚ୍ଛାଭାବ**—ତା'ର ପରେ ସ୍ୱାସ୍ଥ୍ୟ ଭଙ୍ଗ ହୋଇ ମୂର୍ଚ୍ଛାଭାବ ଧରେ ।

**ପ୍ରାଣତ୍ୟାଗ**—ମୂର୍ଚ୍ଛାଭାବରୁ ପ୍ରାଣତ୍ୟାଗ ପର୍ଯ୍ୟନ୍ତ ଘଟେ ।



କିନ୍ତୁ ଗୋଟିଏ କଥା ମନେ ରଖିବାକୁ ହେବ ଯେ; ପୁରୁଷ ସୁଲଭ ସ୍ତ୍ରୀକୁ ଅବଜ୍ଞା କରେ ଏବଂ ଦୁର୍ଲଭ ସ୍ତ୍ରୀକୁ ଆକାଂକ୍ଷା କରେ । ଏହା ପ୍ରାୟ ଦେଖିବାକୁ ମିଳେ ।



## କେଉଁ ସ୍ତ୍ରୀମାନେ ସହଜରେ ପର ପୁରୁଷଗତା ହୁଅନ୍ତି ନାହିଁ ।

ନିଜର ସ୍ୱାମୀ-ଅନୁରକ୍ତା । ଯେଉଁ ସ୍ତ୍ରୀ କେବଳ ସନ୍ତାନ ପାଇଁ ସଙ୍ଗମ କରେ ସୁଖଭୋଗ ପାଇଁ ନୁହେଁ । ଯାହାର ଯୁବାବସ୍ଥା ବିତି-ଯାଇ କାମୁକତା କମିଯାଇଛି । ଦୁଃଖରେ ମ୍ରିୟମାଣା ହୋଇ ଯାହାର ରତିଲାଳସା ନାହିଁ । ଯାହାର ସ୍ୱାମୀ ସବୁବେଳେ ପାଖରେ ବିଦ୍ୟ-ମାନ । ପ୍ରତିଷ୍ଠା ହରଣ ହେବା ଭୟରେ କ୍ରୋଧୋଦୟ ହେବା ଏବଂ କ୍ରୋଧରୁ ପର ପୁରୁଷ ଉପରେ ବିରକ୍ତ । ସମ୍ଭୋଗ କରିବାରେ ଅଶକ୍ତ ହୋଇ ଭୋଗ ବାସନାରେ ବିରକ୍ତ ପ୍ରାଜ୍ଞା । ଏ ପୁରୁଷ କୁଆଡ଼େ ଚାଲିଯିବ ଭବିଷ୍ୟତ ଆଶା ଏହାଠାରେ ନାହିଁ । କଥା ପ୍ରକଟ ହୋଇ ଗଲେ ଅପମାନରେ ମୁଣ୍ଡ ଟେକି ହେବ ନାହିଁ । ଏହି ମିତ୍ର ସଙ୍ଗ ଭେଦ କରିଲେ ଏ କଥା ପଦାରେ ପକାଇ ଦେବ ଏଥିରେ ମୋ'ର ଅବଜ୍ଞା ହେବ । ଏହି ପୁରୁଷ ବଡ଼ ଶୁଷ୍କ ଓ ନୀରସ ଏପରି ଅଭିଯୋଗ ଆଣିବା ସ୍ତ୍ରୀଲୋକ । ଏ ପୁରୁଷ ବଡ଼ ତେଜସ୍ୱୀ ଏ କଥା ଭାବି ଯେଉଁ ସ୍ତ୍ରୀ ଧାବିତ ହୁଏ । ଏହି ପୁରୁଷ ଶକ୍ତିଶାଳୀ ଓ କାମୀ ଅଟେ କିନ୍ତୁ ମୁଁ ମୃଗୀ, ସ୍ୱଳ୍ପମାତ୍ର ଅଟେ ଏ କଥା ଭାବିବା ସ୍ତ୍ରୀଲୋକ । ଏହି ପୁରୁଷ ନାଗର ଓ କାମକଳା କୁଶଳୀ ଅଟେ, କିନ୍ତୁ ମୁଁ ନିତାନ୍ତ ନବୀନା ଓ ରତି ଅନିପୁଣା





ଅଟେ, ଏହା ଭାବି ଯେଉଁ ସ୍ତ୍ରୀ ଲଜ୍ଜା କରେ । ମୁଁ ଏହି ପୁରୁଷର ସଖୀ ହୋଇ ସାରିଛି, ଏହି ଲଜ୍ଜା ଭାବ । ଏହି ପୁରୁଷ ଦେଶ କାଳ ବିଚାର ରଖେ ନାହିଁ, ଏହିପରି ଗ୍ଲାନିଭାବ । ଏହା ସହିତ ସମ୍ଭୋଗ କଲେ ସଖୀମାନଙ୍କ ଦ୍ୱାରା ତିରସ୍କୃତର ଭୟ । ଏହି ପୁରୁଷ ମୋର ସଙ୍କେତକୁ ବୁଝିବାକୁ ଅକ୍ଷମ, ଏଣୁ ତା ପ୍ରତି ଅବଜ୍ଞା ଭାବ । ଏହି ପୁରୁଷ ଶଶଜାତି ( କ୍ଷୁଦ୍ର ଉପସ୍ଥବିଶିଷ୍ଟ ) ପୁରୁଷ ଅଟେ, କିନ୍ତୁ ମୁଁ ହସ୍ତିନୀ ଜାତୀୟା ( ବୃହତ୍ ଭଗ ବିଶିଷ୍ଟା ) ସ୍ତ୍ରୀ ଅଟେ । ଏ ପୁରୁଷ ମନ୍ଦବେଗୀ, ଏହା ସହିତ ରତିକଲେ ଆନନ୍ଦ ଆସିବ ନାହିଁ । ମୋ ସହିତ ସମ୍ଭୋଗ କରି ଏହି ପୁରୁଷର ଶାରୀରିକ ଓ ଆର୍ଥିକ କ୍ଷତି ନ ଘଟୁ ଏହି ଅନୁକମ୍ପା । ପୁରୁଷଠାରେ କୌଣସି ପ୍ରକାର ବେଗ ଥିବାର ଜାଣିଲେ । କଥା ପ୍ରଘଟ ହେଲେ ଘରୁବାହାରି ଯିବାକୁ ପଡ଼ିବ ଏହି ଚିନ୍ତା ଓ ଭୟ । ଏହି ପୁରୁଷ ବୃଦ୍ଧ, ଏଣୁ ତାହା ପ୍ରତି ଅନାଦର ପ୍ରକାଶ । ସତୀତ୍ୱ ପରୀକ୍ଷା କରିବା ପାଇଁ ମୋ'ର ସ୍ୱାମୀ କର୍ତ୍ତୃକ କାଳେ ନିୟୋଗ ହୋଇଥିବ, ଏହି ଆଶଙ୍କା । ଧର୍ମାଧର୍ମର ବିଚାର ରଖିବା ସ୍ତ୍ରୀଲୋକ । ଏହି ଉପରୋକ୍ତ ସ୍ତ୍ରୀ ଲୋକମାନେ ସହଜରେ ପରପୁରୁଷଗତା ହୁଅନ୍ତି ନାହିଁ ।

—※—

## ସ୍ତ୍ରୀ ଗମନରେ ସଫଳ-ପୁରୁଷ ଲକ୍ଷଣ

ଆଚାର୍ଯ୍ୟ ବାତ୍ସ୍ୟାୟନ ତାଙ୍କର କାମସୂତ୍ରମ୍ ପାରଦାରିକାଧିକରଣରେ ଲେଖିଛନ୍ତି—

ପୁରୁଷାସ୍ତ୍ୱମୀ ପ୍ରାୟେଣ ସିଦ୍ଧାଃ,—କାମସୂତ୍ରଜ୍ଞଃ, କଥାଖ୍ୟାନକୁଶଲୋ, ବାଲାତ୍ ପ୍ରଭୃତି ସଂସୃଷ୍ଟଃ, ପ୍ରବୃଦ୍ଧଯୌବନଃ,



କ୍ରୀଡ଼ନ କର୍ମାଦିନା ଗତବିଶ୍ୱାସଃ, ପ୍ରେଷଣସ୍ୟ କର୍ତ୍ତୋଚିତସମ୍ଭାଷଣଃ, ପ୍ରିୟସ୍ୟ କର୍ତ୍ତାନ୍ୟସ୍ୟ ଭୂତପୂର୍ବୋ ଦୂତୋ, ମର୍ମଜ୍ଞ, ଉତ୍ତମସ୍ତ୍ରୀ ପ୍ରାର୍ଥିତଃ, ସଖ୍ୟା ପ୍ରଚ୍ଛନ୍ନଂ ସଂସୃଷ୍ଟଃ, ସୁଭଗାଭିଖ୍ୟାତଃ, ସହ ସମ୍ବୃଦ୍ଧଃ, ପ୍ରାତିବେଶ୍ୟଃ, କାମଶୀଳସ୍ତଥାଭୂତଶ୍ଚ ପରସ୍ତ୍ରୀରକୋ, ଧାତ୍ରେୟିକା ପରିଗ୍ରହୋ, ନବ-ବରକଃ, ପ୍ରେକ୍ଷୋଦ୍ୟାନତ୍ୟାଗ୍‌ଶୀଳୋ, ବୃଷ ଇତି ସିଦ୍ଧ ପ୍ରତାପଃ, ସାହାସିକଃ, ଶୂରୋ, ବିଦ୍ୟାରୂପଗୁଣୋପଭୋଗୈଃ ପତ୍ୟୁରତିଶାୟିତା, ମହାର୍ହବେଷୋପଗୁରଶ୍ଚେତି ।୧୪।

ଅନୁବାଦ—କାମସୂତ୍ର ଅଭିଜ୍ଞ, କଥା କହିବାରେ ପଟୁ ବାଲ୍ୟସଖା, ସୁନ୍ଦର ଯୁବା, ଖେଳ ଆଦିରେ ବିଶ୍ୱସ୍ତ ସାଥୀ, ସ୍ତ୍ରୀମାନଙ୍କର କଥା ରଖିବା ପୁରୁଷ, ସ୍ତ୍ରୀମାନଙ୍କ ଇଷ୍ଟ କାର୍ଯ୍ୟ କରିବାରେ ଧୁରନ୍ଧର, ଅନ୍ୟ ପୁରୁଷ ସଙ୍ଗେ ସମ୍ବନ୍ଧ କରିବା ସମୟେ ଦୂତହୋଇ ଥିବାରୁ ସ୍ତ୍ରୀର ମର୍ମ ଜାଣିଥିବା ପୁରୁଷ, ସ୍ତ୍ରୀର ଗୋପନ ମର୍ମ ଜାଣିଥିବା ପୁରୁଷ, କୌଣସି ଉତ୍ତମ ସ୍ତ୍ରୀ ସହିତ ସମ୍ବନ୍ଧ ରଖିଥିବା ପୁରୁଷ, ଲୁଚି ଲୁଚି ନାରୀର ସଖୀମାନଙ୍କ ସହିତ ମିଳିତ ହେବା ପୁରୁଷ, ସୁନ୍ଦରତାରେ ପ୍ରସିଦ୍ଧ, ଏକା ସାଥିରେ ଲାଳନ ପାଳନ ହୋଇଥିବା ବ୍ୟକ୍ତି, କାମକଳା-କୁଶଳ, ପଡ଼ୋଶୀ ଏବଂ ସେବକାଦି, ଘରର ନୂତନ ଜୋଇଁ, ନାଟକ ଓ ଉଦ୍ୟାନ ମେଳାରେ ଖର୍ଚ୍ଚ କରିବାରେ ମୁକ୍ତହସ୍ତ, ସାହସୀ, ଶୂରବୀର, ବିଦ୍ୟା-ରୂପ ଗୁଣ ଏବଂ ଭୋଗ-ବିଳାସ ସାମଗ୍ରୀରେ ସ୍ତ୍ରୀର ସ୍ୱାମୀଠାରୁ ବହୁଗୁଣେ ଅଧିକ, ସୁନ୍ଦର ବେଶ ଭୂଷାରେ ସଜ୍ଜିତ । ଏହି ଉପରୋକ୍ତ ପୁରୁଷମାନେ ସହଜରେ ଅନ୍ୟ ସ୍ତ୍ରୀକି ଆକୃଷ୍ଟ କରିପାରନ୍ତି ବୋଲି ବାତ୍ସ୍ୟାୟନ କହିଅଛନ୍ତି ।





# ଅଯନ୍ସାଧ୍ୟ ସ୍ତ୍ରୀ

ଅଯନ୍ସାଧ୍ୟା ଯୋଷିଣିତସ୍ତ୍ୱମା ଅଭିଯୋଗ ମାତ୍ରସାଧ୍ୟାଃ—ଦ୍ୱାରଦେଶାବସ୍ଥାୟିନୀ ! ପ୍ରାସାଦାଦ୍ରାଜମାର୍ଗାବଲୋକନୀ । ତରୁଣପ୍ରାତିବେଶ୍ୟଗୃହେ ଗୋଷ୍ଠୀଯୋଜନୀ । ସତତ ପ୍ରେକ୍ଷଣୀ । ପ୍ରେକ୍ଷିତା ପାର୍ଶ୍ୱବଲୋକନୀ । ନିଷ୍କାରଣଂ ସପତ୍ନ୍ୟାଧିବକା । ଭର୍ତ୍ତୃଦ୍ୱେଷିଣୀ ବନ୍ଧ୍ୟା ଚ । ଉତ୍ସବାଦିହୀନା । ନିରପତ୍ୟା । ଜ୍ଞାତକୁଲନିତ୍ୟା । ବିପନ୍ନାପତ୍ୟା । ଗୋଷ୍ଠୀଯୋଜନୀ । ପ୍ରୀତିଯୋଜନୀ । କୁଶୀଳବଭାର୍ଯ୍ୟା । ମୃତପତିକା ବାଲା । ଦାରିଦ୍ର୍ୟା ବହୁପଭୋଗା । ଜ୍ୟେଷ୍ଠଭାର୍ଯ୍ୟା ବହୁଦେବରକା । ବହୁମାନିନୀ ନ୍ୟୂନଭର୍ତ୍ତୃକା । କୌଶଲାଭିମାନିନୀ ଭର୍ତ୍ତୁର୍ମୌର୍ଖ୍ୟେଣୋଦ୍ବିଗ୍ନା । ଅବିଶେଷତଯା ଲୋଭେନ । କନ୍ୟାକାଲେ ଯତ୍ନେନ ବରିତା କଥଞ୍ଚିଦଲବ୍ଧାଭିଯୁକ୍ତା ଚସା ତଦାନୀଂ । ସମାନ ବୁଦ୍ଧିଶୀଳ ମେଧା ପ୍ରତିପତ୍ତିସାତ୍ମ୍ୟା । ପ୍ରକୃତ୍ୟା ପକ୍ଷପାତିନୀ । ଅନପରାଧେ ବିମାନିତା । ତୁଲ୍ୟରୂପାଭିଷ୍ଟାଧଃକୃତା । ପ୍ରୋଷିତ ପତିକେତି । ଈର୍ଷ୍ୟାଳୁପତନୁକ୍ଲୀବଦୀର୍ଘସୂତ୍ରକାପୁରୁଷ-କୁବ୍ଜ-ବାମନ-ବିରୂପ-ମଣିକାରଗ୍ରାମ୍ୟଦୁର୍ଗନ୍ଧ-ରୋଗୀବୃଦ୍ଧଭାର୍ଯ୍ୟାଶ୍ଚେତି ।୧୯।

( ବାତ୍ସ୍ୟାୟନ କାମସୂତ୍ରମ୍ )

ଅନୁବାଦ— ଯେଉଁ ସ୍ତ୍ରୀ ପ୍ରାୟ ସର୍ବଦା ଘରର ସଦର ଦରଜାରେ ବସି ବାଟରେ ଯା ଆସ କରୁଥିବା ପୁରୁଷଙ୍କୁ ଅନାଏ । ଯେ ଚପଳ-ପ୍ରକୃତି ବିଶିଷ୍ଟା । ଯେ କୋଠା ଛାତ ଉପରେ ଚଢ଼ି ରାସ୍ତାକୁ ଅନାଏଁ । ଯୁବା ପଡ଼ୋଶୀ ଘରକୁ ବାରମ୍ବାର ଯାଇ ଗପ ସପ କରେ । ପର ପୁରୁଷଙ୍କୁ ବାରମ୍ବାର ଲେଉଟି କରି ଅନାଏଁ । ପୁରୁଷ ଦେଖି ତା' ପ୍ରତି କଟାକ୍ଷ ହାଣେ । ବିନା କାରଣରେ ନିଜ



ପତି ସହିତ ସପତ୍ନୀ ପରି ବ୍ୟବହାର କରେ । ପତିଙ୍କୁ ଯେ ଦ୍ୱେଷ କରେ କିମ୍ବା ପତି ଯାହାକୁ ଦ୍ୱେଷ କରେ । ଲଜ୍ଜା ରହିତା କିମ୍ବା ସ୍ୱାଧୀନା । ନିସନ୍ତାନା । ସର୍ବଦା ପିତୃଗୃହରେ ରହିବାକୁ ଭଲପାଏ । ଯାହାର ସନ୍ତାନ ନଷ୍ଟ ହୋଇଯାନ୍ତି । ନିଜ ଘରେ କିମ୍ବା ପଡ଼ିଶିମାନଙ୍କ ଘରେ ଅଧିକ ଯେ କଥାବାର୍ତ୍ତା କରେ । ନୃତ୍ୟକାରୀ ଆଦି ବ୍ୟକ୍ତି-ମାନଙ୍କ ସ୍ତ୍ରୀ । ଯୁବତୀ-ବିଧବା । ଦରିଦ୍ରା । ବହୁପୁରୁଷଗତା । ଯାହାର ବହୁ ଦେବର ଥାନ୍ତି । ଯେ ନିଜକୁ ଚତୁର ଓ ସ୍ୱାମୀକୁ ବୁଦ୍ଧିହୀନ ବୋଲି ମନେ କରେ । ଯେଉଁ ସ୍ତ୍ରୀଲୋକ ନିଜକୁ ଖୁବ୍ କୌଶଳୀ ଓ ବୁଦ୍ଧିମତୀ ବୋଲି ଅଭିମାନ କରେ । ମୂର୍ଖ ସ୍ୱାମୀ ବୋଲି ସଦା ଉଦ୍‌ବିଗ୍ନ ରହେ । ପତି କାମ-କଳା-କୁଶଳୀ ହୋଇ ନଥିବାରୁ ରତିରେ ସନ୍ତୁଷ୍ଟା ନ ହୋଇ ଯେ ମନ ଦୁଃଖରେ ଥାଏ । କନ୍ୟା କାଳରେ ବିବାହ ନିମନ୍ତେ ବାଗ୍‌ଦତ୍ତା ହୋଇ, କିନ୍ତୁ ପରେ ଯଥା ମନୋନୀତ ପୁରୁଷକୁ ବିବାହ ନ ହେଲେ, ସେ ପୁରୁଷ ଯଦି ବର୍ତ୍ତମାନ ବିବାହିତ ସ୍ୱାମୀଠାରୁ ରୂପ ଗୁଣରେ ଶ୍ରେଷ୍ଠ ହୋଇଥାଏ । ପତିର ବିନାପରାଧରେ ଯେ ନିଜକୁ ଅପମାନିତା ମନେ କରେ । ଯାହାର ସ୍ୱାମୀ ଚିରପ୍ରବାସୀ । ତୁଲ୍ୟରୂପସପତ୍ନୀ ଦ୍ୱାରା ଯେ ତିରସ୍କୃତା । ଯାହାର ସ୍ୱାମୀ ଈର୍ଷାଳୁ, ଦୁର୍ଗନ୍ଧଯୁକ୍ତ, କାପୁରୁଷ, ନପୁଂସକ, ଦୀର୍ଘ-ସୂତ୍ରୀ, କୁଜା, କଣା, ବାମନ, କୁରୂପ, ମଣିକାର, ଓଲ୍ଲୁ, ଚିରରୋଗୀ । ବୃଦ୍ଧର ତରୁଣୀ ଭାର୍ଯ୍ୟା । ଏମାନେ ଅଯତ୍ନସାଧ୍ୟ ।







## ଅଭିସାରିକାର ହାବଭାବ

ଦର୍ଶନେ ଗୃହସ୍ୟାଃ ସତତଂ ସାକାରଂ ପ୍ରେକ୍ଷଣଂ କେଶସଂଯମନଂ ନଖାଚ୍ଛୁରଣମାଭରଣପ୍ରହ୍ଲାଦନମଧରୌଷ୍ଠବିମର୍ଦ୍ଦନଂ ତାସ୍ତାସ୍ତ ଲୀଳା ବୟସ୍ୟୈଃ ସହ ପ୍ରେକ୍ଷମାଣାୟାସ୍ତତ୍ର ସମ୍ବନ୍ଧାଃ ପରପଦେଶନ୍ୟସ୍ତ କଥାସ୍ତ୍ୟାଗୋପଭୋଗପ୍ରକାଶନଂ ସଖ୍ୟଙ୍କରେ ସଙ୍ଗନିଷଣ୍ଣାୟା ସାଙ୍ଗଭଙ୍ଗଂ ଜୃମ୍ଭଣମେକଭ୍ରୂକ୍ଷେପଣଂ ମନ୍ଦବାକ୍ୟତା ତଦ୍‌ବାକ୍ୟଶ୍ରବଣଂ, ତାମୁଦ୍ଦିଶ୍ୟ ବାଳେନାନ୍ୟ ଜନେନ ବା ସହାନ୍ୟୋପଦିଷ୍ଟା ବ୍ୟର୍ଥା କଥା ତସ୍ୟାଂ ସ୍ୱୟଂ ମନୋରଥାବେଦନମନ୍ୟାପଦେଶେନ ତାମେବୋଦ୍ଦିଶ୍ୟ ବାଳଚୁମ୍ବନ ମାଲିଙ୍ଗନଂ ଚ ଜିହ୍ୱୟା ଗୃହସ୍ୟ ତାମ୍ବୂଳଦାନଂ ପ୍ରଦେଶିନ୍ୟା ହନୁଦେଶ ଘଟ୍ଟନଂ ତତ୍ତଦ୍ ଯଥାଯୋଗଂ ଯଥାବକାଶଞ୍ଚ ପ୍ରୟୋକ୍ତବ୍ୟମ୍ ।

( ବାତ୍ସ୍ୟାୟନ କାମସୂତ୍ରମ୍ )

ଅନୁବାଦ—ନାରୀ ନାୟକକୁ ବାରମ୍ବାର ଚାହିଁବା, ନିଜର ମୁଣ୍ଡ ବାଳଖୋଲି ପୁନରାୟ ବାନ୍ଧିବା, ନିଜ ନଖ ଦ୍ୱାରା ନିଜ ଅଙ୍ଗରେ ଆଞ୍ଚୁଡ଼ କ୍ ପ୍ରୟୋଗ କରିବା, ପିନ୍ଧିଥିବା ଅଳଙ୍କାରକୁ ଶବ୍ଦାୟିତ କରିବା, ସଖୀ ସଙ୍ଗେ ଥଟ୍ଟା ତାମସା କରି ନାୟକକୁ ଅପାଙ୍ଗ ଦୃଷ୍ଟିରେ ଚାହିଁବା, ଭୋଗବିଳାସରେ ତ୍ୟାଗର ଭାବ ପ୍ରଦର୍ଶନ କରିବା, ସଖୀ କୋଳରେ ବସି ଅଙ୍ଗୁଠି ଫୁଟାଇବା, ଧୀରେ ଧୀରେ କଥା କହିବା, ନାୟକ କଥା କହୁଥିଲେ ମନଦେଇ ଶୁଣିବା, ନାୟକକୁ ଲକ୍ଷ୍ୟକରି କୌଣସି ବାଳକ ବା ଅନ୍ୟ କୌଣସି ସଖୀକୁ ଦ୍ୱିଅର୍ଥବୋଧକ ବାକ୍ୟ ପ୍ରକାଶ କରିବା, ନିଜର ଅଭ୍ୟନ୍ତରିଣ ମନୋରଥକୁ କୌଣସି



ଛଳରେ ପ୍ରକଟ କରିବା, ନାୟକଙ୍କୁ ଲକ୍ଷ୍ୟକରି କୌଣସି ଶିଶୁ ମୁଖରେ ଚୁମ୍ବନ ଦାନ ବା ତାକୁ ଆଲିଙ୍ଗନ କରିବା, ଉକ୍ତ ଶିଶୁକୁ ଜିହ୍ବା ଦ୍ୱାରା ତାମ୍ବୁଳ ଦାନ କରିବା, ତର୍ଜ୍ଜନୀ ଦ୍ୱାରା ନିଜର ହନୁପ୍ରଦେଶକୁ ଘର୍ଷଣ କରିବା ଇତ୍ୟାଦି ଲକ୍ଷଣ ପ୍ରକାଶ ପାଏ ।

## ଏଥି ପ୍ରତି ନାୟକର କର୍ତ୍ତବ୍ୟ

ତସ୍ୟାଙ୍କାଙ୍କଗତସ୍ୟ ବାଳସ୍ୟ ଲାଳନଂ ବାଳକ୍ରୀଡ଼ନକାନାଂ ଗୃହ୍ୟ ଦାନଂ ଗ୍ରହଣଂ ତେନ ସନ୍ନିକୃଷ୍ଟତ୍ୱାତ୍ କଥା ଯୋଜନଂ ତତ୍ସମ୍ଭାଷଣ କ୍ଷମେଣ ଜନେନ ଚ ପ୍ରୀତିମାଧାଦ୍ୟ କାର୍ଯ୍ୟଂ ତଦନୁବନ୍ଧଂ ଚ ଗମନାଗମନସ୍ୟ ଯୋଜନଂ ସଂଶ୍ରୟେ ଗୃହ୍ୟାସ୍ତାମପଶ୍ୟତୋ ନାମ କାମସୂତ୍ରସଙ୍କଥା ।

( ବାତ୍ସ୍ୟାୟନ କାମସୂତ୍ର )

ଅନୁବାଦ—ନାୟିକାର କୋଡ଼ସ୍ଥ ଶିଶୁକୁ ଭଲପାଇବା, ସେ ଶିଶୁକୁ ନାନା ପ୍ରକାର ଖେଳନା ଦେବା ଓ ତା ସହିତ ଖେଳିବା, ତା'ର ସନ୍ନିକଟସ୍ଥ ହୋଇ କଥା କହିବା, ତାହା ସହିତ ଯେ ସମ୍ଭାଷଣକ୍ଷମ ସେପରି ଲୋକ ସହିତ ପ୍ରୀତି ସଂସ୍ଥାପନ କରି କୌଣସି କାର୍ଯ୍ୟ ଛଳରେ ଯା' ଆସ କରିବା, ନାୟିକା ଯେପରି ଶୁଣିବାକୁ ପାଏ ସେହିପରି ସ୍ଥାନରେ ରହି, ଅଥଚ ନାୟିକା ଯେପରି ଦେଖା ନପାଏ ସେପରି ଅବସ୍ଥାରେ; ଅନ୍ୟ ଲୋକ ସଙ୍ଗେ କାମସୂତ୍ରର ଆଲାପ ଓ ଚର୍ଚ୍ଚା କରିବ ।

— ✱ —





## ଦୂତୀ ନିୟୋଗ

ଆମ୍ଭର କାମବିଜ୍ଞାନ ୧ମ ଭାଗର ପୃ ୧୭୪ ଷ୍ଠା ଦୌତ୍ୟ-ପ୍ରକରଣରେ ଦୂତୀ ନିୟୋଗ ସମ୍ବନ୍ଧେ ବିଶଦ ଭାବରେ ବୁଝାଇ ଦିଆଯାଇଛି । ଏଠାରେ ସେହି ପ୍ରସଙ୍ଗର ପରିଶିଷ୍ଟ ମାତ୍ର ଲେଖିଲି ।

କେଉଁ ସ୍ତ୍ରୀ ପାଖକୁ କେଉଁ କେଉଁ ଭଳି ଦୂତୀ ନିୟୋଗ କରିବା ଉଚିତ ତାହା ତ କହି ସାରିଅଛୁଁ । ଏହି କାର୍ଯ୍ୟ ପାଇଁ ସାଧାରଣତଃ ୩ ପ୍ରକାର ଦୂତୀ ଲୋଡ଼ା ହୋଇଥାନ୍ତି ।

ଯଥା—ପ୍ରଗଲ୍ଭା, ପରିମିତା ଓ ପତ୍ରବାହିନୀ । ନାନାଦି ମିଠା କଥା କହି ଯେ ଚିତ୍ତରଞ୍ଜନ କରି ପାରେ ସେ ପ୍ରଗଲ୍ଭା, ଯେ ଯେତିକି ଖବର ସେତିକି ମାତ୍ର ପହଞ୍ଚାଇ ଥାଏ, ସେ ପରିମିତା ଏବଂ ଯେଉଁ ଦୂତୀ କେବଳ ପତ୍ରଟି ନେଇ ପହଞ୍ଚାଇ ଦିଏ, ସେ ହେଉଛି ପତ୍ରବାହିନୀ । ସବୁଠାରୁ ପ୍ରଗଲ୍ଭା ଦୂତୀ ଉପରେ ସବୁ ନିର୍ଭର କରେ । ସେ ପୁରୁଷ ପକ୍ଷରେ ନାନା କଥା କହି ସ୍ତ୍ରୀର ଚିତ୍ତକୁ ଆକର୍ଷଣ କରେ ଏବଂ ପୁରୁଷ ସଙ୍ଗେ ଭେଟ କରାଇ ଥାଏ ।

କୌଣସି ସ୍ତ୍ରୀ ପାଖକୁ ଦୂତୀ ପଠାଇବା ଉଚିତ କି ଅନୁଚିତ ଏହା ନେଇ ଉଦ୍ଦାଳକ; ବାଭ୍ରବ୍ୟ, ଗୋଣିକାପୁତ୍ର, ଏହି ଋଷିମାନେ ଭିନ୍ନ ମତ ଦେଇ ଅଛନ୍ତି । ସେମାନେ କେତେକ ସ୍ଥଳରେ ଆବଶ୍ୟକ ଓ କେତେକ ସ୍ଥଳରେ ଅନାବଶ୍ୟକ ବୋଲି ଲେଖି ଅଛନ୍ତି । କିନ୍ତୁ ଆଚାର୍ଯ୍ୟ ବାତ୍ସ୍ୟାୟନଙ୍କ ମତରେ ଦୂତୀନିୟୋଗ ସବୁଠାରେ ପ୍ରୟୋଜନ । କାରଣ ଦୂତୀ ନ ଥିଲେ ଭାବ ଓ ଉପହାରର ଆଦାନ ପ୍ରଦାନ, ମନ୍ଦିର ଓ ମେଳା ମହୋତ୍ସବକୁ ବୁଲି-

# କାମ-ବିଜ୍ଞାନ ୨ୟ




ପାଦର ମାଂସ ପେଶୀ ସୁଦୃଢ଼ କରିବାର ବ୍ୟାୟାମ ।

( ୨୮୯ ପୃଷ୍ଠା ଦ୍ରଷ୍ଟବ୍ୟ )



ଯିବାର ନିମନ୍ତଣ କାର୍ଯ୍ୟ ଚଳି ପାରିବ ନାହିଁ । ଗୋଣିକାପୁତ୍ର ଲେଖିଛନ୍ତି ଯକ୍ଷୀ, ଭିକ୍ଷୁକୀ, ସନ୍ନ୍ୟାସିନୀ ପ୍ରଭୃତି ଏମାନେ ଦୂତୀ କାର୍ଯ୍ୟ ଭଲ ଭାବରେ କରି ପାରନ୍ତି । କାରଣ କାମ୍ୟସ୍ତ୍ରୀ ସହଜରେ ଏମାନଙ୍କ ଘରକୁ ଯା ଆସ କରି ପାରେ ।

ଆଚାର୍ଯ୍ୟ ବାତ୍ସ୍ୟାୟନ କହିଛନ୍ତି, ଯଦି ନାୟିକାର ଘରକୁ ନିରାପଦରେ ଯିବା ଆସିବାର ସୁବିଧା ଥାଏ, ତେବେ ସେହି ସ୍ଥାନହିଁ ପ୍ରଶସ୍ତ । କିନ୍ତୁ ରାଜା ବା ରାଜପୁରୁଷ, ନେତା ବା ନେତୃ-ସ୍ଥାନୀୟ ଲୋକେ ଗୋପନରେ ନାୟିକା ଘରକୁ ଯିବା ସମ୍ଭବ ନୁହେଁ, ଉଚିତ ମଧ୍ୟ ନୁହେଁ । କାରଣ ସେମାନଙ୍କର ଏ କାର୍ଯ୍ୟକୁ ଜନସାଧାରଣ ଅନୁକରଣ କରି ପାରନ୍ତି । ସେ ଭଳି ବିଶିଷ୍ଟ ଲୋକ ଯଦି କାମ୍ୟସ୍ତ୍ରୀ ପାଇବାକୁ ମନ କଲେ ନ୍ତି, ତାହା ପ୍ରୟୋଗ ବିଧି ଅନୁସାରେ କରିବ୍ୟ । ପ୍ରୟୋଗ ବିଧି ଦୁଇ ପ୍ରକାର । ଯଥା—ପ୍ରକାଶ୍ୟ ଓ ପ୍ରଚ୍ଛନ୍ନ ।

ଯୁବକ, ଗ୍ରାମପତି ବା ଶାସକ କିମ୍ବା ଗ୍ରାମର ଧନୀ ବ୍ୟକ୍ତିର ପୁତ୍ର ପକ୍ଷରେ କାମ୍ୟସ୍ତ୍ରୀ ପାଇବାକୁ ହେଲେ ସେ ଗ୍ରାମର କୌଣସି ଦରିଦ୍ର ରମଣୀ ଦ୍ୱାରା ଏ କାର୍ଯ୍ୟ ସମ୍ପାଦନ କରି ପାରନ୍ତି । ଏଭଳି ଦରିଦ୍ର ରମଣୀକୁ ଚର୍ଷଣୀ ବୋଲାଯାଏ । ଏହି ଚର୍ଷଣୀମାନଙ୍କୁ ଧାନ ଉତ୍ତେଇବା, କୁଟିବା, ପାଛୁଡ଼ିବା, କାଟିବା, ଘର ଲିପିବା ଆଦି କାର୍ଯ୍ୟରେ ନିଯୁକ୍ତ କରାଯାଇ ପାରେ । ଅଭାବ ପଡ଼ିଲେ ଏମାନେ ମଧ୍ୟ ମହାଜନ କିମ୍ବା ରାଜପୁରୁଷ ନିକଟକୁ ସାହାଯ୍ୟ ଆଶାରେ ଆସନ୍ତି । ତାଙ୍କୁ ସେତେବେଳେ ବଶୀଭୂତ କରାଯାଇ ପାରେ । ଆହୁରି ମଧ୍ୟ ଗଉଡ଼ୁଣୀ, ଭଣ୍ଡାରୁଣୀ, ଗୁଡ଼ିଆଣୀ, ଧୋବଣୀ, ତେଲୁଣୀ, ମାଳୁଣୀ ଆଦି ଶିଳ୍ପକାରିକା ଗ୍ରାମ୍ୟ ରମଣୀମାନଙ୍କୁ ଅସ୍ତ୍ର କରି





ସ୍ତ୍ରୀକୁ ବଶ କରିପାରେ । ଏହା ସବୁ ପ୍ରକାଶ୍ୟ ପ୍ରୟୋଗ ଅଟେ । ଏହିଭଳି ପ୍ରକାଶ୍ୟ ପ୍ରୟୋଗ ରାଜା ବା ରାଜପୁରୁଷ କିମ୍ବା ଧନୀ ବ୍ୟକ୍ତିମାନଙ୍କୁ ଶୋଭାପାଏ ।

ଲୁଚିକରି ଅନ୍ୟ ସ୍ତ୍ରୀ ଘରକୁ ଯିବାକୁ ପ୍ରଚ୍ଛନ୍ନ ପ୍ରୟୋଗ କୁହାଯାଏ । ଏହା ଦ୍ୱାରା ବିପଦର ସମ୍ଭାବନା ବେଶୀ । କାରଣ ଧରା ପଡ଼ିଲେ ମାଡ଼, ଗାଳି, ନିନ୍ଦା ଏପରିକି ପ୍ରାଣ ସଙ୍କଟ ମଧ୍ୟ ଘଟିପାରେ ।

ଦାଶ୍ରବ୍ୟ ରୂପି କହିଛନ୍ତି, କଣେଇ, ଶୁଆ, ପ୍ରତିମା, ତଥା ଶୁକ ସାରୀ ଆଦି ପକ୍ଷୀ, ଓ କୁକୁର ବିଲେଇ ଆଦି ପଶୁ, ଏମାନଙ୍କ ଦ୍ୱାରା ମଧ୍ୟ ନାୟକ ନାୟିକାର ଗୂଢ଼ ମନୋଭାବ ଜାଣି ପାରେ । ଏଣୁ ଏମାନେ ମଧ୍ୟ ଦୂତୀପର୍ଯ୍ୟାୟରୁ ଭୁକ୍ତ ।

ଦୂତ ଅଭ ଦୂତୀ, ଏମାନେ ଏପରି କାର୍ଯ୍ୟ ସମ୍ପାଦନ କରି ପାରନ୍ତି ଯାହାକି ନାୟକ ନାୟିକାଙ୍କର ସ୍ୱପ୍ନାତୀତ । ଏମାନଙ୍କ ଦ୍ୱାରା ଅସାଧ୍ୟ ନାୟିକା ମଧ୍ୟ ସାଧ୍ୟ ହୋଇଥାଏ ଏବଂ ଏମାନଙ୍କ ସାମାନ୍ୟ ଅସାବଧାନତା ଦୋଷରୁ ନାୟକ ନାୟିକାଙ୍କୁ ମଧ୍ୟ ବହୁ ନିନ୍ଦା ଅପମାନ ଓ ମୃତ୍ୟୁ ପର୍ଯ୍ୟନ୍ତ ଘଟିପାରେ ।

---

## ପ୍ରାଚୀନ କାଳରେ ରାଜାନ୍ତପୁରର ବିଳାସ ଲୀଳା

ଅନ୍ତଃପୁରରେ ପ୍ରହରୀ ନିଯୁକ୍ତ ଥିବାରୁ ପରପୁରୁଷ ପ୍ରବେଶ ସେଠାରେ ସହଜସାଧ୍ୟ ନୁହେଁ । ତା ଛଡ଼ା ଗୋଟିଏ ସ୍ୱାମୀ ଅଥଚ ସ୍ତ୍ରୀ ବହୁତ, ସୁତରାଂ ତୃପ୍ତି ଅଭ ଅସିବ କେଉଁଠୁ ? ଫଳତଃ



ଅନ୍ତଃପୁରବାସିନୀଗଣର ତୃପ୍ତି ଘଟେ ନାହିଁ । ଅତଏବ ସେମାନେ ପ୍ରୟୋଗାନୁସାରେ ପରସ୍ପର ମଧ୍ୟରେ ରତିସୁଖ ଉପଭୋଗ କରୁଥିଲେ । ନିଜର ବିଶ୍ୱସ୍ତ ଦାସୀ କିମ୍ବା ସଖୀଙ୍କୁ ପୁରୁଷ ବେଶ କରି ତାଙ୍କଠାରେ ମୂଳା, କଦଳୀ ଓ ବାଇଗଣ ଆଦି କୃତ୍ରିମ ଉପସ୍ଥ ଲଗାଇ ପରସ୍ପର ମଧ୍ୟରେ ଯୌନ ପିପାସା ମେଣ୍ଟାଉଥିଲେ । ରାଜା ମଧ୍ୟ ବହୁ ସ୍ତ୍ରୀଙ୍କର କାମ ପିପାସା ମେଣ୍ଟାଇବା ପାଇଁ ଉପରୋକ୍ତ କୃତ୍ରିମ ଉପସ୍ଥ ବ୍ୟବହାର କରୁଥିଲେ । ପରେ ନିଜର କୌଣସି ପ୍ରେୟସୀ ତା ଋତୁମତୀ ରାଣୀ ସହିତ ପ୍ରକୃତ ସହବାସ କରି ବୀର୍ଯ୍ୟ ସ୍ଖଳନ କରୁଥିଲେ ।

କୌଣସି କୌଣସି ଅନ୍ତଃପୁରବାସିନୀ ପୁରୁଷ ଆକାରରେ ନିର୍ମିତ ହୋଇଥିବା ରବର ମୂର୍ତ୍ତିକୁ କୁଣ୍ଢାଇ ନିଜର ମନ ଶାନ୍ତ କରୁଥିଲେ ।

ଅନ୍ତଃପୁରିକାଗଣ ସମୟେ ସମୟେ ନାଗରମାନଙ୍କୁ ସ୍ତ୍ରୀ ବେଶରେ ସଜାଇ ଦାସୀମାନଙ୍କ ଦ୍ୱାରା ବାହାରୁ ସଂଗ୍ରହ କରି ଆଣି ସେମାନଙ୍କ ସହିତ ସହବାସ କରୁଥିଲେ । କିନ୍ତୁ ଏପରି ଭାବରେ ଅନ୍ତଃପୁରେ ପ୍ରବେଶ ବିପଦ୍‌ଜନକ ବୋଲି ବାତ୍ସ୍ୟାୟନ ଋଷି ଏହା ନିଷେଧ କରି ଅଛନ୍ତି ।

କୌଣସି କୌଣସି ସ୍ଥାନରେ ଅନ୍ତଃପୁରର ସୁରକ୍ଷ୍ୟ ପ୍ରହରୀ ଓ ଚାକରମାନେ ଅନ୍ତଃପୁରର ମହିଳାମାନଙ୍କୁ ଭୋଗ କରୁଥିଲେ । ଆଜି ମଧ୍ୟ ଚାକର ଓ ଯାଜକମାନେ ମଧ୍ୟ ଏ ସୁବିଧା ଓ ସୁଯୋଗ ପାଉଥିଲେ ।

ମୋଗଲ ରାଜତ୍ୱ କାଳର ଇତିହାସ ଦେଖିଲେ ଦେଖାଯାଏ ଯେ, ବାଦଶାହାମାନେ ନିଜର ବେଗମ ମହଲକୁ ନପୁଂସକ ପ୍ରହରୀ ବା ଖୋଜା ଦ୍ୱାରା ସୁରକ୍ଷିତ କରାଉଥିଲେ । କାରଣ ଏହି ପ୍ରହରୀମାନଙ୍କ ଦ୍ୱାରାହିଁ ବେଗମ ମହଲର ରମଣୀମାନେ ଭ୍ରଷ୍ଟା ହେଉଥିବାର ଭୂରି ଭୂରି ପ୍ରମାଣ ମିଳିଥିଲା ।

—✷—

## ସ୍ୱଦାର ରକ୍ଷା

ଯେପରି ନାଗର ପରଦାରକୁ ସମ୍ଭୋଗ କରି ଦୂଷିତ କରେ, ସେହିପରି ତାହାର ଦାରକୁ ମଧ୍ୟ ଅନ୍ୟ ଲୋକ ଦୂଷିତ କରେ । ଏଣୁ ସ୍ୱଦାର ରକ୍ଷାର ନିୟମ ନିମ୍ନରେ ଦିଆଗଲା ।

ପ୍ରତ୍ୟେକ ପୁରୁଷ ସାବଧାନତା ସହିତ ନିଜ ନିଜର ଗୃହଲକ୍ଷ୍ମୀଙ୍କୁ ଏହି ପାପପଥରୁ ରକ୍ଷା କରିବା ଦରକାର । ଆଚାର୍ଯ୍ୟମାନେ କହି-ଛନ୍ତି ବିଷୟ ଭୋଗ ତ୍ୟାଗୀ ସଦାଚାରୀ ଲୋକଙ୍କୁ ଅନ୍ତଃପୁରର ରକ୍ଷକ ନିଯୁକ୍ତ କରାଯାଇଥାଏ । କିନ୍ତୁ ଆଚାର୍ଯ୍ୟ ଗୋଣିକାପୁତ୍ର କହିଛନ୍ତି, ରକ୍ଷକ ସଦାଚାରୀ ଏ ବିଷୟବାସନା ବର୍ଜିତ ହେଲେ ସୁଦ୍ଧା, ଅନ୍ତଃ-ପୁରର ସ୍ତ୍ରୀଲୋକମାନେ ତାକୁ ଭୟ ଓ ପ୍ରଲୋଭନ ଦେଖାଇ ନିଜର ପାପ ଅଭିଳାଷ ପୂରଣ କରିଥାନ୍ତି । ଏଣୁ ସେ ରକ୍ଷକ ନିର୍ଭୀକ ଓ ନିର୍ଲୋଭ ବ୍ୟକ୍ତି ହେବା ଆବଶ୍ୟକ । ଆଚାର୍ଯ୍ୟ ବାତ୍ସ୍ୟାୟନ କହିଛନ୍ତି, ଅନ୍ତଃପୁର-ରକ୍ଷୀ ଧାର୍ମିକ ପୁରୁଷ ହେବା ଆବଶ୍ୟକ । ଧର୍ମ ହାନି ଭୟରେ ପରଦାର ଗମନ କରେ ନାହିଁ ।

ପୁରୁଷ କୌଣସି ସଚ୍ଚରିତ୍ରା ସ୍ତ୍ରୀ ଲୋକକୁ ଦୂତୀ ରୂପରେ ନିଯୋଗ କରିବ । ସେ ଦୂତୀ ଯାଇ ତା'ର ପତ୍ନୀ ନିକଟରେ କୌଣସି



କଳ୍ପିତ ପୁରୁଷର ପ୍ରେମ ପ୍ରସ୍ତାବ ନାନା ପ୍ରକାର ଭଙ୍ଗିରେ କହିବ । ଏହାର ଉତ୍ତର ଯେ ସ୍ତ୍ରୀ ଲୋକ କ'ଣ ଦେଉଛି ତାହା ଶୁଣି ସ୍ୱାମୀ ତାହା ସ୍ତ୍ରୀ ପ୍ରତି ଯଥୋଚିତ ସାବଧାନ ହେବ ।

ସ୍ତ୍ରୀ ସହିତ ସବୁବେଳେ ବାକ୍ୟାଳାପ କରିବା ବ୍ୟକ୍ତି, ନିରଙ୍କୁଶ, ପୂର୍ଣ୍ଣ ସ୍ୱାଧୀନତା ପାଇଥିବା ରମଣୀ, ଯାହାର ପତି ଅଧିକ ପ୍ରବାସୀ ହୁଏ, ପତି ଗୃହ ଛାଡ଼ି ଯେଉଁ ରମଣୀ ଅନ୍ୟନ୍ ଯା' ଆସ କରେ, ପୁରୁଷର ନପୁଂସକତା, କୁଳଟା ସ୍ତ୍ରୀର ସଂସର୍ଗରେ ଆସିବା, ନିଜର ସ୍ୱାମୀକୁ ଈର୍ଷା କରିବା, ସାଧାରଣତଃ ଏହିସବୁ କାରଣରୁ ନାରୀମାନେ ଭ୍ରଷ୍ଟା ହୋଇଥାନ୍ତି । ଏଥିପ୍ରତି ଦୃଷ୍ଟି ଦେଇ ସ୍ୱାମୀ ଯଦି ଏହିସବୁ କାରଣ ଦୂର କରିଦିଏ, ତେବେ ପରଦାରଗମନ ସମାଜରୁ ସବୁଦିନ ପାଇଁ ଲୋପ ହୋଇଯିବ ।

ଏହି ପରଦାର ପ୍ରସଙ୍ଗ ଅଧିକରଣଟିରେ ସୂକ୍ଷ୍ମାନୁସୂକ୍ଷ୍ମରୂପେ ଆଲୋଚିତ ବିଷୟ ଗୁଡିକ ପର୍ଯ୍ୟାଲୋଚନା କରି ବିଦ୍ୱାନ ଲୋକେ ନିଜର ପତ୍ନୀ ସହିତ ଦାମ୍ପତ୍ୟ ଜୀବନ ସୁଖମୟ କରିବେ ଏବଂ କୌଣସି ଲମ୍ପଟ କିମ୍ବା ଛଳ-କପଟୀ ଲୋକ କଥାରେ ପଡ଼ି ପ୍ରତାରିତ ହେବେ ନାହିଁ ।

ଏହି ଅଧିକରଣ ବିଶେଷତଃ ମନୁଷ୍ୟମାନଙ୍କର ମଙ୍ଗଳ ଓ ଦାରରକ୍ଷା ନିମିତ୍ତ ବର୍ଣ୍ଣନା କରାଯାଇଅଛି । କିନ୍ତୁ ଜନସମାଜକୁ ବ୍ୟଭିଚାର ଶିକ୍ଷା ଦେବା ପାଇଁ ନୁହେଁ । ଏହା ଅଭିଅରେ ପାଠକ-ବର୍ଗଙ୍କୁ ଜଣାଇ ଏହାର ଉପସଂହାର କରୁଅଛୁ ।

— —





## ଗୃହଲକ୍ଷ୍ମୀମାନଙ୍କର ସତର୍କତା

ସନାତନ ହିନ୍ଦୁ ଧର୍ମରେ ନାରୀର ସତୀତ୍ୱ ଉପରେ ଯେତେ ଜୋର ଦିଆଯାଏ ଅନ୍ୟ କୌଣସି ଧର୍ମରେ ତାହା ଦେଖାଯାଏ ନାହିଁ । ସତୀ ନାରୀର ନିଜର ପରିବାର ମଧ୍ୟରେ ଅପ୍ରତିହତ କ୍ଷମତା ଥାଏ ।

କି ସ୍ତ୍ରୀ କି ପୁରୁଷ ସମସ୍ତେ ଭଲ ହେବାକୁ ଚେଷ୍ଟା କରନ୍ତି । କିନ୍ତୁ ଜୀବନରେ ଏପରି ଦୁର୍ବଳ ମୂହୂର୍ତ୍ତି ଆସେ, ସେଥିରେ ନାରୀ ବାଧ୍ୟ ହୋଇ ଅସତ୍‌କର୍ମ କରେ । ଦକ୍ଷପ୍ରଜାପତି-ନନ୍ଦିନୀ ଦୁର୍ଗା ନାରଦଙ୍କୁ କଥା ଛଳରେ କହିଅଛନ୍ତି—

ସ୍ଥାନ ନାସ୍ତି କ୍ଷଣ ନାସ୍ତି, ନାସ୍ତି ପ୍ରାର୍ଥୟିତା ନରଃ
ତେନ ନାରଦ ନାରୀଣାଂ ସତିତ୍ୱ ମୁପଜାୟତେ ॥

ଅର୍ଥାତ୍—"ହେ ନାରଦ ! ସ୍ଥାନର ସୁବିଧା ନଥିବ, ସମୟର ସୁବିଧା ନଥିବ, ଓ କେହି ପ୍ରାର୍ଥୀ ପୁରୁଷ ନଥିବେ, ଏପରି ସ୍ଥଳେ ହିଁ ସ୍ତ୍ରୀମାନଙ୍କର ସତୀତ୍ୱ ବଜାୟ ରହେ ।"

ନାରୀମାନେ ପରପୁରୁଷଗତା ହେଲେ ବର୍ଣ୍ଣଶଙ୍କର ସନ୍ତାନ ଜନ୍ମ ହୋଇଥାନ୍ତି । ନାନାଦି ଯୌନ ବ୍ୟାଧି ଶରୀରରେ ପ୍ରବେଶ କରି ନିଜର, ସ୍ୱାମୀର ଓ ସନ୍ତାନମାନଙ୍କର ଭବିଷ୍ୟତ ଦୁଃଖମୟ କରେ । କାରଣ, କେଉଁ ପୁରୁଷଠାରେ କି ପ୍ରକାର ଯୌନବ୍ୟାଧି ଅଛି ତାହା ସମ୍ପୂର୍ଣ୍ଣ ଅଗୋଚର । ଏଣୁ ଆମ୍ଭେମାନେ ଗୃହଲକ୍ଷ୍ମୀ-ମାନଙ୍କୁ ପରାମର୍ଶ ଦେଉଁ, ସେମାନେ ନିମ୍ନଲିଖିତ ବିଷୟ ପ୍ରତି ସାବଧାନ ରହିବେ ।



୧ । କୌଣସି ପୁରୁଷ ରୂପର ପ୍ରଶଂସା କଲେ ତା'କୁ "ରୂପଜୀଅଣୀ" କହନ୍ତି ଏବଂ ସେ ନାରୀର ପ୍ରଧାନ ଶତ୍ରୁ ଅଟେ ।

୨ । ଯେଉଁ ପୁରୁଷ ପରଦାର କରେ, ସେ ମୁଖରେ ଯେତେ ମିଠା କଥା କହୁଲେ ମଧ୍ୟ ଅନ୍ତରରେ ସେହି ପରଦାରକୁ ଘୃଣା ଚକ୍ଷୁରେ ଦେଖେ । ମନେ ମନେ କହେ; "ଏଇଟା ବ୍ୟଭିଚାରିଣୀ କୁଳଟା," କିନ୍ତୁ ଯେଉଁ ପରଦାରକୁ ସେ ବଶ କରିବାକୁ ଯାଇ ଅକୃତକାର୍ଯ୍ୟ ହୁଏ ଓ ଅପମାନ ପାଏ, ସେଠାରେ ନାୟିକ ସେ ରମଣୀ ପ୍ରତି ମନେ ମନେ ଏହି ଭାବ ପୋଷଣ କରେ, "ଧନ୍ୟରେ ସତୀ ସାଧ୍ୱୀ ରମଣୀ, ତୋତେ ଶତ ଧନ୍ୟବାଦ ।"

୩ । ଅଜଣା ଅଶୁଣା ଲୋକ ପରିଚିତ ହେବାକୁ ଚେଷ୍ଟାକଲେ ତା' ସହିତ ସମ୍ପର୍କ ରଖିବ ନାହିଁ ।

୪ । ତୀର୍ଥ, ଯାତ୍ରା, ମେଳା, ମହୋତ୍ସବ ଆଦି ଦେଖିବାକୁ ଗଲେ ଅନ୍ୟ ପୁରୁଷ ନିକଟରେ ଶୁଆବସା କରିବ ନାହିଁ ।

୫ । ନିଜର ଦେବରମାନଙ୍କୁ ଥଟ୍ଟା କରିବା ପାଇଁ ପ୍ରଶ୍ରୟ ଦେବ ନାହିଁ । କାରଣ ସେମାନେ ସାନ ଭାଇ ତୁଲ୍ୟ ଅଟନ୍ତି ।

୬ । କୌଣସି ଲୋକକୁ ଅପାଙ୍ଗ ଦୃଷ୍ଟି ପକାଇବ ନାହିଁ କିମ୍ବା କୁଳପଡ଼ ପରଆଡ଼ୁ ଚୁହିଁବ ନାହିଁ । ତଦ୍ୱାରା ଭ୍ରଷ୍ଟା ବୋଲି ଲମ୍ପଟୀ ପୁରୁଷ ସନ୍ଦେହ କରେ ।

୭ । କଥାରେ ଅଛି—ପୁଅ ବେଇଥିଲେ ଓରେଇ ଗୃଲ୍ ।
ଗହଣା ନାଇଲେ ଢୋରେଇ ଗୃଲ୍ ॥





ନିଜର ସାମର୍ଥ୍ୟ ଓ ରୁଚି ଅନୁସାରେ ବସ୍ତ୍ରାଳଙ୍କାର ଭୂଷିତ ହେବା ପ୍ରତ୍ୟେକ ନାରୀର ଅବଶ୍ୟ କର୍ତ୍ତବ୍ୟ, କିନ୍ତୁ ତାହା ବୋଲି "ମୁଁ ଏପରି ଅଳଙ୍କାର ନାଇଛି, ଏହା ଅନ୍ୟ ପୁରୁଷମାନେ ଦେଖନ୍ତୁ," ଏଥି ପାଇଁ ଦେହରୁ ଲୁଗା ଖସେଇ ଦେବା, ଇତ୍ୟାଦି ଦେଖେଇହେବା ଭାବ କୁଳଟାର ପରିଚାୟକ ଅଟେ ।

୮ । ନିଜର ସ୍ୱାମୀ ସଙ୍ଗେ ବୈଷୟିକ, ସାମାଜିକ, ପାରିବାରିକ ବା ଯୌନତାତ୍ତ୍ୱିକ, କୌଣସି ବିଷୟରେ ମତଭେଦ ହେଲେ, ଖୋଲଖୋଲି ଭାବରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ କଥାଟାର ଆଲୋଚନା ସମାଲୋଚନା କରି ମେଣ୍ଟାଇ ଦେବା ଉଚିତ । ଅଯଥା ସ୍ୱାମୀ ଉପରେ ଈର୍ଷା ଭାବ ପୋଷଣ କରିବା ଉଚିତ ନୁହେଁ । ଏଦ୍ୱାରା ପୁରୁଷ ବେଶ୍ୟାସକ୍ତ ଓ ସ୍ତ୍ରୀ ପରପୁରୁଷଗତା ହେବାର ଯଥେଷ୍ଟ ସମ୍ଭାବନା ।

୯ । ବିନା କାରଣରେ ସଦର ଦରଜାରେ ଠିଆ ହୋଇ ରାସ୍ତାକୁ ଚାହିଁବା କିମ୍ବା କୋଠା ଉପରେ ଠିଆ ହୋଇ ଅନ୍ୟ ପୁରୁଷମାନଙ୍କୁ ଦେଖିବା ଉଚିତ ନୁହେଁ । କାରଣ ତଦ୍ୱାରା ଲମ୍ପଟ ପୁରୁଷ ଭାବେ, "ଏ ନାରୀ କାମାତୁରା, ସାମାନ୍ୟ ଚେଷ୍ଟାରେ ନଷ୍ଟ ହୋଇ ଯାଇବ ।"

୧୦ । ଚାଣକ୍ୟ ( ବାତ୍ସ୍ୟାୟନ ) କହୁଛନ୍ତି—

ଋଣକର୍ତ୍ତା ପିତା ଶତ୍ରୁର୍ମାତା ଚ ବ୍ୟଭିଚାରିଣୀ ।
ଭାର୍ଯ୍ୟା ରୂପବତୀ ଶତ୍ରୁ ପୁତ୍ର ଶତ୍ରୁରପଣ୍ଡିତଃ ॥
ଋଣ କରିଥିଲେ ପିତା ଶତ୍ରୁ ସମ ହୁଏ ।
ମାତା ଦୋଷଚାରିଣୀ ହେଲେ ଶତ୍ରୁ ବୋଲାଏ ॥



ଭାର୍ଯ୍ୟା ସୁନ୍ଦରୀ ହୋଇଲେ ମନେ ସଦା ଡର ।
ପୁତ୍ର ମୂର୍ଖ ହେଲେ ଶତ୍ରୁ ହୁଅଇ ନିକର ॥

ଏହି ଶ୍ଳୋକରୁ ପ୍ରତିପାଦିତ ହେଉଛି ବ୍ୟଭିଚାରିଣୀ ମାତା ସନ୍ତାନ ପକ୍ଷରେ କେତେ ଘୋର କଳଙ୍କର କଥା ।

---

## ଭ୍ରଷ୍ଟା କୁମାରୀର ଆତ୍ମରକ୍ଷା

ଉପରୋକ୍ତ ବିଷୟ ବର୍ଣ୍ଣନା କରିବା ପୂର୍ବରୁ ସତୀଚ୍ଛଦ ବିଷୟରେ କେତେକ କଥା କହିଲେ, ବିଷୟଟି ଅପ୍ରାସଙ୍ଗିକ ହେବ ନାହିଁ ।

ସତୀଚ୍ଛଦ ଯେ କୁମାରୀର ପ୍ରକୃତରେ କୁମାରୀତ୍ୱ ବା ଅକ୍ଷତ ଯୋନିତ୍ୱର ଏକମାତ୍ର ବିଶ୍ୱାସ ଯୋଗ୍ୟ ଲକ୍ଷଣ, ଏକଥା ସବୁ ଦେଶରେ ସବୁ ସମାଜରେ ପୂର୍ବକାଳରୁ ଚଳି ଆସୁଅଛି । ଏହି ସତୀ-ଚ୍ଛଦ ବିଷୟ ନେଇ ବହୁ ନାରୀମାନଙ୍କ ସୁଖସ୍ୱପ୍ନ ଚିରଦିନ ପାଇଁ ନଷ୍ଟ ହୋଇଅଛି । ପ୍ରଥମ ସହବାସ ବେଳେ ପୁରୁଷ ଏହାର ସନ୍ଧାନ ନ ପାଇ ସ୍ତ୍ରୀକୁ ଭ୍ରଷ୍ଟା ବୋଲି ପରିତ୍ୟାଗ କରିଅଛି । କେତେ ବିବାହ ବିଚ୍ଛେଦ ଘଟିଅଛି ଏବଂ ନାରୀ କେତେ ଅତ୍ୟାଚାର ସହ୍ୟ କରିଅଛି । କୁମାରୀକନ୍ୟାର ପ୍ରଥମ-ସ୍ୱାମୀ-ସଂସର୍ଗ ସମୟରେ ସତୀଚ୍ଛଦ ଛିଣ୍ଡି ଯିବା-ଯୋଗୁ ରକ୍ତପାତ ହୁଏ ଓ ସେ ଅସ୍ପଷ୍ଟ ଆର୍ତ୍ତନାଦ କରି ଉଠେ । ଏହା ହିଁ ହେଲା ତା'ର କୁମାରୀତ୍ୱ ପରୀକ୍ଷାର ପ୍ରଧାନ ବିଷୟ ।

ଏପରି ମଧ୍ୟ ଅନେକ ସ୍ଥଳେ ଜଣା ଯାଇଅଛି, ଦୁଷ୍ଟା ଓ ଭ୍ରଷ୍ଟା କୁମାରୀଗଣ ପ୍ରଥମ-ସ୍ୱାମୀ-ସଂସର୍ଗ ସମୟରେ ଜଙ୍ଘ ଦୁଇଟିକୁ ଚାପିରଖି





ଭୟ-ବ୍ୟାକୁଳ ଅଭିନୟ କରି କିଛିକ୍ଷଣ ପାଇଁ ସ୍ୱାମୀ ସଙ୍ଗେ ଯଥାମତ ଧସ୍ତାଧସ୍ତି କରନ୍ତି । ପରଦିନ ସକାଳେ ଗୋପନରେ ନିଜର ହାତ ବା ପାଦ ଅଙ୍ଗୁଳିକୁ କାଟି ରକ୍ତ ବାହାର କରି ଜଙ୍ଘସନ୍ଧି ଲୁଗାରେ ଲଗାଇ ଦେଇଥାନ୍ତି । ଏହା ଦ୍ୱାରା ସ୍ତ୍ରୀ ଯେ ଭ୍ରଷ୍ଟା, ସ୍ୱାମୀ ସହଜରେ ସନ୍ଦେହ କରି ପାରେ ନାହିଁ ।

ଅହୁର ମଧ୍ୟ ଭ୍ରଷ୍ଟା କୁମାରୀ ବିବାହର କିଛିଦିନ ପୂର୍ବରୁ ସ୍ୱାମୀ ମନୋରଞ୍ଜନ କରିବା ଉଦ୍ଦେଶ୍ୟରେ ନାନା ପ୍ରକାର ସଂକୋଚକ ଗୁଣ ସମ୍ପନ୍ନ ଔଷଧ ଦ୍ରବ୍ୟ ଦ୍ୱାରା ଯୋନିନାଳକୁ ସିକ୍ତ କରିବାର ଔଷଧ ବ୍ୟବହାର କରିଥିବା ଶୁଣା ଯାଇଅଛି ।

ଅହୁର ମଧ୍ୟ ପୁରୁଷ ସହବାସ ବ୍ୟତୀତ ଅନ୍ୟ ନାନାପ୍ରକାର କାରଣରୁ କୁମାରୀର ସତୀଚ୍ଛଦ ଛିନ୍ନ ହୋଇଥାଏ । ଯେଉଁ କୁମାରୀର ଗଛଚଢ଼ା, ଦୋଡ଼ସବାରି, ସାଇକେଲ ଚଢ଼ିବା, ପାହାଡ଼ ଉପରକୁ ଉଠିବା ଓ ଡେଇଁବା ଇତ୍ୟାଦିର ଅଭ୍ୟାସ ଥାଏ, ଯେଉଁମାନଙ୍କର ସତୀଚ୍ଛଦ ପତଳା ଥାଏ, ସେମାନଙ୍କର ଏହା ଆଂଶିକ ବା ସଂପୂର୍ଣ୍ଣ ଭାବରେ ଛିଣ୍ଡି ଯାଇଥାଏ । କୌଣସି କୌଣସି ବୈଜ୍ଞାନିକ ବା ଡାକ୍ତର କହନ୍ତି କୁମାରୀର ଧନୁଷ୍ଟଙ୍କାର ବା ହଷ୍ଟିରିଆ ପ୍ରଭୃତି ରୋଗ ହେଲେ ତାହାର ସତୀଚ୍ଛଦ ଛିନ୍ନହୋଇ ଯାଇପାରେ । କୌଣସି କୌଣସି କୁମାରୀ ପୁରୁଷ ସହବାସ ନ କରି ମଧ୍ୟ କାମ ଉତ୍ତେଜନା ବଶତଃ ଯୋନି-ନାଳରେ ଏକାଧିକବାର ଅଙ୍ଗୁଳି ପ୍ରବେଶ କରାଇ, କିମ୍ବା ଲିଙ୍ଗ ଭଳି କୌଣସି ଲମ୍ବାକାର ବସ୍ତୁ ପ୍ରବେଶ କରାଇଲେ ସେଥିରେ ମଧ୍ୟ ସତୀଚ୍ଛଦ ଛିନ୍ନ ହୋଇଯାଇ ଥାଏ ।



ଉପରୋକ୍ତ ସମସ୍ତ ବିଷୟମାନ ବୁଝିସୁଝି ସ୍ୱାମୀ ସ୍ତ୍ରୀକୁ ସତୀ କି ଅସତୀ ବୋଲି ନିର୍ଦ୍ଧାରଣ କରି ପାରନ୍ତି । ଏହା ବିଶେଷ ସତର୍କତାର ସହିତ ଭାବିବାର ବିଷୟ ଅଟେ । କାରଣ ଆଜିକାଲି ବହୁ କୁମାରୀ ସାଇକେଲ ଚଢ଼ା, ଗଛଚଢ଼ା, ଘୋଡ଼ାଚଢ଼ା, ଫୁଟବଲ ଆଦି ନାନାଖେଳ କୌତୁକରେ ଯୋଗଦେବା ହେତୁ ସତୀଚ୍ଛଦ ହରାଇ ବସୁ ଅଛନ୍ତି ।







# ତୃତୀୟ ଅଧିକରଣ

## ଅପ୍ରାକୃତିକ ମୈଥୁନ

It is appaling to see the number of boys–Hindhu, Mohamedan and ,Christian–who begin School ife full of energy and enthusiasm and hope and it physical wrecks. In literally hundreds of cases I have traced this directly to self–abuse sodomy of early marriage.

–MAHATMA GANDHI,

. ( "young-India," 9th December 1926 )

ପ୍ରଥମ 'ଯୌବନରେ ପଦାର୍ପଣ କଲା ମାତ୍ରେ ଦେହରେ ମନରେ ଯେଉଁ ନବଚେତନା ଜାଗିଉଠେ, ସେହି ଆବେଗରେ ତରୁଣ ତରୁଣୀ ଇନ୍ଦ୍ରିୟ ସୁଖ ଲୋଡ଼ନ୍ତି । ଏହି ସମୟରେ ଯୌନ ଉତ୍ତେଜନା ସ୍ୱତଃ ମନରେ ଜାଗ୍ରତ ହୋଇ ଉପଯୁକ୍ତ ପାତ୍ର ଅଭାବରୁ ତାହା ଅସ୍ୱାଭାବିକ ଉପାୟରେ ନାନା ବିଭତ୍ସ ଭାବରେ ବିକାଶ ପାଇଥାଏ । ସ୍ତ୍ରୀ ପୁରୁଷର ସ୍ୱାଭାବିକ ମିଳନ ବ୍ୟତୀତ ଅସ୍ୱାଭାବିକ ଓ କୃତ୍ରିମ ଉପାୟରେ ବୀର୍ଯ୍ୟ ସ୍ଖଳନକୁ ସ୍ୱ-ମୈଥୁନ, ସ୍ୱୟଂମୈଥୁନ, ପାଣିମୈଥୁନ, ଆତ୍ମମୈଥୁନ, ହସ୍ତମୈଥୁନ, ପାଣିବିଳାସନ ପ୍ରଭୃତି ଆଖ୍ୟା ଦିଆଯାଇ ଅଛି । ଏହିବିଷୟରେ ଆମ୍ଭେମାନେ ନିମ୍ନରେ କେତେକ ଆଲୋଚନା କରୁଅଛୁ, ଯାହା ଦ୍ୱାରା କି ପାଠକେ ଏହାର ଉପକାର ଓ ଅପକାର ସମ୍ବନ୍ଧେ କିଛି ଶିକ୍ଷା କରିପାରିବେ ।

—✻—



# ଅପ୍ରାକୃତିକ ମୈଥୁନର ପ୍ରାଚୀନତା

ଅସ୍ମମାନଙ୍କ ଦେଶରେ ଗୋଟିଏ ପ୍ରବାଦ ଅଛି । ମହର୍ଷି ବିଶ୍ୱାମିତ୍ର ଏହି ଅପ୍ରାକୃତିକ ମୈଥୁନର ପ୍ରଚଳନ କରିଥିଲେ ।

ପୁରାଣରେ କେତେ ଗୋଟି କଥା ଅଛି, ଯେଉଁଥିରୁ କି ଅନୁମାନ ହୁଏ ପ୍ରାଚୀନ କାଳରେ ମଧ୍ୟ ଅପ୍ରାକୃତିକ-ମୈଥୁନର ପ୍ରଚଳନ ଥିଲା । ସଂସ୍କୃତ ଶ୍ରୀମଦ୍ଭାଗବତରେ ଅଛି—ରାକ୍ଷସମାନେ ବ୍ରହ୍ମାଙ୍କ ସହିତ ମୈଥୁନ କରିବାକୁ ତାଙ୍କୁ ଗୋଡ଼ାଇଲେ । ଏଣୁ ବ୍ରହ୍ମା ଯାଇ ବିଷ୍ଣୁଙ୍କ ଶରଣ ନେଇ ଥିଲେ ।

ସଂସ୍କୃତ ପଦ୍ମପୁରାଣ ପାତାଳ ଖଣ୍ଡରେ ବର୍ଣ୍ଣିତ ଅଛି—

ସଖୀଲୋକ୍ୟାଙ୍କ ମାୟୟୈଯୌ ମଦନାବେଶ ବିହ୍ୱଳା,
ତସ୍ୟାଃ ପାଣି ଗୃହୀତୈବ ସବୈ କ୍ରୀଡ଼ା ବନାନ୍ତରେ ।

ଶ୍ରୀକୃଷ୍ଣ ଅର୍ଜୁନ ଉପରେ ମୋହିତ ହୋଇ ଗଲେ ଏବଂ ତାହାଙ୍କୁ ରମଣୀ ସଜାଇ କ୍ରୀଡ଼ା କରିଥିଲେ ।

ଆହୁରି ମଧ୍ୟ ବର୍ଣ୍ଣିତ ଅଛି—ଥରେ ଶ୍ରୀକୃଷ୍ଣ ନାରଦଙ୍କୁ ନାରୀ ସଜାଇ ତାଙ୍କ ସହିତ ମଧ୍ୟ କ୍ରୀଡ଼ା କରିଥିଲେ । ବର୍ଷକ ପର୍ଯ୍ୟନ୍ତ ଏହି ବ୍ୟାପାର ଚାଲି ଥିଲା । ଏହା ମଧ୍ୟ ପଦ୍ମପୁରାଣରେ ଲେଖା ଅଛି ।

ବାତ୍ସାୟନଙ୍କ କାମ ସୂତ୍ରରେ ଗୁହ୍ୟ-ମୈଥୁନ ସମ୍ବନ୍ଧେ ମଧ୍ୟ ବର୍ଣ୍ଣନା ଅଛି । ପୁରୁଷ ସହିତ ପୁରୁଷର ତ ଦୂରର କଥା, ଏପରି କି ପୁରୁଷ ସ୍ତ୍ରୀ ସହିତ ଶିତ୍ୱବନୋଦନାର୍ଥେ ଗୁହ୍ୟ-ମୈଥୁନକରଣର ମଧ୍ୟ ବର୍ଣ୍ଣନା ଅଛି—

"ଅଧୋରତଂ ପାମାରଦି ଦାକ୍ଷିଣାତ୍ୟାନାପ"

ଅର୍ଥାତ୍ ଦକ୍ଷିଣ ଦେଶର ସ୍ତ୍ରୀମାନେ ମଧ୍ୟ ଗୁହ୍ୟମୈଥୁନ ରତ ଥିଲେ । ଏଥିରେ ସ୍ପଷ୍ଟ ହୋଇପାରୁଛି ଯେ ବାତ୍ସ୍ୟାୟନଙ୍କ ପୂର୍ବରୁ ଏହାର ପ୍ରଚଳନ ଥିଲା । ମୁସଲମାନମାନେ ଯେତେବେଳେ ଭାରତ ଆକ୍ରମଣ କଲେ, ସେମାନେ ସଙ୍ଗରେ ସେମାନଙ୍କ ସ୍ତ୍ରୀମାନଙ୍କୁ ଆଣି ନଥିଲେ, ଏଣୁ ସେମାନଙ୍କ ମଧ୍ୟରେ ଗୁହ୍ୟମୈଥୁନ ବହୁଳ ଭାବରେ ପ୍ରଚଳିତ ହୋଇଥିଲା । ମୁସଲମାନମାନଙ୍କ ପରେ ଇଉରୋପୀୟ ଜାତି ବିଶେଷତଃ ବ୍ରିଟିଶ ଜାତି ମଧ୍ୟ ଏହି କୁକର୍ମରେ ଲିପ୍ତ ଥିଲେ । ଏହାପରେ କ୍ରମେ ଏହାର ବହୁଳ ପ୍ରସାର ହୋଇଅଛି ।



## ସଭ୍ୟ ମନୁଷ୍ୟ ଓ ଜୀବଜନ୍ତୁ ମଧ୍ୟରେ ସ୍ୱମୈଥୁନ

ଯୌବନ ବିକାଶ ହେଲା ପରେ ତରୁଣ ଓ ତରୁଣୀମାନଙ୍କ ମଧ୍ୟରେ ଦୈହିକ ମିଳନ ହେବାରେ ବାଧାଥିଲେ, ସେମାନେ ଯୌନ-ତାଡନାରେ ସ୍ୱମୈଥୁନରେ ବ୍ୟାପୃତ ହୋଇଥାନ୍ତି । ଯେଉଁ ପୁରୁଷ ବା ଯେଉଁ ନାରୀର ଯୌନ ସଂଯୋଗ କରିବାର ସ୍ୱାଭାବିକ ପଥ ବନ୍ଦଥାଏ ସେହିମାନେ ହିଁ ଅସ୍ୱ ମୈଥୁନରେ ପ୍ରବୃତ୍ତ ହୋଇ ଇନ୍ଦ୍ରିୟ ସୁଖ ପାଇବାରେ ଅଭ୍ୟସ୍ତ । ଏହି କୃତ୍ରିମ ଯୌନ ତାଡ଼ନା ତେଜ ଅନାଦି କାଳରୁ ସବୁ ଜାତି ଓ ସବୁ ଦେଶ ମଧ୍ୟରେ ଗୋପନରେ ଚଳି ଆସୁଅଛି । ଏହା ଯେ କେବଳ ମନୁଷ୍ୟ ଜାତି ଭିତରେ ଆବଦ୍ଧ ତାହା ନୁହେଁ । ଜୀବ, ଜନ୍ତୁ, ପଶୁ, ପକ୍ଷୀ ମଧ୍ୟରେ ମଧ୍ୟ ଏହିପରି ଭାବରେ ଯୌନତୃପ୍ତିର ଦୃଷ୍ଟାନ୍ତ ବିରଳ ନୁହେଁ । ମାଙ୍କଡ଼, ଘୋଡ଼ା,



ହାତୀ, କୁକୁର ଓ ପାରା ପ୍ରଭୃତି ସ୍ୱାଭାବିକ ମିଳନ ଅଭାବରେ ପ୍ରାୟ ସ୍ୱମୈଥୁନ ଦ୍ୱାରା କାମ ତୃଷ୍ଣା ନିବାରଣ କରନ୍ତି ।



## ସ୍ୱମୈଥୁନ ଅଭ୍ୟାସ କାହିଁକି ହୁଏ ?

କେତେକ ଅବିବାହିତ ଯୁବକ ଯୁବତୀ ସଂଯମ ରକ୍ଷା ନ ପାରି ଯୌବନଉତ୍ତେଜନାରେ ଉତ୍ତେଜିତ ହୋଇ କାମବେଗ ସମ୍ଭାଳି ପାରନ୍ତି ନାହିଁ । ଏଣୁ ସେମାନେ ଏହି କୃତ୍ରିମ ମୈଥୁନରେ ମାତି-ଯାନ୍ତି । ବଂଶଗୌରବ ନଷ୍ଟହେବା ଭୟରେ କିମ୍ବା ଯୌନବ୍ୟାଧି ସଂକ୍ରମିତ ହେବା ଭୟରେ କେତେକ ପୁରୁଷ ବେଶ୍ୟାଳୟକୁ ଡରି-କରି ଯା'ନ୍ତି ନାହିଁ । ଅନୁରୂପ ମଧ୍ୟ କେତେକ ନାରୀ ଅବାଞ୍ଛିତ ଗର୍ଭ ହେବା ଆଶଙ୍କାରେ ପୁରୁଷ ସଙ୍ଗକୁ ଡରି ଅବା ସତୀତ୍ୱ ରକ୍ଷା କିମ୍ବା ଲୋକଲଜ୍ଜା ଅପବାଦକୁ ଡରି ଅନ୍ୟ ପୁରୁଷ ସଂସର୍ଗ ନ କରି କାମ ଉତ୍ତେଜନା ଶାନ୍ତି କରିବା ନିମିତ୍ତ ଏହି ଆତ୍ମମୈଥୁନରେ ପ୍ରବୃତ୍ତ ହୋଇଥାନ୍ତି । ଏହା ଛଡ଼ା ବନ୍ଦୀ, ସୈନ୍ୟ, ନାବିକ, ମଠମହନ୍ତ ଧର୍ମାଧିନାୟକ, ପୁରୋହିତ ପ୍ରଭୃତି, ଯେଉଁମାନେ କି ଇଚ୍ଛା ଅନୁସାରେ ସ୍ତ୍ରୀ ସହିତ ମିଳିତ ହୋଇ ପାରନ୍ତି ନାହିଁ, ସେମାନଙ୍କୁ ମଧ୍ୟ ଏହି ହସ୍ତମୈଥୁନ ନିଶା ଧରେ ।



## ଆତ୍ମମୈଥୁନରେ ପ୍ରବୃତ୍ତ ହେବାର କାରଣ ସମୂହ

ଆତ୍ମମୈଥୁନ ସ୍ୱତଃପ୍ରବୃତ୍ତ ହୋଇ ମନୁଷ୍ୟ ମନରେ ଜାଗ୍ରତ ହୋଇଥାଏ । ଗୋଟିଏ ଅତର୍କିତ ମୁହୂର୍ତ୍ତରେ ଓ ଅଜାଣିତ ଭାବରେ ଏହି ଇଚ୍ଛା ଜାଗି ଉଠି କିଶୋର କିଶୋରୀମାନଙ୍କୁ ଆବେଶ କରି





ହୋଏ । ପୁରୁଷ ୧୪ ବର୍ଷଠାରୁ ୨୧ ବର୍ଷ ଓ ନାରୀ ୧୩।୧୦ ଠାରୁ ୨୦।୨୧ ବର୍ଷ ପର୍ଯ୍ୟନ୍ତ ଅତି ଅଳ୍ପ କାରଣରୁ ସେମାନଙ୍କର ଯୌନ ଉତ୍ତେଜନା ଘଟିଥାଏ । ଏ ସମୟରେ କୁମାର କୁମାରୀମାନେ ସୁନ୍ଦର ଯୁବକ ଯୁବତୀଙ୍କୁ ଦେଖିଲେ କିମ୍ବା ସେମାନଙ୍କ ବିଷୟ ମନରେ ଚିନ୍ତା କରିଲେ, ଉଲଙ୍ଗ ବା ଅର୍ଦ୍ଧ ଉଲଙ୍ଗ ଛବି ସବୁ ଦର୍ଶନ କଲେ, ପ୍ରେମ ପୂର୍ଣ୍ଣ ଉପନ୍ୟାସାଦି ପାଠକଲେ ବା ଜନନେନ୍ଦ୍ରିୟ କୁଣ୍ଡେଇ ଦେଲେ ଅଥବା ଚର୍ମରୋଗ ବଶତଃ ଲିଙ୍ଗରେ ହସ୍ତ ଘର୍ଷଣ କଲେ ପୁରୁଷର ଲିଙ୍ଗ ସତେଜ ହୋଇ ଉଠେ । ନାରୀର ମଧ୍ୟ ଭଗପଥ ଲାଳାୟିତ ହୋଇ ସଂଗମ ଲୋଡ଼ି ଥାଏ । ଏପରି କି ଲୁଗା ସାମାନ୍ୟ ଘସି ହୋଇ ଯିବା ଦ୍ୱାରା ମଧ୍ୟ ପୁରୁଷର ଲିଙ୍ଗୋଦ୍ରେକ ଘଟି ସେ ହସ୍ତ ମୈଥୁନରେ ମାତିଯାଏ । ଏହା ଛଡ଼ା ଘୋଡ଼ା ଚଢ଼ିବା, ସାଇକେଲ ଚଢିବା, ସିଲେଇକଳ ଚଳେଇବା, ତରୁଣ ତରୁଣୀ ମାନଙ୍କର ଘନିଷ୍ଠ ଭାବରେ ମିଳାମିଶା ହେବା, ଏହି ଉପରୋକ୍ତ କାରଣ ଗୁଡ଼ିକ ମଧ୍ୟ ହସ୍ତମୈଥୁନ ପାଇଁ ଉଦ୍‌ବୁଦ୍ଧ କରେ ।

କୃମି ଦୋଷରୁ ମଧ୍ୟ ନରନାରୀ ସ୍ୱ-ମୈଥୁନରେ ପ୍ରବୃତ୍ତ ହୋଇ-ଥାନ୍ତି । ପୁରୁଷର ମଳଦ୍ୱାରରେ କୃମିର ସଲସଲ ଭାବ ଯୋଗୁ କୁଣ୍ଡେଇ ହେବା ଅଭିପ୍ରାୟରେ ହାତ ଯାଇ ଲିଙ୍ଗ ଦେହରେ ଘଷି ହେବାରୁ କାମ ଇଚ୍ଛା ଜାଗ୍ରତ ହୁଏ । ନାରୀର କୃମି କୀଟ ମଳଦ୍ୱାରରୁ ଆସି ଯୋନି ମଧ୍ୟରେ ଆଶ୍ରୟ ଗ୍ରହଣ କରେ ଓ ସଲସଲ ଭାବ ଜାଗ୍ରତ ହୁଏ । ଏଣୁ ସ୍ତ୍ରୀ ସ୍ୱ ମୈଥୁନ କରିବାକୁ ବାଧ୍ୟ ହୁଏ ।

ତରୁଣ ତରୁଣୀମାନଙ୍କର ଚିତହୋଇ ଶୋଇବା ବା ନରମ ବିଛଣାରେ ଶୋଇବା ଉଚିତ ନୁହେଁ । ନରମ ବିଛଣାରେ

# କାମ-ବିଜ୍ଞାନ ୨ୟ



୫

ପେଟର ଅନାବଶ୍ୟକ ମେଦହ୍ରାସର ବ୍ୟାୟାମ ।

(.୨୮୨ ପୃଷ୍ଠା ଦ୍ରଷ୍ଟବ୍ୟ )



ଶେ ଇଲେ ଦେହ ଗରମ ହେ.ଇ କାମଭାବ ଜାଗ୍ରତ ହେବାରେ ସାହାଯ୍ୟ କରେ । ଏହା ଛଡ଼ା ନିଦଭାଙ୍ଗ ଗଲେ ବହୁଶାରେ କୋଡ଼ି ଆସି କର ଶୋଇ ରହିବା ବଦଳକଳାକ । କାରଣ ଏହି ସମୟରେ ଜନନେନ୍ଦ୍ରିୟରେ ଅଧିକ ରକ୍ତ ସଞ୍ଚୟ ହୋଇଥାଏ । ଏଣୁ ଯୌନ ଉତ୍ତେଜନା ଆସି ନରନାରୀ ଆତ୍ମମୈଥୁନରେ ପ୍ରବୃତ୍ତ ହୋଇ ଥାନ୍ତି ।

ଉପଯୁକ୍ତ ବୟସ ହେଲେ ତରୁଣ ତରୁଣୀ ସାମାନ୍ୟ ପରିମାଣରେ ଆତ୍ମମୈଥୁନ କଲେ ଦେହ ମନର ସେପରି କୌଣସି କ୍ଷତି ଘଟେ ନାହିଁ ବୋଲି ଯୌନତତ୍ତ୍ୱବିଦମାନଙ୍କର ଅଭିମତ । କିନ୍ତୁ ଅସୁସ୍ଥ ଲୋକ ରୁଗ୍‌ଣ ବା ଦୁର୍ବଳ ଅବସ୍ଥାରେ, କାମୋଦ୍ରେକ ନ ହୋଇ ମଧ କେବଳ ଭଲ ଲାଗିବା ନିଶାରେ ଯଦି ଏହି ହସ୍ତମୈଥୁନ କାର୍ଯ୍ୟରେ ଅନବରତ ଲାଗି ରହେ, ତେବେ ତାହାର ପୁରୁଷତ୍ୱ ହାନି ଓ ସ୍ୱାସ୍ଥ୍ୟ ନାଶ ଅବଶ୍ୟମ୍ଭାବୀ, ଏଥିରେ ଆଉ ସନ୍ଦେହ ନାହିଁ । ପୁଣି ସବୁଠାରୁ ବେଶୀ କ୍ଷତି ହୁଏ, ଯଦି ଏହି ହସ୍ତମୈଥୁନ ସଙ୍ଗେ ଥାଏ ଅନୁଶୋଚନା ଓ ଦୁଶ୍ଚିନ୍ତା ।



## ରମଣୀର ସ୍ୱମୈଥୁନ

ବହୁ ଦିନରୁ ଲୋକମାନଙ୍କର ଧାରଣା ଅଛି ଯେ, ଆତ୍ମମୈଥୁନ ଆଦି କାର୍ଯ୍ୟ କେବଳ ପୁରୁଷମାନଙ୍କ ମଧ୍ୟରେ ଅବଦ୍ଧଥାଏ । ସ୍ତ୍ରୀମାନେ ଏଥିରେ ପ୍ରବୃତ୍ତ ହୁଅନ୍ତି ନାହିଁ । କିନ୍ତୁ ଆଧୁନିକ ଯୌନ-ଚିକିତ୍ସକ ଓ ଯୌନ-ବିଶାରଦମାନେ ବ୍ୟାପକ ଭାବରେ ଅନୁସନ୍ଧାନ କରି ସେ ଧାରଣା ଯେ ଭିତ୍ତିହୀନ, ଏହା ପ୍ରମାଣ କରି ଅଛନ୍ତି ।

ପ୍ରକୃତ ପକ୍ଷରେ ଏହି ଗୋପନ ଅଭ୍ୟାସଟି ନାରୀ ଓ ପୁରୁଷ ମଧ୍ୟରେ ସମ ଭାବରେ ପ୍ରଚଳିତ । ତଥାପି ପୁରୁଷ ତୁଳନାରେ ଏହି କଦର୍ଯ୍ୟ ଅଭ୍ୟାସ କରିବାରେ ନାରୀ ସଂଖ୍ୟା ଖୁବ୍ କମ୍ ବୋଲି ସମସ୍ତଙ୍କର ବିଶ୍ୱାସ । ଶ୍ରୀମତୀ ଡେଭିସ୍ ୧୧୮୩ ଜଣ ସ୍ତ୍ରୀଲୋକମାନଙ୍କର ମଧ୍ୟରେ ଧାରାବାହିକ ଭାବରେ ଅନୁସନ୍ଧାନ କରି ଆବିଷ୍କାର କରି ଅଛନ୍ତି ଯେ ସେଥି ମଧ୍ୟରୁ ୯୨୧ ଜଣ ସ୍ତ୍ରୀଲୋକ ଆତ୍ମମୈଥୁନରେ ଅଭ୍ୟସ୍ତ ଥିଲେ ।



## ସ୍ୱମୈଥୁନ ଆଦିର ବ୍ୟାପକତା

ତରୁଣ କିଶୋର ଅପେକ୍ଷା ଅଳ୍ପ ବୟସ୍କା କିଶୋରୀ ଏହି ସ୍ୱମୈଥୁନ ରୂପ ଆତ୍ମ-ତୃପ୍ତିରେ ଖୁବ୍ କମ୍ ଅଭ୍ୟସ୍ତା ହୁଅନ୍ତି । କିନ୍ତୁ ବୟଃପ୍ରାପ୍ତା ରମଣୀମାନେ ବିଶେଷତଃ ଅବିବାହିତା ଯୁବତୀମାନଙ୍କ ମଧ୍ୟରେ ଏହି ଆତ୍ମ-ରତି ବେଶୀ ଭାବରେ ପ୍ରଚଳିତ ।

ସ୍ୱମୈଥୁନ, ସମମୈଥୁନ, ପଶୁମୈଥୁନ ପ୍ରଭୃତି କୁପ୍ରବୃତ୍ତି ଗୁଡ଼ିକ ସବୁ ଦେଶର ସବୁ ନର ନାରୀମାନଙ୍କ ମଧ୍ୟରେ ବ୍ୟାପି ଯାଇଅଛି । ତଥାପି ଏହି ସବୁ କାର୍ଯ୍ୟ ଓ ପାପଲୀଳା ଗୋପନରେ କରାଯାଏ ବୋଲି ଏହାର ବ୍ୟାପକତା ସମ୍ବନ୍ଧେ ନିର୍ଭୁଲ ଧାରଣାରେ ଉପସ୍ଥିତ ହେବା କଠିନ । ବିଶେଷତଃ ଲଜ୍ଜାଶୀଳା ନାରୀର ଗୋପନ ଇତିହାସ, ବ୍ୟକ୍ତିଗତ ଜୀବନର ନୀତି ବିରୁଦ୍ଧ ଆତ୍ମରତି ଇତିବୃତ୍ତ ସହଜରେ କୌଣସି ନାରୀର ସ୍ୱୀକାର କରିବାର ସାହସ ନାହିଁ ।





## ବିବାହିତ ଓ ଅବିବାହିତ ନାରୀ ପକ୍ଷେ ସ୍ୱମୈଥୁନର ପାର୍ଥକ୍ୟ ।

ଯେଉଁ ଅବିବାହିତା କନ୍ୟାଗଣ ରମଣସୁଖ ପାଇବାର ସୁଯୋଗ ପାଇ ନାହାନ୍ତି, ସେମାନଙ୍କର କାମାବେଗ ଉଦ୍ରେକ ହେଲେ ଯୋନିନାଳୀର ବାହାର ଅଙ୍ଗ ଗୁଡ଼ିକ ଉତ୍ତେଜିତ ଓ ସଜୀବ ହୁଏ । ଏଣୁ ଭଗାଙ୍କୁର, ମୂତ୍ରନଳୀର ମୁଖ, କ୍ଷୁଦ୍ରୋଷ୍ଠ, ଭଗ-ପ୍ରବେଶ-ପଥ, ଭଗପ୍ରଦେଶ ପ୍ରଭୃତି ସଚେତନ ସ୍ଥାନ ଗୁଡ଼ିକରେ ହସ୍ତ ଦ୍ୱାରା ଘର୍ଷଣ କଲେ କୁମାରୀ କନ୍ୟା ସିହରଣ ସୁଖ ଓ ଚରମାନନ୍ଦ ପାଇବାରେ ସକ୍ଷମ ହୁଏ, କିନ୍ତୁ ଯେଉଁ ବିବାହିତା ନାରୀ, ପୁରୁଷ ସଙ୍ଗ ସୁଖ ଲାଭ କରିଛନ୍ତି, ସେମାନଙ୍କର କାମବେଗ ସମ୍ବାଧର ଗଭୀରତମ ପ୍ରଦେଶରେ ନିବଦ୍ଧ ଥାଏ । ତେଣୁ ସମ୍ବାଧ ବିବରର ସମୁଦାୟ ସ୍ପର୍ଶକ-ଗର୍ଭ ଜରାୟୁ ମୁଖ ପ୍ରଭୃତି ଭିତରେ ଅଙ୍ଗଗୁଡ଼ିକର ଘର୍ଷଣ ନ ହେଲେ ପୂର୍ଣ୍ଣ ଆତ୍ମତୃପ୍ତି ହୁଏ ନାହିଁ । ସୁତରାଂ ସେମାନେ ହିତାହିତ-ଜ୍ଞାନ ଶୂନ୍ୟ ହୋଇ କଠିନ ବସ୍ତୁ ଯୋନି ଭଳି କୋମଳାଙ୍ଗରେ ପ୍ରବେଶ କରାଇ କାମ ଉତ୍ତେଜନାକୁ ଅବସାନ ଘଟାନ୍ତି ।

ଅଧୁର ମଧ୍ୟ ପାଶ୍ଚାତ୍ୟ ରମଣୀମାନଙ୍କ ମଧ୍ୟରୁ ଅନେକ କଦଳୀ, କାକୁଡ଼ି, ଗାଜର, ମୂଳା, ପେନସିଲ, କଲମ, ମହମବତୀ, ଚୁଲବାଡ଼ି, ଏକ ବା ଏକାଧିକ ଅଙ୍ଗୁଳି ପ୍ରଭୃତିର ସାହାଯ୍ୟରେ ଆତ୍ମମୈଥୁନ କରିବାର ଶୁଣାଯାଏ । ପାଶ୍ଚାତ୍ୟ ଦେଶର ଯୌନ-ବିଜ୍ଞାନ ସମ୍ବଳିତ ପୁସ୍ତକମାନଙ୍କରେ ମୁଣ୍ଡର କଣ୍ଟା, ମୌଜା ପ୍ରଭୃତି ବୁଣିବାର କଣ୍ଟା, ଭୁଲ୍ ବଶତଃ ମୂତ୍ର ନଳରେ ପୂରାଇ ଏକାନ୍ତରେ କାମ ଉନ୍ମାଦନା ଉପଶମ କରିବାକୁ ଯାଇ ବହୁ ସ୍ତ୍ରୀଲୋକ ବିପଦରେ





ଘଣ୍ଟାର ଦୃଷ୍ଟାନ୍ତ ଲେଖା ଯାଉଅଛି । ଏହି ଅପ୍ରାକୃତିକ ପ୍ରକୃତି ବର୍ଣ୍ଣିତ ଉପାୟରେ ଅସ୍ୱାଭାବିକ ଦୈହିକ ଯୌନ ମିଳନ ଅପେକ୍ଷା ପୃଥିବୀର ଅନ୍ୟାନ୍ୟ ଦେଶରେ ବହୁଳ ପରିମାଣରେ ଚଳେ ।

Dr. B. S. Talmey, M. D ଙ୍କର LOVE ନାମକ ଗ୍ରନ୍ଥରେ କେତୋଟି ଅଦ୍ଭୁତ ଧରଣର ଅସ୍ୱାଭାବିକର ଦୃଷ୍ଟାନ୍ତ ଦେଇଛନ୍ତି । ସେ କହନ୍ତି, ଚଳିବା ଗାଡ଼ିର ହାତ ଧରିବା ନାହାଁନ୍ତି ଓ ଗାଡ଼ିଭାଗରେ କିମ୍ବା ଟେବୁଲର କୋଣରେ ଯୌନେନ୍ଦ୍ରିୟ ଘର୍ଷଣ ଦ୍ୱାରା କୌଣସି କୌଣସି ସ୍ତ୍ରୀଲୋକ ଉତ୍ତେଜିତା ହୁଅନ୍ତି ଏବଂ ଏହିପରି ଭାବରେ କିଛିକ୍ଷଣ ରହି ଚରମ ତୃପ୍ତି ପାଇଥାନ୍ତି । ଟଲ କିମ୍ବା ତେଲ ଘୋଡ଼ାରେ ବସି ପାଦ ଦ୍ୱାରା ସିଲାଇ କଳ ଚଳାଇଲେ ସ୍ତ୍ରୀମାନଙ୍କ ଉପର "ବୃହତ୍ ଓଷ୍ଠ" ଦୁଇଟି ଘର୍ଷଣ ହୁଏ । ଏହା ଦ୍ୱାରା ବହୁ କୁମାରୀ ବା ବିବାହିଣୀ ନାରୀଙ୍କ କାମୋଦ୍ରେକ ଘଟେ । କିଛିକ୍ଷଣ ଏହିପରି ଦ୍ରୁତ ଭାବରେ ପାଦରେ ସିଲାଇକଳ ଚଳାଇଲେ ସେମାନଙ୍କର ଯୋନିଗ୍ରନ୍ଥିଗୁଡ଼ିକ ସ୍ୱାଭାବିକ ରସସିକ୍ତ ହୋଇ ଉଠେ, ପରିଶେଷରେ ସେମାନେ ଚରମ ସୁଖରେ ଉପନୀତ ହୁଅନ୍ତି, ସିଲାଇ କାର୍ଯ୍ୟ ଅବିରଳ ହେବେ ସେମାନଙ୍କର ଯୌନ ଗ୍ରନ୍ଥିରେ ରୂପ ପରି ଭଗନାଳ ଅତ୍ୟନ୍ତ ପ୍ରଶସ୍ତ, ରସଳିପ୍ତ ଓ ଶିଥିଳ ହୋଇଯାଏ ।

ଜଣେ ଧର୍ମପରାୟଣା ମଧ୍ୟବୟସୀ ରମଣୀ ଯେ କି କେବେ ମନରେ କୌଣସି ପାପବାସନାକୁ ସ୍ଥାନ ଦେଇ ନାହାନ୍ତି କିମ୍ବା ପୁରୁଷ ସମ୍ବନ୍ଧେ କୁଚିନ୍ତା କରି ନାହାନ୍ତି, ସେ ଦିନେ ସକାଳୁ ଉଠି ଡ୍ରେସିଂଟେବୁଲ୍ ଆଇନାରେ ଅଲଗା ଠିଆ ହୋଇ ଅରସିରେ ମୁହଁ



ଦେଖିବା ବେଳେ ତାଙ୍କର ଗୋପନ ଅଙ୍ଗରେ କୌଣସି କଠିନ ବସ୍ତୁର ସ୍ପର୍ଶ ଅନୁଭବ କଲେ । ଏହି ସ୍ପର୍ଶ ଦ୍ୱାରା ତାଙ୍କ ଦେହରେ ସାଧାରଣ ଭାବେ କାମଭାବନା ଜାଗ୍ରତ ହେଲା । ଏହି କଠିନ ବସ୍ତୁଟି ଉପୃରେ ଲାଗିଥିବା ସୂଚ ଛଡ଼ା ଆଉ କିଛି ନୁହେଁ । ସେହି ଦିନଠାରୁ ସେ ରମଣୀ ସକାଳୁ ଉଠି ସେହିପରି ଭାବରେ ସୂଚାରେ ବସ୍ତ୍ରାଚ୍ଛାଦିତ ଯୌନ ଘର୍ଷଣ କରି ଆତ୍ମମୈଥୁନ କରିବାରେ ଅଭ୍ୟସ୍ତା ହେଲେ ।

ଆଉ ଏକ ପ୍ରକାର ସ୍ତ୍ରୀଲୋକ ଅଛନ୍ତି ଯେଉଁମାନେ କି, ନିଜର ଗୋପନ ଅଙ୍ଗକୁ ନିଜ ହସ୍ତରେ ସ୍ପର୍ଶ ନ କରି କିମ୍ବା ବାହ୍ୟ ବସ୍ତୁର ସଂସ୍ପର୍ଶରେ ନ ଆସି କେବଳ ଗଭୀର ଭାବରେ ପୁରୁଷ ସହବାସର ଚିନ୍ତା ଓ କଳ୍ପନା ଦ୍ୱାରା ଆତ୍ମମୈଥୁନ କ୍ରିୟା ସମ୍ପାଦନ କରିଥାନ୍ତି ଏବଂ କୌଣସି ପୁରୁଷ ସଂସର୍ଗରେ ନ ଆସି କେବଳ କଳ୍ପନାବିଳାସ ଦ୍ୱାରା ଯୌନ-ଜୀବନର ଆନନ୍ଦ ଠିକ ଉପଭୋଗ କରିପାରନ୍ତି । ଏହି କାରଣରୁ ପୁରୁଷ ନାରୀ-ବର୍ଜିତ ହୋଇ ରହିବା କଷ୍ଟକର ହୋଇ ଉଠେ । କିନ୍ତୁ ନାରୀ ପକ୍ଷେ ପୁରୁଷ ନ ହେଲେ ସେତେ କଷ୍ଟକର ହୁଏ ନାହିଁ ।



## ପାଣି ମୈଥୁନର ବିଭିନ୍ନ ରୂପ ଓ ପରିଚୟ

ପୁରୁଷ ଓ ରମଣୀର ଯୌନ ଅଙ୍ଗ ଯେତେବେଳେ ଭିନ୍ନଭିନ୍ନ ପ୍ରକୃତିରେ, ଉଭୟଙ୍କର ଯୌନ ଅନୁଭୂତି ଯେତେବେଳେ ବିପରୀତ-ଗାମୀ ଏବଂ ଯୌନ-ମିଳନର ପ୍ରଥା ଯେତେବେଳେ ଭିନ୍ନ ସେତେ-ବେଳେ ପୁରୁଷ ଓ ନାରୀର କାମ ପ୍ରଶମନ ଉପାୟ ଏକ ପ୍ରକାର ହୋଇ





ନ ପାରେ । ନାରୀର ଅସ୍ଵାଭାବିକ ବିଭିନ୍ନ ପ୍ରକାରେ ସାଧିତ ହୋଇ ପାରେ, କାରଣ ତାହାର ଯୌନପ୍ରେରଣା ଓ ଉତ୍ତେଜନାର ଆବେଗ ସର୍ବ ଶରୀରରେ ବ୍ୟାପିଯାଏ । ପୁରୁଷ ପରି କେବଳ କୌଣସି ଏକ ବିଶେଷ ଅଙ୍ଗ ଅର୍ଥାତ୍ ଲିଙ୍ଗ ଉତ୍ତେଜିତ ହୁଏ ନାହିଁ ।

ତାହାର ଦୁଇସ୍ତନ, ଭଗ ଓ ଭଗ ମଧ୍ୟସ୍ଥ ଯନ୍ତ୍ରସମୂହ, ଶରୀର ଏହି ସବୁ ସ୍ଥାନରେ କାମ ବ୍ୟାପି ଯିବାରୁ ସେ ସବୁର ଘର୍ଷଣ, ମର୍ଦ୍ଦନ ଓ ଚୁମ୍ବନ ଇତ୍ୟାଦି ଆବଶ୍ୟକ ହୁଏ । ଏହି ଉତ୍ତେଜନା ନିବାରଣ ପାଇଁ ଯଦି ସେ ପୁରୁଷ ସଙ୍ଗମ ନ ପାଏ ତେବେ ସେ ଅସ୍ଵମୈଥୁନରେ ପ୍ରବୃତ୍ତ ହୁଏ । ଯେଉଁ ଅସତ୍ ଉପାୟରେ ସେ ଅସ୍ଵମୈଥୁନ କରେ, ସେ ସବୁ ବିଷୟ ଉପରେ ବର୍ଣ୍ଣନା କରାଯାଇ ଅଛି ।

ଏହାପରେ ଦୀର୍ଘ ଦିନ ଏ ଅଭ୍ୟାସଟି କଲେ, ଅଥବା ଅବିବାହିତ ନାରୀ ଏହି ବଦଭ୍ୟାସର ବଶବର୍ତ୍ତିନୀ ହେଲେ, ଏଣୁ ସେ ଅଙ୍ଗୁଳି ଘର୍ଷଣରେ ଯଥେଷ୍ଟ ସୁଖ ଲାଭ ନ କରି ପୁରୁଷ ଉପସ୍ଥ ଭଳି କୌଣସି କଠିନତର ଦୀର୍ଘ ବସ୍ତୁର ସଂଘର୍ଷଣ ଦ୍ଵାରା ଚରମ ସୁଖ ପାଇଥାଏ । କିନ୍ତୁ ଏହି ସବୁ କୁଅଭ୍ୟାସ ଯେ କେତେ ମାରାତ୍ମକ ଓ କ୍ଷତିକାରକ ତାହା କହିବା ବାହୁଲ୍ୟ ।



## ଅସ୍ଵାଭାବିକ ସ୍ଵମୈଥୁନର ବିଷମୟ ପରିଣାମ

ଭଗବାନଙ୍କ ସୃଷ୍ଟ ପୁରୁଷର ମାଂସଲ ଉପସ୍ଥ ବ୍ୟତୀତ ଧାତୁ ନିର୍ମିତ ବା କାଷ୍ଠ ନିର୍ମିତ ବା ଏହି ଜାତୀୟ କୌଣସି କଠିନ ଦ୍ରବ୍ୟ ବ୍ୟବହାର ଦ୍ଵାରା ଯୌନ ଗାତ୍ର ବା ମୂତ୍ରନାଳ ଅଘାତ ପାଇ ପାରେ



ବା ମୂତ୍ରଥଳି ଫୋଡ଼ି ହୋଇ ଯାଇପାରେ । ତନ୍ତୁ ଯୌନ-ଚିକିତ୍ସକ ସ୍ତ୍ରୀଲୋକମାନଙ୍କର ପ୍ରସ୍ରାବ ଥଳି ମଧ୍ୟରେ ଏହିସବୁ ଦ୍ରବ୍ୟର ଭଗ୍ନ ଅଂଶ ବା ଖଣ୍ଡ ଅବିଷ୍କାର କରିବାର ବହୁ ପ୍ରମାଣ ଦେଖିବାକୁ ମିଳେ । ଏଥିରୁ ଅନୁମାନ ହୁଏ ଏହିସବୁ ଅଭାବନୀୟ ବସ୍ତୁ ଦ୍ୱାରା ଆତ୍ମମୈଥୁନ ଫଳରେ ଏହି ଟୁକୁରା ବା ଖଣ୍ଡ ମୂତ୍ରନାଳି ମଧ୍ୟରେ ରହିଯିବା ଅସମ୍ଭବ ନୁହେଁ । ଏଣୁ ତରୁଣୀ, କିଶୋରୀ ଓ ପ୍ରବୀଣା କ୍ଷଣିକ ସୁଖ ପାଇବାର ଅଶାନ୍ତର କାଣ୍ଡ-ଜ୍ଞାନ ଶୂନ୍ୟ ହୋଇ ଯେପରି ଏ ଘୋର ଅପକର୍ମ ନ କରନ୍ତି, ଏହାହିଁ ସେମାନଙ୍କୁ ଅମ୍ଭମାନଙ୍କର ଅନୁରୋଧ । ଶୁଣିଲେ ଦେହ ଶିହରି ଉଠିବ ଯେ କୌଣସି କୌଣସି ରମଣୀର ମୂତ୍ରଥଳି ବା ଜରାୟୁ କୋଷରେ ଏହି ଅସ୍ୱାଭାବିକ ପଦାର୍ଥର ଭଗ୍ନାଂଶ ବା ଖଣ୍ଡମାନ ରହିଯାଇ ସଢ଼ାଇ ଦେଇଅଛି । ଯାହା ଫଳରେ କି ସେମାନଙ୍କର ଯୌନେନ୍ଦ୍ରିୟ ଭିତରୁ ସଢ଼ାପଚା ପାଣି ଓ ପୂଜ ଉତ୍ପନ୍ନ ହୋଇ ଶେଷରେ ମୃତ୍ୟୁ ମୁଖରେ ପଡ଼ିଅଛନ୍ତି ।

ଅମ୍ଭମାନଙ୍କର ଏହି ପୁସ୍ତକ ତରୁଣ ତରୁଣୀ, ସ୍ତ୍ରୀ ସ୍ୱାମୀମାନଙ୍କ ପକ୍ଷରେ ପଠନ ନିମନ୍ତେ କରାଯାଇ ଥିବାରୁ, ସେମାନଙ୍କର ଅଭି ମା ବା ଅଭିଭାବକମାନେ କୁମାରୀ କନ୍ୟାମାନଙ୍କୁ ନିମ୍ନଲିଖିତ କେତୋଟି ବିଷୟ ସମ୍ପର୍କରେ ସାବଧାନ ହେବାକୁ ପରାମର୍ଶ ଦେଉଛି —

କୁମାରୀ କନ୍ୟାର ସତୀତ୍ୱର ଚିହ୍ନ ସ୍ୱରୂପ ଏହି ଯେଉଁ ସତୀଚ୍ଛଦ ପରଦାଟି ସ୍ତ୍ରୀଅଙ୍ଗ ଭିତରେ ଥାଏ ତାହା ଯେପରି ଅତୁଟ ରହେ ସେଥି ପ୍ରତି ଲକ୍ଷ୍ୟ ରଖିବା ଉଚିତ । କାରଣ, ମଧୁଶଯ୍ୟା ରାତିର ପ୍ରଥମ ସମ୍ଭୋଗରେ ସ୍ୱାମୀ ଯଦି ସେହି ସତୀଚ୍ଛଦର ସନ୍ଧାନ ନ ପାଏ ତେବେ ସେ ସ୍ତ୍ରୀକୁ ଚରିତ୍ରହୀନା ଭାବି ଦାମ୍ପତ୍ୟ ସ୍ନେହରୁ





ବଞ୍ଚିତ କରେ । ଏପରି କି, ଏହି କାରଣରୁ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଚିରଦିନ ପାଇଁ ବିଚ୍ଛେଦ ଉପସ୍ଥିତ ହୁଏ ।

ଯେ ପୁରୁଷଗତା ହୋଇ କିମ୍ବା ଘୋଡ଼ା, ସାଇକେଲ, ଗଛଚଢ଼ା ଇତ୍ୟାଦି ଅଭ୍ୟାସବଶରୁ ଅବା ହସ୍ତମୈଥୁନ ଆଦି ଅସ୍ୱାଭାବିକ ଉପାୟରୁ କିମ୍ବା କୌଣସି ରୋଗ ହେତୁ ଏହି ପରଦା ଖଣ୍ଡିତ ହୋଇଅଛି, ଏହା ଭାବିବା ଅପରିଣାମଦର୍ଶୀ ସ୍ୱାମୀ ପକ୍ଷରେ ସହଜ ହୁଏ ନାହିଁ । ଏଣୁ ସେ ସ୍ତ୍ରୀକୁ ସନ୍ଦେହ ଦୃଷ୍ଟିରେ ଦେଖନ୍ତି । ଏହି କାରଣରୁ ଆମ୍ଭେମାନେ କୁମାରୀ କନ୍ୟାମାନଙ୍କୁ ପରାମର୍ଶ ଦେଉ ଯେ, ସେମାନେ କେବେହେଁ ଏହି ସ୍ୱମୈଥୁନ ରୂପକ ଦୋଷ ଘୃଣ୍ୟ କଥାକୁ ପ୍ରଶ୍ରୟ ଦେଇ ଯେପରି ସ୍ୱାମୀ ସୁହାଗରୁ ବଞ୍ଚିତ ନ ହୁଅନ୍ତି ।

---

## ବିବାହିତ ଜୀବନ ବ୍ୟର୍ଥ ହୁଏ କାହିଁକି ?

ନାରୀ ସଂଯମ ହରାଇ ଦୀର୍ଘକାଳ ବିକୃତ ଭାବରେ ଏହି ସ୍ୱମୈଥୁନ ଦ୍ୱାରା ଇନ୍ଦ୍ରିୟ ପରିଚାଳନା କଲେ ତାହାର ଫଳ ଭବିଷ୍ୟତରେ ଏପରି ଭାବରେ ଦେଖା ଦିଏ ଯେ, ସେ ସ୍ୱାମୀ ସହବାସରେ ଆଉ ଚରମସୁଖ ପାଇ ପାରେ ନାହିଁ । କାରଣ, ତାହାର ଯୌନ-ଚର୍ମ କୃତ୍ରିମ ଲିଙ୍ଗର ଘର୍ଷଣ ପାଇ ଜଡ଼ତା ପ୍ରାପ୍ତ ହୋଇଥାଏ । ଏଣୁ ପୁରୁଷର ଲିଙ୍ଗ ଘର୍ଷଣରେ ସେ ଚରମ ଆନନ୍ଦ ଅନୁଭବ କରି ପାରେ ନାହିଁ । ଏହି ସବୁ ସ୍ତ୍ରୀଲୋକମାନେ ବିବାହିତ ଜୀବନରେ କେବଳ କର୍ତ୍ତବ୍ୟ ଅନୁରୋଧରେ ଏବଂ ନିଜର କାମତୃଷ୍ଣା ଜାଗ୍ରତ କରିବାର ଉପକରଣ ହିସାବରେ ସ୍ୱାମୀ ସହବାସ କରନ୍ତି, କିନ୍ତୁ, କାମତୃଷ୍ଣା ମେଣ୍ଟାଇବା ଇଚ୍ଛାରେ ନୁହେଁ । ସ୍ୱାଭାବିକ



ଲିଙ୍ଗ ଦ୍ୱାରା ଏମାନଙ୍କର ଚରମ ତୃପ୍ତିର ଦୂରରେ କଥା, ପୁଲକ ଓ ସିହରଣ ପର୍ଯ୍ୟନ୍ତ ଆସେ ନାହିଁ । କଠିନ ଦ୍ରବ୍ୟ ଘର୍ଷଣ ଦ୍ୱାରା ଯୋନିସ୍ଥ ସ୍ନାୟୁଗୁଡ଼ିକ ଅନୁଭୂତି ହୀନ ହୋଇ ଜଡ଼ ପଦାର୍ଥରେ ପରିଣତ ହୋଇଥାଏ । ଏଣୁ ସେମାନଙ୍କର ଦାମ୍ପତ୍ୟ ଜୀବନର ସ୍ୱର୍ଗୀୟ ସୁଖ, ଆଶା ଓ ଆନନ୍ଦ ଦୁଃଖ ସାଗରରେ ବୁଡ଼ିଯାଏ ।

ଅନେକ ସ୍ଥଳରେ ଏପରି ଦେଖାଯାଇ ଅଛି ଯେ, ବହୁ ବିବାହିତା ସ୍ତ୍ରୀ ସ୍ୱାମୀ ସହବାସର ଠିକ୍ ପରେ ପରିତୃପ୍ତ ହେବା ପାଇଁ ତାହାଙ୍କୁ ଆମି ହସ୍ତମୈଥୁନ କାର୍ଯ୍ୟ କରି ତୃପ୍ତି ଲାଭ କରନ୍ତି । ଏହାର କାରଣ ସ୍ୱାମୀର ସହବାସଜନିତ ଅବସାଦ ହେତୁ ଚକ୍ଷୁବୁଜି ଶୋଇ ଆସିଲା ବେଳକୁ, ଏଣେ ତା'ର ସତୀ ସାଧ୍ୱୀ ସ୍ତ୍ରୀ ସ୍ନାନ ଘରକୁ ବା ନଳାମୁହଁକୁ ଯାଇ ଅନ୍ୟ କୌଣସି କୃତ୍ରିମ ଲିଙ୍ଗ ସାହାଯ୍ୟରେ କାମ ଦେବତାର ପୂଜା କରେ । ଏଥିରୁ ସହଜରେ ଅନୁମେୟ ଯେ ଏଭଳି ନାରୀ କୁମାରୀ ଅବସ୍ଥାରେ ଅସ୍ମମୈଥୁନ ପ୍ରକ୍ରିୟାରେ ଖୁବ ଅଭ୍ୟସ୍ତ ଥିଲା ।

ଆଉ ଗୋଟିଏ କଥା ଏଠାରେ ଖୋଲି କହିଲେ ଏହା ଅପ୍ରାସଙ୍ଗିକ ହେବନାହିଁ ବୋଲି ମନେ ହୁଏ । ଧାରଣା-ଶକ୍ତିହୀନ ପୁରୁଷ ସହବାସରେ ସ୍ତ୍ରୀକୁ ଚରମତୃପ୍ତି ଦେଇ ପାରେନାହିଁ । କାରଣ ସହବାସ ସମୟରେ ତା'ର ରେତଃ ଶୀଘ୍ର ସ୍ଖଳିତ ହୋଇଯାଏ । ଏଣୁ ସ୍ତ୍ରୀର ବାସନା ଅତୃପ୍ତ ରହେ । ଏପରି ସ୍ଥଳେ ସ୍ତ୍ରୀ କୁମାରୀ ଅବସ୍ଥାରେ ସ୍ୱମୈଥୁନ କରି ନ ଥିଲେ ସୁଦ୍ଧା ବିବାହିତ ଜୀବନରେ ଏହା କରିବାକୁ ବାଧ୍ୟ ହୁଏ ।





ଆଧୁନିକ ଚିକିତ୍ସକମାନଙ୍କ ମତରେ ମାନସିକ ପ୍ରକ୍ରିୟା ଅବଲମ୍ବନ ନ କରି ପରିମିତ ମାତ୍ରାରେ ନିତାନ୍ତ ଅବଶ୍ୟକ ସ୍ଥଳେ ନାରୀ ପାଣିମୈଥୁନ କଲେ ପୁରୁଷ ଅପେକ୍ଷା ତା'ର କମ କ୍ଷତି ଘଟେ । କିନ୍ତୁ ବିବାହିତ ଜୀବନ ଆରମ୍ଭ ହୋଇ ଗଲେ ହସ୍ତମୈଥୁନ ଅଭ୍ୟାସ ପୁରୁଷ ପକ୍ଷରେ ଛାଡ଼ିଦେବା ସହଜ ହୁଏ କିନ୍ତୁ ସ୍ତ୍ରୀ ସହଜରେ ଛାଡ଼ି ପାରେ ନାହିଁ । ତେଣୁ ଏ ଅଭ୍ୟାସ ସ୍ୱୀକାର ନ କରିବା ହିଁ ଉଚିତ । ଅତିରିକ୍ତ ଭାବରେ ଏହାର ଆଚରଣ କଲେ ଋତୁ ଗୋଳମାଳ, ଋତୁକାଳୀନ ଯାତନା, ଅନିୟମିତ ସ୍ରାବ, ଜରାୟୁର ସ୍ଥାନଚ୍ୟୁତି, ସହବାସ ଜନିତ ପୁଲକର ଅଭାବ, ବାଧକ ପ୍ରଦର, ଘନ ଘନ ମୂତ୍ରତ୍ୟାଗ ଆଦି ଜଟିଳ ରୋଗର ଉତ୍ପତ୍ତି ହୁଏ । ଅନ୍ତର ମଧ୍ୟ ଦୁର୍ଦ୍ଦମନୀୟ କାମପିପାସାକୁ ଜୋର କରି ଚାପି ରଖିବା ଫଳରେ କୌଣସି କୌଣସି ନାରୀ ଶିରଃଶୂଳ୍ୟ, ବିମର୍ଷତା, ହିଷ୍ଟିରିଆ, ମସ୍ତିଷ୍କ ବିକୃତି ପ୍ରଭୃତି ନାନା ପ୍ରକାର ରୋଗଗ୍ରସ୍ତ ହୁଅନ୍ତି । ଏହିସବୁ କାରଣରୁ ରକ୍ଷା ପାଇବାକୁ ହେଲେ ରମଣୀର ଦୃଢ଼ମନ, ବଳ ଓ ସଂଯମ ଅବଶ୍ୟକ । ଏ ଗୁଡ଼ିକ ଥିଲେ ସବୁ ସମସ୍ୟା ସହଜରେ ସମାଧାନ ହୋଇଥାଏ । ଏଣୁ କୁମାରୀମାନେ ପ୍ରଥମ ପୁଷ୍ପବତୀ ହେଲା ଦିନଠାରୁ ବିବାହ ପର୍ଯ୍ୟନ୍ତ ସଂଯମୀ ହେବା ଉଚିତ ।



## ପୁରୁଷର ସ୍ୱମୈଥୁନ

ଋଷି ବାତ୍ସ୍ୟାୟନ ତାଙ୍କ କାମସୂତ୍ରରେ ଲେଖିଛନ୍ତି—

ସ୍ତ୍ରୀ ଯୋଗେଷ୍ୱେବ ପୁରୁଷାଣାମପ୍ୟ ଲବ୍ଧ ବୃତ୍ତୀନାଂ ବିଯୋ-ନିଷୁ ବିଜାତିଷୁ ସ୍ତ୍ରୀ ପ୍ରତିମାସୁ କେବଳୋପମର୍ଦ୍ଦନାଚ୍ଚାଭିପ୍ରାୟନିବୃ-ତ୍ତିର୍ବ୍ୟାଖ୍ୟାତା ।



ଅର୍ଥାତ—କାମଲାଲସାର ପ୍ରଚଣ୍ଡ ବେଗ ସହ୍ୟ ନ ପାରି ସ୍ତ୍ରୀ ଯେପରି ପୁରୁଷ ଅଭାବରେ ଅପ୍ରାକୃତିକ ଉପାୟରେ ମୈଥୁନ କରି କାମଜ୍ୱାଳା ନିବାରଣ କରେ, ସେହିପରି ପୁରୁଷ ମଧ୍ୟ ସ୍ତ୍ରୀ ଅଭାବରେ ବିଯୋନି, ସ୍ତନାନ୍ତର, କକ୍ଷାରତ, ଜାନୁରତ, ପଦତଳ ମଧ୍ୟରତ, ମୁଷ୍ଟିରତ, ମୁଖରତ, ଅଧୋରତ ଆଦି ତଥା ଛକାତ—ଛାଗଳ, ଗୋରୁ, ଘୋଡ଼ାଙ୍କ ଆଦି—ସ୍ତ୍ରୀ ପ୍ରତିମା, ନାସ୍ତ୍ରଭଲ ନିର୍ମିତ ସ୍ତ୍ରୀ ଯୋନି ବିଶିଷ୍ଟ ମୂର୍ତ୍ତି କମ୍ବା ହସ୍ତ ମୈଥୁନ ଆଦି ଦ୍ୱାରା ବୀର୍ଯ୍ୟପାତ କରି କାମାଗ୍ନି ପରିତୃପ୍ତ କରେ ।

ଅଯୋଗ୍ୟ କ୍ଷେତ୍ର ବା ଭୂମିପଟରେ ବୀର୍ଯ୍ୟପାତ କରିବା ଶାସ୍ତ୍ରନିନ୍ଦିତ ଅଟେ । ଏଣୁ ଶାସ୍ତ୍ରରେ ଏହାର କଠିନ ପ୍ରାୟଶ୍ଚିତ୍ତର ବିଧାନ ଅଛି ।

ପୁରୁଷ ଲିଙ୍ଗାଗ୍ର ଅତ୍ୟନ୍ତ କୋମଳ ଓ ଶୀଘ୍ରଗ୍ରାହୀ । ସ୍ତ୍ରୀ ଯୋନି ମଧ୍ୟ ଅତ୍ୟନ୍ତ କୋମଳ, ସ୍ନିଗ୍ଧ, ଆର୍ଦ୍ର ଓ ସୂକ୍ଷ୍ମ । ଏଣୁ ଏ ଉଭୟରେ ସଂଯୋଗ ବିଧାତାର ସୃଷ୍ଟି ଅଟେ ।

ବୀର୍ଯ୍ୟ ଏକ ଶକ୍ତିବର୍ଦ୍ଧକ ପଦାର୍ଥ, ସ୍ତ୍ରୀ ପୁରୁଷର ସଙ୍ଗରେ ଉଭୟଙ୍କର ଶକ୍ତି, ଉତ୍ସାହ ଓ ଆନନ୍ଦ ବଢ଼ିଥାଏ । ପୁରୁଷ ରେତଃରୁ ଏକ ସୂକ୍ଷ୍ମଅଂଶ ନାରୀ ଦେହରେ ଓ ନାରୀ ରଜରୁ ଏକ ସୂକ୍ଷ୍ମ ଅଂଶ ପୁରୁଷ ଦେହରେ ଅଲକ୍ଷ୍ୟରେ ପ୍ରବେଶ କରି ଉଭୟଙ୍କ ସ୍ୱାସ୍ଥ୍ୟ ପକ୍ଷେ ବଡ଼ ଉପକାର କରେ ।

---

## ପୁରୁଷର ସଂହାକାନ୍ତ ସ୍ୱମୈଥୁନ

ପୃଥିବୀରେ ସମାନଭାବରେ ଉଭୟ ହସ୍ତ ତଳ ସ୍ଥାପନ କରି ଉତ୍କଟାସନରେ ଉପବେଶନ ପୂର୍ବକ ବାହୁଯୁଗଳ ମଧ୍ୟରେ ଲିଙ୍ଗକୁ

ରତି ମର୍ଦ୍ଦନ କଲେ ରେତଃ ସ୍ଖଳିତ ହୋଇଯାଏ । ଏହାକୁ ସିଂହା କାନ୍ତ ବୋଲିଯାଏ ।

ପୁରୁଷ ସନ୍ଧରେ ହାତ ପାପୁଲି ବା ଅଙ୍ଗୁଳି ସାହାଯ୍ୟରେ ସ୍ୱେଚ୍ଛାକୃତ ବୀର୍ଯ୍ୟ ନିଃସାରଣକୁ ମୋଟିମୋଟି ପାଣିମୈଥୁନ ବା ହସ୍ତମୈଥୁନ ବୋଲିଯାଏ ।



## ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ସ୍ୱମୈଥୁନକାରୀର ସଂଖ୍ୟା ନିର୍ଣ୍ଣୟ

ଇଂଲଣ୍ଡ ଦେଶରେ ଯୌନବିଜ୍ଞମାନଙ୍କ ମତରେ କୈଶୋର କାଳ ଓ ଯୌବନର ପ୍ରଥମାବସ୍ଥାରେ ( ବିବାହିତ ଜୀବନ ଆରମ୍ଭ ହେବା ପୂର୍ବରୁ ) ଶତକଡ଼ା ପ୍ରାୟ ୯୫ ଜଣ ପୁରୁଷ ପାଣିମୈଥୁନ କରି ଅଛନ୍ତି । ପାଶ୍ଚାତ୍ୟ ଦେଶରେ ବ୍ୟାପକ ଭାବରେ ଅନୁସନ୍ଧାନର ଫଳରେ ଜଣା ଯାଇଅଛି ଶତକଡ଼ା ୭୦ ଠାରୁ ୯୦ ଜଣ ପୁରୁଷ ପ୍ରାୟ ଯେ କୌଣସି ସମୟରେ ଥରେ ହେଲେ ହସ୍ତମୈଥୁନ କରି ଅଛନ୍ତି ! ଯୁକ୍ତରାଷ୍ଟ୍ର ଆମେରିକାର ଜଣେ ବିଖ୍ୟାତ ଯୌନ ଶିକ୍ଷକ କିଶୋରମାନଙ୍କ ମଧ୍ୟରେ ବହୁତ ଚେଷ୍ଟାରେ ପାଣି ମୈଥୁନକାରୀ ମାନଙ୍କର ଗୋଟିଏ ତାଲିକା ପ୍ରକାଶ କରିଛନ୍ତି । ସେ କହନ୍ତି ଶତକଡ଼ା ୯୦ ଜଣ ତରୁଣୀ ହସ୍ତମୈଥୁନ କରିଛନ୍ତି ବୋଲି ତାଙ୍କ ସମ୍ମୁଖରେ ସ୍ୱୀକାର କରିଛନ୍ତି । ଏଥିରୁ ବୁଝାଯାଉଛି ଯେ ସବୁ ଦେଶରେ ପ୍ରାୟ କମ୍ ବେଶୀ ଭାବରେ ଏହା ପ୍ରଚଳନ ଅଛି । ତଥାପି କୌଣସି ସ୍ଥିରମନା ଯୁବକ ଏହି କୁଅଭ୍ୟାସରୁ ମୁକ୍ତ ଥାଇ ପାରେ ।



ଆମ ଭାରତବର୍ଷ ମଧ୍ୟ ଅନ୍ୟ ଦେଶ ସହିତ ସମାନ ତାଳ ଦେଇ ଚାଲିଛି । ଆମ୍ଭମାନଙ୍କ ଦେଶ ଗ୍ରୀଷ୍ମ ପ୍ରଧାନ ଦେଶ । ଶୀତ ପ୍ରଧାନ ଦେଶ ତୁଳନାରେ ଆମର ଏଠାରେ ପିଲାମାନଙ୍କର ଶୀଘ୍ର ଯୌନ ଚେତନା ଆସେ । ଏଣୁ ପାଶ୍ଚାତ୍ୟ ଦେଶ ଅପେକ୍ଷା ଏଠାରେ ଏହି ପାପଟିର ପ୍ରଚଳନ ଅଧିକ ବୋଲି ଅନୁମିତ ହୁଏ ।



## ଅଭାବନୀୟ ଉପାୟରେ ଇନ୍ଦ୍ରିୟ ତୃପ୍ତି

ଯୌନ ଉତ୍ତେଜନାର ନିବୃତ୍ତି ହସ୍ତ ସାହାଯ୍ୟରେ ଯେତେ ବେଳେ ଏତେ ସହଜରେ କରାଯାଇ ପାରେ, ସେତେବେଳେ ନାରୀ ଭଳି ପୁରୁଷର ଏତେ ଅଭାବନୀୟ ବସ୍ତୁର ପ୍ରୟୋଜନ ହୁଏ ନାହିଁ । ତେବେ ଉପାଧାନରେ କଳ୍ପିତ ଉପସ୍ଥକୁ ଘର୍ଷଣ କରି କିମ୍ବା ଅନ୍ୟ କୌଣସି କୃତ୍ରିମ ଉପାୟରେ ତୃପ୍ତି ଲାଭ କରିବା ସମସ୍ତ ସମୟରେ ଶୁଣିବାକୁ ମିଳେ । ହସ୍ତମୈଥୁନ ବା ଅନ୍ୟ ଯେ କୌଣସି ଅସ୍ୱାଭାବିକ ଉପାୟରେ ରେତଃପାତ ଅତିମାତ୍ରା ହେଲେ ଅନିଷ୍ଟକର ଏଥିରେ ସନ୍ଦେହ ନାହିଁ ।

## ପରିମିତ ହସ୍ତମୈଥୁନ ସେତେ ଅନିଷ୍ଟକାରୀ ନୁହେଁ

ଯୌବନାବସ୍ଥା ଆରମ୍ଭ ହେଲେ ମନରେ କାମପ୍ରବୃତ୍ତି ଜାଗ୍ରତ ହୋଇଥାଏ । ଭୋକ ହେଲେ ଖାଦ୍ୟ ଖାଇବାକୁ ଯେପରି ମନ ଖୋଜେ, ଯୌନୋଦ୍ରେକ ହେଲେ ସେହିପରି ଯୌନ-ସଂଯୋଗ କରିବାକୁ ଶରୀର ବ୍ୟାକୁଳ ହୁଏ । ଏଣୁ ଏହାକୁ ଯୌନ କ୍ଷୁଧା

ହୋଇଯାଏ । ଅସଂଯମୀ ଲୋକ କୌଣସି ନାରୀର ସହବାସ ନ ପାଇଲେ ଏହି ହସ୍ତମୈଥୁନ ଦ୍ୱାରା ଯୌନକ୍ଷୁଧା ମେଣ୍ଟାଇ ଥାଏ ।

ଏହି ହସ୍ତମୈଥୁନ ସ୍ୱରୂପ ଘୃଣ୍ୟ କାର୍ଯ୍ୟକୁ ଡାକ୍ତରମାନେ ସମର୍ଥନ କରନ୍ତି ନାହିଁ । ସେମାନେ କହନ୍ତି, ଭବିଷ୍ୟତରେ ଏହା ଦ୍ୱାରା ଯୌନବିକଳତା, ଯୌନଦୁର୍ବଳତା, ଧାତୁକ୍ଷୀଣତା, ଇନ୍ଦ୍ରିୟ ଶିଥିଳତା ପ୍ରଭୃତି ରୋଗ ଜନ୍ମି ସବୁ ଯୌବନ ସୁଖ ନଷ୍ଟ କରିଦିଏ ।



## ଅତି ସଂଯମର ପରିମାଣ

ଆଜିକାଲି ଡାକ୍ତରମାନେ ବିଜ୍ଞାନ ସମ୍ମତ ଭାବରେ ପ୍ରମାଣ ଦେଖାଇଛନ୍ତି ଯେ ଯୌବନର ଦୁର୍ଦ୍ଦମନୀୟ ବେଗକୁ ମଝିରେ ମଝିରେ ପ୍ରଶମିତ କରିବା ସ୍ୱାସ୍ଥ୍ୟ ପକ୍ଷରେ ଉପଯୋଗୀ । ନିତାନ୍ତ ଯଦି ସ୍ତ୍ରୀସମ୍ଭୋଗ କରିବାକୁ ସମୟ ଓ ସୁବିଧା ନ ଘଟେ ତେବେ ହସ୍ତ ମୈଥୁନର ସାହାଯ୍ୟ ଗ୍ରହଣ କଲେ, ତାହା ସ୍ୱାସ୍ଥ୍ୟକର ନ ହେଲେ ମଧ୍ୟ ସେପରି କିଛି ଅନିଷ୍ଟର ଆଶଙ୍କା ନ ଥାଏ । ଯୌବନର ଯୌନବେଗକୁ ବଳପୂର୍ବକ ଚାପି ରଖିବା ଖୁବ୍ କଠିନ କାର୍ଯ୍ୟ । ଅତି ସଂଯମୀ ହୋଇ ଅତି କଷ୍ଟରେ ଦୁର୍ଦ୍ଦାନ୍ତ ଯୌନ କ୍ଷୁଧାକୁ ଦେହମନରେ ଚାପି ରଖିବା ଫଳରେ ଅନେକ ସ୍ଥଳେ ସ୍ନାୟୁରୋଗ, ସ୍ନାୟବିକ ଦୁର୍ବଳତା ଓ ବିମର୍ଷତା ରୋଗ (Melancholia) ପ୍ରଭୃତି ଜାତ ହୁଏ । ଆହୁରି ମଧ୍ୟ ବଳପୂର୍ବକ ଆତ୍ମସଂଯମ ଫଳରେ ପ୍ରକୃତିର ନିୟମ ଅନୁସାରେ ବେଶୀ ସ୍ୱପ୍ନଦୋଷ ହେବାର ଦେଖାଯାଏ । ଏହି ସ୍ୱପ୍ନଦୋଷ ଯେ ହସ୍ତମୈଥୁନ ଅପେକ୍ଷା ବେଶୀ କ୍ଷତିକାରକ ଏକଥା କୌଣସି ଡାକ୍ତର ଅସ୍ୱୀକାର କରିବେ ନାହିଁ । ଏହିସବୁ କାରଣରୁ



ଜନ୍ ହଣ୍ଟର, ଡଃ- ଚେନନ୍‌ବ୍ୟାନ୍ ପ୍ରଭୃତି ପାଶ୍ଚାତ୍ୟ ପଣ୍ଡିତମାନେ ପରିମିତ ହସ୍ତମୈଥୁନକୁ ସମର୍ଥନ କରିଅଛନ୍ତି ।

ଅନ୍ୟ ଜଣେ ବିଜ୍ଞ ଯୌନବିତ୍ ଯେମସ୍ ପାଗେଟ୍‌ଙ୍କର ଗୋଟିଏ ସ୍ପଷ୍ଟ ଉକ୍ତି ଏଠି ଦେଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

"Masturbation does neither more nor less harm than sexual intercourse practised with the same frequency, and in the same condition of general health age, and circumstances. ( Clinical Lectures and Essays 1875 )

"ଅର୍ଥାତ୍, ବୟସ, ସ୍ୱାସ୍ଥ୍ୟ ଓ ଅବସ୍ଥା ଭେଦରେ ସବସ୍ଥରେ ଯୌନମିଳନ ଦ୍ୱାରା ସାଧାରଣ ସ୍ୱାସ୍ଥ୍ୟର ଯେତିକି ଓ ଯେପରି ଅନିଷ୍ଟ ହୋଇପାରେ ତାହାଠାରୁ ବେଶୀ ବା କମ୍ ଅନିଷ୍ଟ ଏହି ହସ୍ତମୈଥୁନ ଦ୍ୱାରା କଦାପି ହୋଇ ପାରେ ନା ।"

ଯେ ଯାହା ହେଉ, ଯେ କୌଣସି ଡାକ୍ତର ଯାହା କୁହନ୍ତୁ, ତରୁଣ ତରୁଣୀମାନେ ଅବିବାହିତା ଅବସ୍ଥାରେ ଯଦି ସଂଯମ ଅଭ୍ୟାସ କରିଥିବେ ତେବେ ତା'ର ସୁଫଳ ବିବାହିତ ଜୀବନରେ ପାଇବେ । ସେତେବେଳେ ରେତଃ ଶୀଘ୍ର ସ୍ଖଳନ ନ ଘଟି ସ୍ୱାମୀ ସ୍ତ୍ରୀ ଉଭୟେ ରମଣରେ ଚରମ ତୃପ୍ତି ପାଇ ପାରିବେ । ଯେତେ ସହବାସ କଲେ ମଧ୍ୟ ସ୍ୱାସ୍ଥ୍ୟ ଭଙ୍ଗ ହେବ ନାହିଁ । କୌଣସି ସଂକ୍ରାମକ ରୋଗ ସହଜରେ ଆକ୍ରମଣ କରିବ ନାହିଁ ଓ ଦମ୍ପତିଙ୍କର ବର୍ତ୍ତମାନ ଅଳ୍ପ ଭବିଷ୍ୟତ ମାଧୁର୍ଯ୍ୟପୂର୍ଣ୍ଣ ହେବ ।





ଏ କଥାଟି ସର୍ବଦା ମନେ ରଖିବା ଉଚିତ ଯେ, ପାଣିମୈଥୁନ ବା ଅସ୍ୱାଭାବିକ ମୈଥୁନ ଦ୍ୱାରା ସ୍ତ୍ରୀଲୋକ ଅପେକ୍ଷା ପୁରୁଷର କ୍ଷତି ବେଶୀ, ତା'ର କାରଣ ହେଉଛି, କାମର ଉଦ୍ରେକ ହୋଇ ସ୍ୱାଭାବିକ ପୁରୁଷ ସହବାସ ଦ୍ୱାରା ହେଉ କିମ୍ବା ଅସ୍ୱାଭାବିକ ମୈଥୁନ ଦ୍ୱାରା ହେଉ, ଶେଷ ପର୍ଯ୍ୟନ୍ତ ସ୍ତ୍ରୀଲୋକମାନଙ୍କର ଯୋନିନାଳୀରେ ଘର୍ଷଣ ଦ୍ୱାରା ଯେଉଁ ରସ ସ୍ରାବ ହୁଏ ତାହା ଆମମାନଙ୍କର ମୁଖଲାଳ ପରି ଅସାର ଜିନିଷ । କିନ୍ତୁ ପୁରୁଷର ବୀର୍ଯ୍ୟ ଯାହାକୁ ଆମ ପୁରାଣ ଶାସ୍ତ୍ର ବ୍ରହ୍ମ ବୋଲି ବର୍ଣ୍ଣନା କରିଅଛି, ସହସ୍ର ବିନ୍ଦୁ ରକ୍ତରେ ଏକ ବିନ୍ଦୁ ରେତଃ ବୋଲି ଡାକ୍ତରମାନଙ୍କର ଯେଉଁ ମତ; ଏପରି ପଦାର୍ଥ କ୍ଷୟ ହୋଇଥାଏ । ପୁନଶ୍ଚ ହସ୍ତମୈଥୁନକାରୀ ଯୁବକ ହଠାତ୍ ଧରା ପଡ଼ିଯାଏ । ତା'ର ମୁହଁରେ ବ୍ରଣ ହୁଏ, ଚକ୍ଷୁ କୋଟରଗତ ହୋଇ, ଚକ୍ଷୁତଳେ କଳା ଦାଗ ପଡ଼େ, ମନରେ ତା'ର ସର୍ବଦା ଉଦ୍‌ବେଗ ପ୍ରକଟିତ ହୁଏ । ଏଣୁ ପୁରୁଷର ଥରେ ହସ୍ତମୈଥୁନ କଲେ ଯେତେ କ୍ଷତି ହୁଏ, ନାରୀର ଜୀବନରେ ସେତିକି କ୍ଷତି ହୋଇପାରେ ।

---

## ହସ୍ତମୈଥୁନର ମାତ୍ରା ବଢ଼ିଯାଏ କାହିଁକି ?

ଦାମ୍ପତ୍ୟ ମିଳନ ପାଇଁ ନାରୀ ଓ ପୁରୁଷ ଦୁହିଁଙ୍କର ଇଚ୍ଛା, ସମ୍ମତି ଓ ସମୟ ଆବଶ୍ୟକ । ଏତେଗୁଡ଼ିଏ କଥା ଏକଜୁଟ ହେଲେ ନାରୀ ଓ ପୁରୁଷ ଯୌନସୁଖ ପାଇଥାନ୍ତି । ଏସବୁ ସୁବିଧା ସବୁ ସମୟରେ ସମସ୍ତେ ମନହେଲେ ମାତ୍ରେ ପାଇ ପାରନ୍ତି ନାହିଁ, କିନ୍ତୁ ଏହି ହସ୍ତ ମୈଥୁନଟି ଯେ କୌଣସି ସମୟରେ, କାହାର ବିନା ସାହାଯ୍ୟରେ, ଅନ୍ୟର ଦୃଷ୍ଟିର ବାହାରେ ଏବଂ ବିନା ପଇସା ଖର୍ଚ୍ଚରେ



ସେମାନଙ୍କୁ କୌଣସି ଉପାୟରେ ଜଣାଇଦେଲେ ଭଲ ଫଳ ହୁଅନ୍ତା ବୋଲି ଆମ୍ଭମାନଙ୍କର ବିଶ୍ୱାସ ।



## ଅପ୍ରାକୃତିକ ମୈଥୁନ ପ୍ରତି ଅଭିଭାବକମାନଙ୍କର ସାବଧାନତା

ହସ୍ତମୈଥୁନାଦି କୁଅଭ୍ୟାସ ପାଇଁ ସନ୍ତାନର ମାତା ପିତାଙ୍କର ଦୋଷ ଓ ତ୍ରୁଟି କିଛି କମ ନୁହେଁ । ଏକଥା ମନେ ରଖିବାର କଥା ଯେ ଗୁପ୍ତେନ୍ଦ୍ରିୟରେ ମଇଳା ଜମିବା କାରଣରୁ ଯାଦୁ କୁଣ୍ଡିଆ ଇତ୍ୟାଦି ସେ ସ୍ଥାନମାନଙ୍କରେ ଉତ୍ପନ୍ନ ହୁଏ । ଯେତେବେଳେ ଏ ଗୁଡ଼ିକ କୁଣ୍ଡାଇ ହୁଏ ସେତେବେଳେ ସାଧାରଣତଃ ଇନ୍ଦ୍ରିୟ ଉତ୍ତେଜିତ ହୋଇଥାଏ । ପରେ ହସ୍ତମୈଥୁନ କରିବା ପାଇଁ ଲୋକର ପ୍ରବୃତ୍ତି ଜାଗ୍ରତ ହୁଏ । ଏଣୁ ଏ ଅଭ୍ୟାସରୁ ନିବୃତ୍ତ ହେବାକୁ ହେଲେ ପୁତ୍ରକନ୍ୟାମାନଙ୍କର ପିତାମାତାମାନେ ନିମ୍ନଲିଖିତ ବିଷୟ ଗୁଡ଼ିକ ପ୍ରତି ଧ୍ୟାନ ଦେବା ଉଚିତ ।

୧—ଛୋଟ ଛୋଟ ପିଲାମାନଙ୍କର ମୂତ୍ରେନ୍ଦ୍ରିୟକୁ ସ୍ନାନବେଳେ ପରିଷ୍କାର କରିଦେବା ଉଚିତ । ଯେପରି କୌଣସି ସ୍ଥାନରେ କୁଣ୍ଡିଆ ଇତ୍ୟାଦି ନ ହୁଏ । ତାହା ହେଲେ ପରିଣତ ବୟସ ପର୍ଯ୍ୟନ୍ତ ତାହାର ଧୌତ କରିବାର ଅଭ୍ୟାସ ହୋଇଯିବ ।

୨—ଦେଖିବାକୁ ମିଳେ ଅନେକ ଅଭିଭାବକ ବାତ୍ସଲ୍ୟ ପ୍ରେମ ପ୍ରଦର୍ଶନାର୍ଥେ ଛୋଟ ଛୋଟ ବାଳକମାନଙ୍କର ମୂତ୍ରେନ୍ଦ୍ରିୟକୁ ହାତ ଲଗାଇ ଖେଳ କରନ୍ତି । ଏହା ଦ୍ୱାରା ପିଲାମାନଙ୍କର





ଗୋଟାଏ ଶ୍ରୀହରଣ ଜାତଗ । କୈଶୋର ଅବସ୍ଥାର ଆରମ୍ଭରେ ଏହି ସୀହରଣ ସେମାନଙ୍କର ପ୍ରକୃତଗତ ହୋଇଯାଇ ସେମାନେ ଯୌନସ୍ପର୍ଶର ଅନୁସନ୍ଧାନରେ-ହେନ୍ତି । ଠିକ୍ ତାହା ପରେ ତରୁଣ ଅବସ୍ଥା ଆସିଲାପରି ସେହି ସୀହରଣ ପୂର୍ବ ସ୍ମୃତିକୁ ଖୋଜି ସେ ହସ୍ତମୈଥୁନରେ ବ୍ୟାପୃତ ହୋଇପାରେ । ଏଣୁ ବାଳକର ଇନ୍ଦ୍ରିୟରେ ଖେଳ୍ କରିବା ସର୍ବଥା ବର୍ଜନୀୟ ।

ଗ—କେହି କେହି ଅଭିଭାବକ ସେମାନଙ୍କର ବଡ଼ ବଡ଼ ବାଳକମାନଙ୍କୁ, ସେମାନଙ୍କର ଗୃହଳବାର ଶକ୍ତି ଥିଲେ ସୁଦ୍ଧା, ସେମାନଙ୍କୁ କାଖେଇ କିମ୍ବା ପିଠିରେ ଲଦିକରି ଆଦରରେ ନେବା ଅଣିବା କରନ୍ତି । ଏହା ଦ୍ୱାରା ବାଳକର ଇନ୍ଦ୍ରିୟକୁ ଘର୍ଷଣ ମିଳିଥାଏ ଓ ସେଥିରେ ଗୋଟାଏ ନବଚେତନା ଜାଗେ । ତାହା ତରୁଣ ଅବସ୍ଥାରେ ହସ୍ତ ମୈଥୁନରେ ପରିଣତ ହୋଇ ପାରେ । ଏଣୁ ବଡ଼ ବଡ଼ ବାଳକମାନଙ୍କୁ କାଖେଇବା, ପିଠିରେ ଲଦିବା ଇତ୍ୟାଦି କାର୍ଯ୍ୟକୁ ଯେତେ ଦୂର ସମ୍ଭବ ଦୂରରେ ରଖା ଯାଇପାରିଲେ ମଙ୍ଗଳ ।

——

## ପଶୁ ମୈଥୁନ

କାମାନ୍ଧ ପୁରୁଷମାନେ ଯୌନ ଉତ୍ତେଜନାରେ ପଡ଼ି କାଣ୍ଡଜ୍ଞାନଶୂନ୍ୟ ହୋଇ କେତେ ନୀଚକାର୍ଯ୍ୟରେ ଯେ ମାତନ୍ତି, ତାହା ଭାଷାରେ କହି ହେବନାହିଁ । ଏ ସଂସାରରେ ଏପରି ହୀନ ଚରିତ୍ର ପୁରୁଷ ମଧ୍ୟ ଅଛନ୍ତି ସେମାନେ ଯୌନସୁଖ ପାଇବା ଆଶାରେ ପଶୁମୈଥୁନ ମଧ୍ୟ କରନ୍ତି । କୁକୁର, ଛେଳି, ଗଧ, ଗୋରୁ, ଏପରି

[ ନଂ: ୮ ]



ସିଦ୍ଧାସନ ( ୩୬୯ ପୃଷ୍ଠା ଦ୍ରଷ୍ଟବ୍ୟ )

[ ନଂ: ୯ ]



ଶୀର୍ଷାସନ ( ୩୮୨ ପୃଷ୍ଠା ଦ୍ରଷ୍ଟବ୍ୟ )

# କାମ-ବିଜ୍ଞାନ ୨ୟ

[ ନଂ: ୧୦ ]



ଜାନୁଶିରାସନ ( ୩୮୦ ପୃଷ୍ଠା ଦ୍ରଷ୍ଟବ୍ୟ )

[ ନଂ: ୧୧ ]



ପାଦାଙ୍ଗୁଷ୍ଠାସନ ( ୩୮୧ ପୃଷ୍ଠା ଦ୍ରଷ୍ଟବ୍ୟ )



ସବୁ ପଶୁ ସେହି ନଷ୍ଟଚରିତ୍ର ପାପୀଙ୍କର ବ୍ୟବହାରରେ ଲାଗେ । ଘୃଣ୍ୟ ପଶୁମୈଥୁନ ସର୍ବୋତଭାବରେ ପରିତ୍ୟାଗ କରିବା ଉଚିତ । ଏହାଦ୍ୱାରା ନାନାପ୍ରକାର କଠିନ ପୀଡ଼ାର ଉତ୍ପତ୍ତି ହୁଏ । ଏପରି କି ଶିଶୁଧନ ପାଇଁ ଯୌନସଂଯୋଗ କରିବାର ଶକ୍ତି ନଷ୍ଟ ହୋଇଯାଏ ।

ସୁଶ୍ରୁତ ଭଳି ପ୍ରାଚୀନ ଗ୍ରନ୍ଥରେ ପଶୁମୈଥୁନର ଅପକାରିତା ସମ୍ବନ୍ଧରେ ଲେଖାଅଛି—

ତର୍ଯିଗ୍ୟୋନାଦ ଯୋନୌଚ ଦୁଷ୍ଟଯୋନୌ ତଥୈବ ଚ ।
ଉପଦଂଶସ୍ତଥା ବାତସ୍ୟ!ଃକୋପଃ ଶୁକ୍ରସ୍ୟ ଚ କ୍ଷୟଃ ।

ଅର୍ଥାତ୍—ଯେଉଁ ପୁରୁଷ ପଶୁଯୋନିରେ ଅଥବା ଦୂଷିତ ଯୋନିରେ ମୈଥୁନ କରେ ତାହାକୁ ଉପଦଂଶ, ବାତରୋଗ ଓ ବୀର୍ଯ୍ୟକ୍ଷୟ ରୋଗ ଆକ୍ରମଣ କରେ ।

ଉପରୋକ୍ତ ଶ୍ଳୋକରୁ ଅନୁମିତ ହୁଏ ସୁଶ୍ରୁତକାଳରେ ମଧ୍ୟ ପଶୁମୈଥୁନର ପ୍ରଚଳନ ଥିଲା ।

ଇଉରୋପ ଓ ଆରବରେ ଏହାର ପ୍ରଚଳନ ଅଧିକ ଥିଲା ବୋଲି ଇଂରେଜୀ ଓ ଆରବୀ ପୁସ୍ତକମାନଙ୍କରେ ମଧ୍ୟ ଦେଖିବାକୁ ମିଳେ ।







# ଚତୁର୍ଥ ଅଧିକରଣ

## ନପୁଂସକତା

ନପୁଂସକମାନେ ବିଶେଷତଃ ସହରମାନଙ୍କରେ ଦେଖାଯାନ୍ତି । ବାଟରେ, ଘାଟରେ ମେଳା ମହୋତ୍ସବରେ ଏମାନଙ୍କୁ ଦେଖିବାକୁ ମିଳେ । କଲିକତା ପ୍ରଭୃତି ବଡ଼ବଡ଼ ସହରରେ ଏମାନଙ୍କର ଉପଦ୍ରବ ବେଶୀ । ଯଦି କାହାଘରେ ଗୋଟିଏ ପିଲା ଜନ୍ମହେଲା ତେବେ ଏମାନେ ସେଠାରେ ଦଳ ବାନ୍ଧି ଯାଇଁ ହାଜର । ଗୃହସ୍ୱାମୀ ଯେତେ ମନାକଲେ ସୁଦ୍ଧା ଢୋଲ୍ ବଜାଇ, ଗୀତବୋଲି, ନାଚି ଯେ କୌଣସି ମତେ ପଇସା ଆଦାୟ କରନ୍ତି । ପଇସା ନ ଦେଲେ ଏମାନଙ୍କର ତୁଣ୍ଡରୁ ଯେଉଁ ଅଶ୍ଳୀଳ ଭାଷା ବାହାରେ ତାହା ଅତ୍ୟନ୍ତ ଶ୍ରୁତିକଟୁ । ଏମାନେ ଗୃହସ୍ଥର ମାନମର୍ଯ୍ୟାଦା ପ୍ରତି ଦୃଷ୍ଟି ରଖନ୍ତି ନାହିଁ । ତେଣୁ ଲୋକେ ସେମାନଙ୍କୁ ପଇସା ଦେଇ ଶୀଘ୍ର ବିଦାୟ କରି ଦିଅନ୍ତି ।

ମଫସଲରେ ଯେ ନପୁଂସକ ନାହାନ୍ତି ଏପରି ନୁହେଁ । କିନ୍ତୁ ଗ୍ରାମ ଅପେକ୍ଷା ସହରରେ ଜୀବିକା ଚଳାଇବାକୁ ସହଜ ବୋଲି ଅଧିକାଂଶ ସହରରେ ବାସ କରନ୍ତି । ଏମାନେ ସହରରେ ବାସ କଲେ ସୁଦ୍ଧା ଖୁବ୍ କମ ଲୋକେ ଏମାନଙ୍କ ସଙ୍ଗେ ମିଳାମିଶା କରନ୍ତି । ଏମାନଙ୍କ ଦ୍ୱାରା ସମାଜର କ୍ଷତି କି ଲାଭ ହେଉଛି ଏବଂ ଏମାନଙ୍କର ସମାଜରେ ସ୍ଥାନ କେଉଁଠାରେ, ଏହା ଭାବି ଦେଖିବା ଉଚିତ ।



## ନପୁଂସକତାର ପ୍ରକାର ଭେଦ

"କ୍ଲୀବଃ ସ୍ୟାତ୍ସୁରତାଶକ୍ତସ୍ତଦ୍ଭାବଃ କ୍ଲୈବ୍ୟ ମୁଚ୍ୟତେ"।
( ଭାବ ପ୍ରକାଶ )

ଅପ୍ରାକୃତିକ ଏବଂ ଅନିୟମିତ ଆହାର-ବିହାର ତଥା ଇନ୍ଦ୍ରିୟର ଅପରିମିତ ବ୍ୟବହାର ଯୋଗୁ ନପୁଂସକତା ଉତ୍ପନ୍ନ ହୁଏ। ଅତିରିକ୍ତ କାମ ବାସନାର ବଶବର୍ତ୍ତୀ ହୋଇ ମନୁଷ୍ୟ ସ୍ୱୟଂ ନିଜ ହାତରେ ନିଜକୁ ହତ୍ୟା କରେ। ଅଳ୍ପବୟସରୁ ଯେଉଁ ତରୁଣମାନେ ହସ୍ତମୈଥୁନ ଓ ଗୁହ୍ୟମୈଥୁନ ଆଦି ଅପ୍ରାକୃତିକ ଆଚରଣରେ ଅତିରିକ୍ତ ଭାବେ ବୀର୍ଯ୍ୟନାଶ କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ନପୁଂସକ ହୋଇଯିବାର ସମ୍ଭାବନା। କେହି କେହି ମଧ୍ୟ ଜନ୍ମରୁ ନପୁଂସକ ହୋଇ ଥାଆନ୍ତି।

ଯେଉଁ ପୁରୁଷ ସ୍ତ୍ରୀକୁ ରମଣ କରିବାକୁ ଅସମର୍ଥ ହୁଏ ତାହାକୁ ନପୁଂସକ କୁହାଯାଏ। ଯେ କୌଣସି ପ୍ରକାରେ ଠିକ ମୈଥୁନ କଲେ ହାମ୍ପି ଉଠେ, ଦମ ଫାଟିଯାଏ, ଶୀଘ୍ର ବୀର୍ଯ୍ୟପାତ ହୋଇଥାଏ। ମୈଥୁନରେ ସ୍ତ୍ରୀର ସନ୍ତୋଷ ବିଧାନ କରିବା ତ ଦୂରର କଥା, ନିଜେ ମଧ୍ୟ ସନ୍ତୋଷ ପାଏ ନାହିଁ। ଯେ ସ୍ତ୍ରୀକୁ ଦ୍ରବିତ କରି ନ ପାରେ, ଯାହାର ବୀର୍ଯ୍ୟରେ ଶୁକ୍ରକୀଟ ନ ଥାଏ, କିମ୍ବା ଦୁର୍ବଳ ଶୁକ୍ରକୀଟ ଥାଏ, ଲିଙ୍ଗ ପୂର୍ଣ୍ଣ ଉତ୍ତେଜିତ ହୁଏ ନାହିଁ କିମ୍ବା ମୈଥୁନ ବେଳେ ଟିକି ରହେ କିମ୍ବା ଶିଥିଳ ହୋଇ ଯାଏ, ଏଗୁଡ଼ିକ ମଧ୍ୟ ନପୁଂସକତା ପର୍ଯ୍ୟାୟଭୁକ୍ତ।

ନପୁଂସକତା ସାତ ପ୍ରକାର ଅଛି—





୧—<u>ମାନସ କ୍ଲୈବ୍ୟ</u>—ମନର ଦୁର୍ବଳତା ଯୋଗୁ ଉତ୍ପନ୍ନ ଅଣ-
ପୁରୁଷପଣିଅ, ଅର୍ଥାତ୍ ଯାହାର ମୈଥୁନ ବିଷୟ ଚିନ୍ତାଦ୍ୱାରା
କ୍ଷୁଣିତାକୁ ଧକ୍କା ହୁଏ, ଯେ ସ୍ତ୍ରୀ ସମ୍ଭୋଗକୁ ଘୃଣା କରେ, ଯେ
ମୈଥୁନ କରିବାକୁ କ୍ଷମ ଥାଇ ମଧ୍ୟ ସେଥିରେ ମନ ନ ବଳାଏ,
ଏ ବ୍ୟକ୍ତି ମାନସ-କ୍ଲୈବ୍ୟ ରୋଗ ପିଡ଼ିତ ବୋଲି କହାଯାଏ ।

୨—<u>ପିତ୍ତଜକ୍ଲୈବ୍ୟ</u>—ପିତ୍ତର ଅଧିକ୍ୟ ଯୋଗୁ ନପୁଂସକତା,
ଅର୍ଥାତ୍ ନଶାମାଦକ, ଖଟା ଓ ଲୁଣ ଅତିରିକ୍ତ ପରିମାଣରେ
ଖାଇଲେ ପିତ୍ତ କୁପିତ ହୋଇ ବୀର୍ଯ୍ୟକୁ ଦୂଷିତ କରିଦିଏ ଏବଂ
ବୀର୍ଯ୍ୟକ୍ଷୟ ଘଟେ । ଏହି ସବୁ ଖାଦ୍ୟ ଅତିରିକ୍ତ ଖାଇ ପିତ୍ତ
କୁପିତ ହେବାଦ୍ୱାରା ଯେଉଁ ନପୁଂସକତା ହୁଏ ତାକୁ ପିତ୍ତଜ
କ୍ଲୈବ୍ୟ ବୋଲାଯାଏ ।

୩—<u>ବୀର୍ଯ୍ୟ କ୍ଷୟଜନୀତ କ୍ଲୈବ୍ୟ</u>—ଯେଉଁ ପୁରୁଷ ଅତିରିକ୍ତ ପରି-
ମାଣରେ ସ୍ତ୍ରୀସଙ୍ଗମ କରେ ବା ଅପ୍ରାକୃତିକ ଉପାୟରେ ଅଜସ୍ର
ବୀର୍ଯ୍ୟପାତ କରେ, ବିଶେଷତଃ ତରୁଣ ଅବସ୍ଥାରେ ହସ୍ତ-
ମୈଥୁନାଦି ପାପକର୍ମ କରେ ତା'କୁ ଏହି ରୋଗ ଧରିବାର
ଖୁବ୍ ସମ୍ଭବ ।

୪—<u>ରୋଗଜନୀତ କ୍ଲୈବ୍ୟ</u>—କୌଣସି ବେମାରିରୁ ଉତ୍ପନ୍ନ
କ୍ଲୀବତା—ଅର୍ଥାତ ମୂର୍ଖ ତଥା ଲୋଭୀ ବୈଦ୍ୟଙ୍କ ଠାରୁ ଲିଙ୍ଗ-
ବର୍ଦ୍ଧକ ଔଷଧ ସେବନ ଦ୍ୱାରା ମଧ୍ୟ ନପୁଂସକତା ସୃଷ୍ଟି ହୁଏ ।
ସେ ସବୁ ଔଷଧ ବ୍ୟବହାର କରି ଲିଙ୍ଗ ଟିକିଏ ବୃଦ୍ଧି ପାଏ
ସିନା, କିନ୍ତୁ କ୍ଲୀବତ୍ୱ ପ୍ରାପ୍ତି ଘଟେ । ଅତ୍ରିକ ମଧ୍ୟ ଗର୍ମୀ,



ପ୍ରମେହ, ସ୍ୱପ୍ନଦୋଷ ଆଦି ରୋଗରୁ ମଧ୍ୟ ନପୁଂସକତା ଘଟିବାର ଦେଖାଯାଏ ।

୫—ଶିରଛେଦ ହେତୁ କ୍ଳୈବ୍ୟ—ଯଦି କୌଣସି ପ୍ରକାର ଶସ୍ତ୍ରଦ୍ୱାରା ବୀର୍ଯ୍ୟବାହକ ଶିରା କଟିଯାଏ ବା ଛିଣ୍ଡିଯାଏ ତେବେ ପୁରୁଷର ଆଉ କାମୋତ୍ତେଜନା ହୁଏ ନାହିଁ । ଅଣ୍ଡକୋଷର ଅଣ୍ଡ ନଷ୍ଟ ହୋଇଗଲେ ବା କୌଣସି ପ୍ରକାରେ ଆଘାତ ପାଇଲେ ନପୁଂସକତା ଉତ୍ପନ୍ନ ହୁଏ । ଧ୍ୱଜ କାନର ପଛରେ ଥିବା ବୀର୍ଯ୍ୟବାହକ ଶିରା ସବୁ ଯାଇ ଅଣ୍ଡକୋଷ ସହିତ ମିଳିତ ହୋଇଅଛି । ସେହି କାନପଛର ଶିରା ଯଦି କୌଣସି ପ୍ରକାରେ ଛିଣ୍ଡିଯାଏ ତେବେ ପୁରୁଷ କ୍ଳୀବତ୍ୱ ପ୍ରାପ୍ତ ହୁଏ ।

୬—ଶୁକ୍ରସ୍ତମ୍ଭନ କ୍ଳୈବ୍ୟ—ବଳବାନ ବ୍ୟକ୍ତି ବ୍ରହ୍ମଚର୍ଯ୍ୟ ଦ୍ୱାରା ବୀର୍ଯ୍ୟରକ୍ଷା କରେ । ଏଥିରୁ ମଧ୍ୟ ନପୁଂସକତା ଉତ୍ପନ୍ନ ହୁଏ । କିନ୍ତୁ ଏହାର ଅର୍ଥ ନୁହେଁ, ଯେ ବ୍ରହ୍ମଚର୍ଯ୍ୟ ନପୁଂସକ କରିଦିଏ । ଏହାର ଅର୍ଥ ହେଉଛି ୩୦।୪୦ ବର୍ଷ ବୟସ ପର୍ଯ୍ୟନ୍ତ ଅଖଣ୍ଡ ବ୍ରହ୍ମଚାରୀ ହେଲେ ତା'ର କାମୋତ୍ତେଜନା ହୁଏ ନାହିଁ । ଏପରି ଶୁକ୍ରସ୍ତମ୍ଭନ କ୍ଳୀବ ଦେଶର ଓ ଜାତିର କାମ୍ୟ ଅଟେ । ସେମାନଙ୍କ ଦ୍ୱାରା ଦେଶର ଓ ଜାତିର ମହାକଲ୍ୟାଣ ସାଧିତ ହୁଏ ଉଦାହରଣ ସ୍ୱରୂପ ହନୁମାନ, ଭୀଷ୍ମ, ପରଶୁରାମ, ଶଙ୍କରାଚାର୍ଯ୍ୟ ଓ ଦୟାନନ୍ଦ ଏହି ମହାପୁରୁଷମାନେ ଏହାର ଜ୍ୱଳନ୍ତ ଆଦର୍ଶ ।

୭—ସହଜ କ୍ଳୈବ୍ୟ—ଯେ ଜନ୍ମରୁ ନପୁଂସକ ହୋଇ ଭୂମିଷ୍ଠ ହୁଏ ତାହାକୁ ସହଜ କ୍ଳୈବ୍ୟ କୁହାଯାଏ । ମାତା ପିତାଙ୍କର





ଙ୍କ ବୀର୍ଯ୍ୟ ଦୋଷରୁ, ପୂର୍ବ ଜନ୍ମର ପାପ ହେତୁ ମନୁଷ୍ୟ ସହଜ କ୍ଳୈବ୍ୟ ହୁଏ । ଏମାନଙ୍କର ଲିଙ୍ଗୋଦ୍ରେକ ନ ଥାଏ; ବା ଯଦି ଥାଏ ତାହା ଅତ୍ୟନ୍ତ ଶ୍ଳଥ । ଯଦି ଲିଙ୍ଗ ବଡ଼ ହୁଏ, ସେଥିରେ ଉତ୍ତେଜନା ଜମା ନଥାଏ ଏବଂ ସବୁବେଳେ ଶିଥିଳ ରହେ । କେବଳ ପ୍ରସ୍ରାବ କରିବା କାମ ଏଥିରେ ସାଧିତ ହୁଏ । ଏହାର କୌଣସି ଔଷଧ ନାହିଁ । ଏହା ପାଞ୍ଚଭାଗରେ ବିଭକ୍ତ । ଏଥି ମଧ୍ୟରୁ କେଉଁମାନଙ୍କର କିପରି ଭାବରେ ଇନ୍ଦ୍ରିୟ ଉତ୍ତେଜନା ଘଟେ ତାହା ନିମ୍ନରେ ଦିଆଗଲା ।



## ସହଜ କ୍ଳୈବ୍ୟର ପ୍ରକାରଭେଦ

**ଅସେକ୍ୟ ନପୁଂସକ**—ଅତ୍ୟନ୍ତ ଅଳ୍ପ ରକ୍ତବୀର୍ଯ୍ୟ ଦ୍ୱାରା ଯେଉଁ ବାଳକ ଉତ୍ପନ୍ନ ହୁଏ, ଏହାକୁ ଅସେକ୍ୟ ନପୁଂସକ କହନ୍ତି । ଏହାକୁ 'ମୁଖଯୋନି' ମଧ୍ୟ କହନ୍ତି । ଏପରି ନପୁଂସକତାର କୌଣସି ଔଷଧ ନାହିଁ । କେବଳ ମାତ୍ର କୌଣସି ବଳବାନ ପୁରୁଷର ଉପସ୍ଥ ମୁଖରେ ଧାରଣ କରି ଔପରିଷ୍ଟକ କରିବା ଏବଂ ସେଥିରୁ ପତିତ ଶୁକ୍ର ପାନ କରିବା ଦ୍ୱାରା ଏହା ଆରୋଗ୍ୟ ହୋଇପାରେ ବୋଲି କୌଣସି କୋଣସି ଯୌନ ତତ୍ତ୍ୱବିତ୍‌ମାନଙ୍କର ଅଭିମତ । ଏପରି ଶୁକ୍ରପାନରେ ଅସେକ୍ୟ ନପୁଂସକର ଲିଙ୍ଗ ଉତ୍ତେଜିତ ହୁଏ ଓ ସ୍ତ୍ରୀସମ୍ଭୋଗ କରିବାକୁ ସକ୍ଷମ ହୁଏ ବୋଲି ସେମାନେ ମତ ପ୍ରକାଶ କରନ୍ତି ।



ଈର୍ଷକ ନପୁଂସକ—ଅନ୍ୟର ମୈଥୂନ କରିବା ଦେଖି ଯାହାର କାମଭାବ ଜାଗ୍ରତ ହୁଏ ଓ ମୈଥୂନ କରେ, ଏପରି ପୁରୁଷକୁ ଈର୍ଷକ ନପୁଂସକ ବୋଲାଯାଏ । ଅନ୍ୟର ମୈଥୂନ ଦେଖିଲେ ସମସ୍ତଙ୍କର ସମ୍ଭୋଗେଚ୍ଛା ସ୍ୱତଃ ଜାଗ୍ରତ ହେବା ତ ସାଧାରଣ କଥା, କିନ୍ତୁ ଏ ଜାତୀୟ ନପୁଂସକମାନେ ଅନ୍ୟର ମୈଥୂନ ଦର୍ଶନ ନ କଲେ ସ୍ୱୟଂ ସ୍ତ୍ରୀସମ୍ଭୋଗ କରିବାର ଶକ୍ତି ପାଆନ୍ତି ନାହିଁ ।

କୁମ୍ଭିକ ନପୁଂସକ—କୁମ୍ଭିକ ନପୁଂସକମାନେ ଅନ୍ୟ କୌଣସି ବଳବାନ ପୁରୁଷଠାରୁ ଗୁହ୍ୟମୈଥୂନ ନ କରାଇଲେ ସେମାନଙ୍କର ସ୍ତ୍ରୀ ସମ୍ଭୋଗେଚ୍ଛା ଜାଗ୍ରତ ହୁଏନାହିଁ । ସେମାନଙ୍କର ଗୁହ୍ୟଦ୍ୱାରରେ ଅନ୍ୟର ଶୁକ୍ରପାତ ଘଟିଲେ ସେମାନଙ୍କର କାମଭାବ ଜାଗ୍ରତ ହୁଏ । ଏମାନଙ୍କର ଅନ୍ୟ କୌଣସି ଔଷଧ ନାହିଁ । ଗୁହ୍ୟମୈଥୂନ କରାଇବା ହିଁ ଏମାନଙ୍କର ଏକମାତ୍ର ଔଷଧ । କଶ୍ୟପ ଋଷି କହି ଅଛନ୍ତି, "ଅଳ୍ପ ରଜଯୁକ୍ତ ସ୍ତ୍ରୀଠାରୁ ଶ୍ରେଷ୍ଠ ବୀର୍ଯ୍ୟଯୁକ୍ତ ପୁରୁଷ ଦ୍ୱାରା ସ୍ଥାପିତ ଗର୍ଭରୁ କୁମ୍ଭିକ ନପୁଂସକ ପୁତ୍ର ଜନ୍ମଲାଭ କରିଥାଏ ।"

ମହାଷଣ୍ଢ ନପୁଂସକ—ବିପରୀତ ସହବାସ ସମୟରେ ଯଦି ଗର୍ଭ ସଞ୍ଚାର ହୁଏ, ତେବେ ମହାଷଣ୍ଢ ନପୁଂସକ ଜନ୍ମ ହୋଇଥାଏ । ସେ ଗର୍ଭରେ ଯଦି ପୁତ୍ର ହୁଏ ସେ ମାଇଚିଆ ହୋଇଯାଏ ଓ ଝିଅ ହେଲେ ଅଣ୍ଡିରା ହୋଇଯାଏ । ଏ ନପୁଂସକର ବୀର୍ଯ୍ୟ ହୁଏ ନାହିଁ । ଏ ପ୍ରକାର ପୁରୁଷ ନିମ୍ନଶାୟୀ ହୋଇ ଅନ୍ୟ କୌଣସି ପୁରୁଷକୁ ଉପରେ ଉପବେଶନ କରାଇ ଉଭୟଙ୍କର ଉପସ୍ଥ ଘର୍ଷଣ ଦ୍ୱାରା ନିଜର ଯୌନଯନ୍ତ୍ର ଉପରେ ବୀର୍ଯ୍ୟପାତ କରାଏ । ତେବେ ଯାଇଁ





ତାର କାମ ଉତ୍ତେଜନା ଆସେ । ଯଦି ସ୍ତ୍ରୀ ହୋଇଥାଏ ସେ ଅନ୍ୟ ସ୍ତ୍ରୀଲୋକଙ୍କୁ ନିମ୍ନଶାୟିନୀ କରାଇ ଉପରେ ବସି ଭଗରେ ଭଗ ଘର୍ଷଣ କରେ । ତେବେ ଯାଇ ତାର କାମଭାବ ଜାଗ୍ରତ ହୁଏ ।

ସୌଗନ୍ଧିକ ନପୁଂସକ—ଦୁର୍ଗନ୍ଧିତ ଯୋନିରୁ ଉତ୍ପନ୍ନ ବାଳକ ସୌଗନ୍ଧିକ ନପୁଂସକ । ଏହାଙ୍କୁ "ନାସାଯୋନି" ମଧ୍ୟ କହନ୍ତି । ଏପରି ନପୁଂସକ ଯେ ପର୍ଯ୍ୟନ୍ତ ଅନ୍ୟ ପୁରୁଷର ଜନନେନ୍ଦ୍ରିୟ ଓ ସ୍ତ୍ରୀ ଅନ୍ୟ ସ୍ତ୍ରୀର ଭଗେନ୍ଦ୍ରିୟ ଆଘ୍ରାଣ ନ କରେ ତେବେ ତାହାର ବୀର୍ଯ୍ୟ ବା ରଜ ଥିଲେ ମଧ୍ୟ କାମ ଉତ୍ତେଜନା ହୁଏ ନାହିଁ । ଅନ୍ୟର ଉପସ୍ଥ ଆଘ୍ରାଣ କଲାପରେ ତାଙ୍କ ଉପସ୍ଥରେ ମୈଥୁନ ଶକ୍ତି ଆସେ ।



## ଆୟୁର୍ବେଦ ମତରେ ନପୁଂସକର ପ୍ରକାରଭେଦ

ଆୟୁର୍ବେଦ ନପୁଂସକଙ୍କୁ ଗୃହ ଭାଗରେ ବିଭକ୍ତ କରିଅଛି । ତାହା ନିମ୍ନରେ ବର୍ଣ୍ଣନା କରାଗଲା ।

ବୀର୍ଯ୍ୟୋପଘାତ—ଖାଇବା ପିଇବାର ଅପରିମିତତା ଏବଂ ଅସାତ୍ମ୍ୟମିତତା ହେତୁ, ଶୋକ ଓ ଚିନ୍ତା ଆଦିରୁ, ନିକଳା ଉପବାସରୁ, ଅତିମୈଥୁନରୁ ଏବଂ ଅତିବ୍ୟାୟାମ ଆଦି କରିବା ଦ୍ୱାରା ବୀର୍ଯ୍ୟ ଦୂଷିତ ହୋଇ ନପୁଂସକତା ଉତ୍ପନ୍ନ ହୁଏ । ଏହାକୁ ବୀଯୋପଘାତ ବୋଲାଯାଏ । ଏପରି ରୋଗରେ ବୀର୍ଯ୍ୟଶୋଧକ ଓ ବଳବର୍ଦ୍ଧକ ଔଷଧ ଦ୍ୱାରା ଆରୋଗ୍ୟ ହୁଏ ।

ଧ୍ୱଜଭଙ୍ଗ—ଆହାର ବିହାରରେ ଅସାବଧାନ ହେଲେ ବାରବର୍ଷ ବୟସରୁ କମ୍ ବାଳିକା ଅର୍ଥାତ୍ ଋତୁମତୀ ହୋଇ ନଥିବ



କନ୍ୟା ସହିତ ମୈଥୁନ କଲେ, ଅପ୍ରାକୃତିକ ଉପାୟରେ ମୈଥୁନ କଲେ, ଯେଉଁ ସ୍ତ୍ରୀର କାମାଦ୍ୱାର ଦୀର୍ଘ-ଲୋମ ବିଶିଷ୍ଟ ସେ ସ୍ତ୍ରୀ ସହିତ ସହବାସ କଲେ, ବହୁଦିନ ପୁରୁଷ ସଙ୍ଗ ପାଇ ନ ଥିବା କୌଣସି ସ୍ତ୍ରୀଲୋକ ସହିତ ସଙ୍ଗମ କରିଲେ, ରଜସ୍ୱଳା, ଦୁର୍ଗନ୍ଧିତ ଯୋନି-ବିଶିଷ୍ଟା କୌଣସି ସ୍ତ୍ରୀ ସହିତ ରମଣ କଲେ, ପ୍ରଦର ବା ଗର୍ମୀରୋଗ ପୀଡ଼ିତା ସ୍ତ୍ରୀସହିତ ମୈଥୁନ କାର୍ଯ୍ୟରେ ପ୍ରବୃତ୍ତ ହେଲେ, ଲିଙ୍ଗ ଉପରେ କୌଣସି ଆଘାତ ଲାଗିଲେ, ଲିଙ୍ଗକୁ ପରିଷ୍କାର ନ ରଖିଲେ ଲିଙ୍ଗ-ବର୍ଦ୍ଧକ ଔଷଧ ପ୍ରୟୋଗ କଲେ ମନୁଷ୍ୟର ଧାତୁ ବିକୃତ ଘଟି ଧ୍ୱଜ-ଭଙ୍ଗ ହୁଏ । ଏହା ଦ୍ୱାରା ଲିଙ୍ଗ ଶିଥିଳ ହୋଇଯାଇ ଆଉ ଉତ୍ତେଜନା ଆସେ ନାହିଁ । ଏହାର ଉତ୍ତମ ଉପାୟ ହେଉଛି ଯେଉଁ କାରଣରୁ ନପୁଂସକତା ଉତ୍ପନ୍ନ ହୋଇଛି ତାହା ସମ୍ପୂର୍ଣ୍ଣ ପରିତ୍ୟାଗ କରିବ ଏବଂ କୌଣସି ଡାକ୍ତର ବା କବିରାଜଙ୍କଠାରୁ ବଳବୀର୍ଯ୍ୟ ବର୍ଦ୍ଧକ ଔଷଧ ସେବନ କରିବ ।

**ଜରାସମ୍ଭବ**—ଯୁବକ ସମୟରେ ଅତି ମୈଥୁନାସକ୍ତହୋଇ ପୁଣି ଏହି ଅବସ୍ଥାରେ ବଳବୀର୍ଯ୍ୟ ବର୍ଦ୍ଧକ ପଦାର୍ଥ ସେବନ କଲେ ବୃଦ୍ଧାବସ୍ଥାରେ ଯେଉଁ ନପୁଂସକତା ଉତ୍ପନ୍ନ ହୁଏ, ତାହାକୁ ଜରା-ସମ୍ଭବ ନପୁଂସକ ବୋଲାଯାଏ । ରୋଗ-ଶୋକ କାରଣରୁ ଶରୀର କୃଶ ଓ କ୍ଷୀଣହୋଇଗଲେ ମଧ୍ୟ ଏପରି ନପୁଂସକତାର ଉଦ୍ଭବ ହୁଏ ।

ବୃଦ୍ଧାବସ୍ଥାରେ ଯେଉଁମାନଙ୍କୁ କାମ ବାସନା ପୀଡ଼ନ କରେ କିମ୍ବା ବ୍ୟତିବ୍ୟସ୍ତ କରେ ଅଥଚ ଏଣେ ଲିଙ୍ଗର ନାରୀସଙ୍ଗମ କରି ବାର କ୍ଷମତା ନଥାଏ, ଏପରିସ୍ଥଳେ ବାତନାଶକ ଏବଂ କଫବର୍ଦ୍ଧକ ଔଷଧ ସେବନ କରିବା ଉଚିତ । ଶରୀରରେ ତେଲ ମାଲିସ





କରିବା, ତିଫଳା ଜଳରେ ଆଖି ଧୋଇବା, କାନରେ ତେଲ ପକାଇବା ଏବଂ ତିଫଳା ଚୂର୍ଣ୍ଣ ଘିଅ ସହିତ ମିଶ୍ରି ମିଳାଇ ପ୍ରତିଦିନ ସେବନ କରିବା ଲାଭଦାୟକ ଅଟେ ।

କ୍ଷୟକ୍ଲୀବ—ଈର୍ଷା, କ୍ରୋଧ, ଚିନ୍ତା, ଶୋକ, ଭୟ ଓ ଉତ୍କଣ୍ଠା ଆଦି ସୀମା ପାର ହୋଇଯାଏ, ଅର୍ଥାତ୍ ଅତିରିକ୍ତ ହୋଇଗଲେ, କ୍ଷୟକ୍ଲୀବ ରୋଗ ଘଟେ । ଉପବାସ ପରେ ପେଟ ଭରି ଭୋଜନ ନ କଲେ, ବିନା ତରକାରୀରେ ଶୁଖିଲା ଅନ୍ନ ଖାଇଲେ, ଓ ଅତିରିକ୍ତ ମୈଥୁନ କଲେ ଏପରି ନପୁଂସକତାର ଉତ୍ପନ୍ନ ହୋଇଥାଏ । ଏଣୁ ପ୍ରଥମେ ଏହାର କାରଣ ନିର୍ଣ୍ଣୟ କରି ତାହା ତ୍ୟାଗ କରିବ । ଉପରେ ବଳବୀର୍ଯ୍ୟ ବର୍ଦ୍ଧକ ଔଷଧ ସେବନ କରିବ ।

ନପୁଂସକତା ଏକ ବଡ଼ ଭୟାନକ ବ୍ୟାଧି । ଏହା ପୁରୁଷ ପକ୍ଷରେ ଭାଗ୍ୟର ଅଭିଶାପ ବୋଲି ଜାଣିବାକୁ ହେବ । ଆଜିକାଲି ଦେଶରେ ଦିନୁଦିନ ନପୁଂସକର ସଂଖ୍ୟା ବଢ଼ିବାରେ ଲାଗିଛି । ଯାହାର କି ମୁଖ୍ୟକାରଣ ହେଉଛି ହସ୍ତମୈଥୁନ, ଗୁହ୍ୟମୈଥୁନ, ପଶୁ ମୈଥୁନ, ବାଲ୍ୟ ବିବାହ, ବେଶ୍ୟାଗମନ, ନିଶା ଆଦି ଦ୍ରବ୍ୟ ସେବନ ।

## ଏତେ ନପୁଂସକ କେଉଁଠାରୁ ଆସନ୍ତି

ଭଗବାନଙ୍କ ସୃଷ୍ଟିରେ ଗଛର ସମସ୍ତ ଫୁଲ ଫଳ ଯେପରି ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୁଏ ନାହିଁ, ସେହିପରି ଜୀବଜଗତରେ କେହି କେହି ପୂର୍ଣ୍ଣାଙ୍ଗ ହୋଇ ଜନ୍ମ ଗ୍ରହଣ କରନ୍ତି ନାହିଁ । ଯେଉଁମାନଙ୍କର ଯୌନଯନ୍ତ୍ରରେ ତ୍ରୁଟି ରହିଯାଏ ବା ରହିଯାଏ ସେହିମାନଙ୍କୁ ନପୁଂସକ ବୋଲିଯାଏ । ଜାହାର ଜାହାର ଯୌନଯନ୍ତ୍ର ମଧ୍ୟ ପୂର୍ଣ୍ଣାଙ୍ଗ



ପ୍ରାପ୍ତ ନ ହୋଇ ଅସମ୍ପୂର୍ଣ୍ଣ ଅବସ୍ଥାରେ ରହିଯାଏ । ଏମାନେ ମଧ୍ୟ ନପୁଂସକ ଶ୍ରେଣୀଭୁକ୍ତ । ଲୋକଙ୍କର ଧାରଣା ଯେ ନପୁଂସକ ମାନେ ଏକ ଶ୍ରେଣୀଭୁକ୍ତ, କିନ୍ତୁ ତାହା ନୁହେଁ । ସେମାନଙ୍କ ମଧ୍ୟରେ ସ୍ତ୍ରୀ ପୁରୁଷ ଭେଦ ମଧ୍ୟ ଅଛି । ପୁରୁଷ-ନପୁଂସକ ଶରୀରରେ ପୁରୁଷସୁଲଭ ଅନ୍ୟାନ୍ୟ ଲକ୍ଷଣ ମଧ୍ୟ ଥାଏ । କିନ୍ତୁ ଯୌନାଙ୍ଗ ଭଳି ସେଗୁଡ଼ିକ ଅସମ୍ପୂର୍ଣ୍ଣ । ନାରୀ ନପୁଂସକ ମଧ୍ୟ ସେହିପରି ଅଟେ ।

ଅନେକ ସମୟରେ ଆମ୍ଭମାନେ ଶୁଣିବାକୁ ପାଉ କେତେକ ଲୋକ ଏତେ ବରଷ ପୁରୁଷ-ଜୀବନ ଯାପନ କଲା ପରେ ନାରୀରୂପ ପାଇ ଅଛି କିମ୍ବା ଏତେ ବରଷ ନାରୀ ଜୀବନ ଯାପନ କଲାପରେ ପୁରୁଷ ପାଲଟି ଯାଇଅଛି । ଏହି ଶ୍ରେଣୀ ମନୁଷ୍ୟର ଏହା ଯୌନ ବିକୃତି ଛଡ଼ା ଆଉ କିଛି ନୁହେଁ ।

ବାସ୍ତବିକ ଦୃଷ୍ଟିରେ ଦେଖିବାକୁ ଗଲେ, ଦେଶରେ ନପୁଂସକ ସଂଖ୍ୟା ବେଶୀ ହେବ ନାହିଁ । ସେମାନେ ଦଳ ବାନ୍ଧି ଏକାଠି ରହନ୍ତି ବୋଲି ଆମ୍ଭମାନଙ୍କୁ ବେଶୀ ଦେଖାଯାନ୍ତି । ଜଗତରେ ସେମାନଙ୍କ ବନ୍ଧୁ ବାନ୍ଧବ କେହି ନାହାନ୍ତି । ଏପରିକି ବାପ ମା ମଧ୍ୟ ସେମାନଙ୍କୁ ପରିତ୍ୟାଗ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଏଥି ପାଇଁ ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ସହାନୁଭୂତି ଅତ୍ୟନ୍ତ ପ୍ରବଳ । କେଉଁଠି ଯଦି କୌଣସି ଏକ ନପୁଂସକ ଶିଶୁ ଜନ୍ମ ହୋଇଥିବାରୁ ଶୁଣିବାକୁ ମିଳେ ତେବେ ବୟସ୍ୟ ନପୁଂସକମାନେ ସେଠାରେ ଯାଇଁ ହାଜର ହୋଇ ସେ ଶିଶୁର ଦାୟିତ୍ୱ ଗ୍ରହଣ କରନ୍ତି । ଏହିପରି ଭାବରେ ସେମାନଙ୍କର ଦଳ ବୃଦ୍ଧି ହୁଏ । ସେମାନେ ଜାଣନ୍ତି, ସମାଜରେ ସେମାନଙ୍କର ସ୍ଥାନ ନାହିଁ । ଏଣୁ ସେମାନେ ଦଳ ବାନ୍ଧି ବାସ କରନ୍ତି ।





ନପୁଂସକମାନଙ୍କର ଜାତି ଧର୍ମବିଚାର ନାହିଁ । ଜନ୍ମ ଦେଇ ଭଗବାନ ଯେଉଁମାନଙ୍କ ପ୍ରତି ନିଷ୍ଠୁର, ଭଗବାନଙ୍କ ପ୍ରତି ସେମାନଙ୍କର କୃତଜ୍ଞତା ପ୍ରକାଶ କରିବାର କୌଣସି କାରଣ ନାହିଁ । ଏମାନଙ୍କ ଭିତରେ ଗୋଟିଏ କଥା ଦେଖିବାକୁ ମିଳେ ଯେଉଁଥି ଯୋଗୁ ସେମାନେ ପ୍ରଶଂସା ପାଇବାର ଯୋଗ୍ୟ । ଜାତି ଧର୍ମ, ଦେଶ ବିଦେଶ, ଓଡ଼ିଆ ଅଣଓଡ଼ିଆ, ବଙ୍ଗାଳି ଅବଙ୍ଗାଳି ବା ହିନ୍ଦୁସ୍ଥାନୀ ବର୍ମା ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟାନ, ଏସବୁ ସଙ୍କୀର୍ଣ୍ଣ ଧର୍ମଭାବ ବା ପ୍ରାଦେଶିକତା ମୋଟେ ପ୍ରକାଶ ପାଏ ନାହିଁ । ଏମାନଙ୍କ ମଧ୍ୟରେ ଜାତିଭେଦ ପ୍ରଥା ଆଦୌ ନାହିଁ । ସମସ୍ତେ ସମସ୍ତଙ୍କର ।

ହିନ୍ଦୁମାନେ ନପୁଂସକଙ୍କୁ ଅତ୍ୟନ୍ତ ଅଶୁଭ ଲକ୍ଷଣ ବୋଲି ମନେ କରନ୍ତି । ଶାସ୍ତ୍ର ମତରେ ସେମାନଙ୍କ ମୁଖ ଚାହିଁ ଗଲେ କାର୍ଯ୍ୟରେ ବ୍ୟାଘାତ ଘଟେ । ସୁତରାଂ ହିନ୍ଦୁପଡ଼ା ନିକଟରେ ନପୁଂସକମାନେ ପ୍ରାୟ ବାସ କରନ୍ତି ନାହିଁ । କଲିକତା ପ୍ରଭୃତି ବଡ଼ ବଡ଼ ସହରରେ ସାଧାରଣତଃ ଏମାନେ ନିମ୍ନ ଶ୍ରେଣୀର ବସ୍ତି ନିକଟରେ ବାସ କରନ୍ତି । ଏମାନେ ନାଚ ଗାନ କରି ପେଟ ପୋଷନ୍ତି । ଭିକ୍ଷା ଏମାନଙ୍କର ପ୍ରଧାନ ସମ୍ବଳ । ଏମାନଙ୍କର ବ୍ୟବହାର ଅତି ଅଶ୍ଳୀଳ । ଅନେକ ନପୁଂସକ ବେଶ୍ୟାଳୟରେ ଭୃତ୍ୟର କାର୍ଯ୍ୟ କରନ୍ତି । ସହରମାନଙ୍କରେ କେତେ କେତେ ମଦ ପାନ ଦୋକାନ କରିବାର ଦେଖାଯାଏ ।





# ନପୁଂସକର ଯୌନ ଅନୁଭୂତ

ଅନେକ ମନେ କରନ୍ତି ଯେ ନପୁଂସକମାନଙ୍କର ଯୌନ ଯନ୍ତ୍ର ନ ଥିବାରୁ କିମ୍ବା ଥିଲେ ସୁଦ୍ଧା ତାହା ବିକଳାଙ୍ଗ ହୋଇଥିବାରୁ ସେମାନଙ୍କର ଯୌନ ଅନୁଭୂତି ନାହିଁ । କିନ୍ତୁ ଏ ଧାରଣା ସମ୍ପୂର୍ଣ୍ଣ ଭୁଲ୍ । ପ୍ରକୃତ କଥା ହେଉଛି, ସେମାନଙ୍କର ଯୌନକ୍ଷୁଧା ଅତ୍ୟନ୍ତ ପ୍ରବଳ । କିନ୍ତୁ ମନୁଷ୍ୟର ସ୍ୱାଭାବିକ ଯୌନ-ଜୀବନର ଅଭିଜ୍ଞତା ସେମାନଙ୍କର ନାହିଁ । ସୁତରାଂ ସେହି ସ୍ୱାଭାବିକ ଯୌନ-ସମ୍ଭୋଗ-ସ୍ୱପ୍ନକୁ କେନ୍ଦ୍ରକରି ସେମାନଙ୍କର ଯୌନ-ଜୀବନ ଗଢ଼ି ଉଠେ । ସେମାନେ ସବୁବେଳେ ସେହି କଥା ହିଁ ଭାବୁଥାନ୍ତି । ଏଣୁ ସେମାନଙ୍କର ସବୁବେଳେ କୁତ୍ସିତ କଥାରେ ମନ ଥାଏ । ଏହି ସବୁ କଥା ଯୋଗୁ ସେମାନେ ବ୍ୟବହାରରେ, ଚାଲିଚଳନରେ ସବୁବେଳେ ଅଭଦ୍ରାମି ଦେଖାଇ ଥାନ୍ତି ।

ସେମାନେ ସାଧାରଣ ସ୍ତ୍ରୀ ପୁରୁଷମାନଙ୍କୁ ଅନ୍ତରରେ ଭାରି ଈର୍ଷା କରନ୍ତି ଓ ମନେ କରନ୍ତି ସ୍ୱାଭାବିକ ସ୍ତ୍ରୀ ପୁରୁଷ ତାହାଙ୍କୁ ବଞ୍ଚିତ କରି ସମସ୍ତ ଯୌନସୁଖ ସମ୍ପଦ ଭୋଗ କରୁ ଅଛନ୍ତି । ଏହି ଧାରଣାର ବଶବର୍ତ୍ତୀ ହୋଇ ସାଧାରଣ ସ୍ତ୍ରୀ ପୁରୁଷଙ୍କୁ ସେମାନେ ଘୃଣା ଚକ୍ଷୁରେ ଦେଖନ୍ତି ।

ଏପରି ମଧ୍ୟ ଶୁଣିବାକୁ ମିଳେ ଯେ, ସାଧାରଣ ପୁରୁଷ ପ୍ରତି ଏହି ସ୍ୱାଭାବିକ ଘୃଣା ଓ ବିଦ୍ୱେଷ ଯୋଗୁ କୌଣସି ପୁରୁଷ ଶିଶୁକୁ ଏକାକୀ ପାଇଲେ ସେମାନେ ତା'କୁ ଧରି ନେଇ ନପୁଂସକ କରି ଦିଅନ୍ତି । ଏକଥା ସତ୍ୟ ବା ମିଥ୍ୟା ହେଉ, ନପୁଂସକମାନେ ମନୁଷ୍ୟର ପୁରୁଷତ୍ୱ ନଷ୍ଟ କରି ଦେବାର ଦୃଷ୍ଟାନ୍ତ ଦେଖିବାକୁ ମିଳିଅଛି ।





ଯଜ ଏକ ପ୍ରକାର ନପୁଂସକ ସମ୍ବନ୍ଧେ ଏଠାରେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଇତିହାସରୁ ପତା ବାକୁ ମିଳେ ମୋଗଲ ସମ୍ରାଟମାନଙ୍କର ବେଗମ ମହଲରେ ବା ମୁସଲମାନ ନବାବମାନଙ୍କର ହାରେମରେ ଖୋଜା ପ୍ରହରୀ ନିଯୁକ୍ତିର ପ୍ରଚଳନ ଥିଲା । ଏହି ଖୋଜା ପ୍ରହରୀମାନେ ନପୁଂସକ ଅଟନ୍ତି ।

ବେଗମ ମହଲରେ ଅନେକ ନାରୀଙ୍କ ପକ୍ଷେ ପୁରୁଷ ସଂସର୍ଗ ପାଇବା କଷ୍ଟକର ହେବାରୁ ସେମାନେ ପ୍ରହରୀମାନଙ୍କ ଦ୍ୱାରା କାମ କ୍ଷୁଧା ମେଣ୍ଟାଇବାର ପ୍ରମାଣ ମିଳିଛି । ତା'ର ପ୍ରତିଷେଧକ ନିମିତ୍ତ ପୁରୁଷମାନଙ୍କର ପୁରୁଷତ୍ୱ ନଷ୍ଟ କରି ଦିଆଯାଇ ନପୁଂସକ କରିଦିଆଯାଉଥିଲା ଏବଂ ସେମାନଙ୍କୁ ରାଣୀମହଲର ପ୍ରହରୀ ରୂପେ ନିଯୁକ୍ତ କରା ଯାଉଥିଲା ।

ପ୍ରାଚୀନ ଯୁଗରେ ବିଜେତାମାନେ, ପରାଜିତ, ଶତ୍ରୁ ପକ୍ଷର, ନିହତ ଯୋଦ୍ଧାମାନଙ୍କର ବିଜୟ ଚିହ୍ନ ସ୍ୱରୂପ 'ଲିଙ୍ଗ କାଟି ନେଇ ଯାଉଥିଲେ । ଗତ ଇଟାଲି ଅବିସିନିଆ ଯୁଦ୍ଧରେ ଅବିସିନିଆବାସୀ ଯେଉଁଠି ଜୟ କରୁଥିଲେ ସେଠାକାର ମୃତ ଇଟାଲିଅନମାନଙ୍କର ଲିଙ୍ଗ କାଟିନେଇ ଯାଉଥିବାର ଅଭିଯୋଗ ଶୁଣାଯାଇ ଅଛି ।



## ବାତ୍ସ୍ୟାୟନଙ୍କ ମତରେ ନପୁଂସକତା

ଋଷି ବାତ୍ସ୍ୟାୟନ ତାଙ୍କ 'ରଚିତ କାମସୂତ୍ରରେ ମଧ୍ୟ ନପୁଂସକତାକୁ ସ୍ଥାନ ଦେଇ ଅଛନ୍ତି । ତାଙ୍କ ମତରେ ୪ ପ୍ରକାର ନାୟିକା ବ୍ୟତୀତ ତୃତୀୟା ପ୍ରକୃତ ୫ମ ପ୍ରକାର ନାୟିକା ମଧ୍ୟ ଅଛନ୍ତି । ଏହି



ତୃତୀୟା ପ୍ରକୃତି ପଞ୍ଚମ ନାୟିକା ଦୁଇ ଭାଗରେ ବିଭକ୍ତ । ଯଥା— ସ୍ତ୍ରୀ ରୂପିଣୀ ଓ ପୁରୁଷ ରୂପିଣୀ । ପୁରୁଷ ରୂପିଣୀ କ୍ଲୀବର ନିଶ ଦାଢ଼ି ଜନ୍ମେ ଓ ସ୍ତ୍ରୀ ରୂପିଣୀ କ୍ଲୀବର କୁଚଅଦ ଦେଖାଯାଏ । ଏମାନଙ୍କର ଲିଙ୍ଗ ଯୋନି ମଧ୍ୟ ଥାଏ । କିନ୍ତୁ ତା'ର କାର୍ଯ୍ୟକାରିତା ଶକ୍ତି ନଥାଏ । ମାତ୍ର ମନରେ କାମ ଲାଳସା ଜାଗ୍ରତ ଥାଏ । ଇନ୍ଦ୍ରିୟରେ ମୂତ୍ର ମାର୍ଗ ଛଡ଼ା ଅନ୍ୟ କୌଣସି କିଛି ନ ଥାଏ । ଯାହା ଥାଏ ସେଥିରେ ସମ୍ଭୋଗ କରି ହୁଏ ନାହିଁ କିମ୍ବା ଗର୍ଭାଧାନ ମଧ୍ୟ ହୁଏ ନାହିଁ । ଏହି କ୍ଲୀବ ମାନେ ମୁଖମୈଥୁନ, ଅଧୋମୈଥୁନ ଇତ୍ୟାଦି ଘୃଣିତ କର୍ମ ଦ୍ୱାରା ଅର୍ଥ ଉପାର୍ଜନ କରନ୍ତି । ଏଣୁ ଏ ସମ୍ବନ୍ଧରେ ମଧ୍ୟ କାମସୂତ୍ରରେ ଚର୍ଚ୍ଚା କରା ଯାଇଅଛି ।



## ଔପରିଷ୍ଟକ ବା ମୁଖମୈଥୁନ

ଏହା ଅତି ପାପ ଏବଂ ଘୃଣିତ କାର୍ଯ୍ୟ ଅଟେ । ତଥାପି କେତେକ ଲୋକେ ଅଛନ୍ତି ଏହା କରନ୍ତି ଓ କରାନ୍ତି । ଏଣୁ ଏହାର ଅପକାରିତା ଓ ପ୍ରଣାଳୀ ସମ୍ବନ୍ଧରେ ଏଠି କିଛି ଲେଖିଲେ ଅନ୍ୟାୟ ହେବନାହିଁ । କାରଣ ଶାସ୍ତ୍ର ବ୍ୟାପକ ଏବଂ ସବୁ ସମାଜ ଓ ସବୁ ଦେଶ ପାଇଁ ଲେଖା ହୋଇଅଛି ।

ସ୍ତ୍ରୀ ରୂପିଣୀ କ୍ଲୀବ ବେଶ, ଆଳାପ, ଲୀଳାମନୁକରଣ, ହାବ-ଭାବ, କୋମଳତା, ଭୀରୁତ୍ୱ, ମୁଗ୍ଧତା, ସରଳତା, ଅସହିଷ୍ଣୁତା ଇତ୍ୟାଦି ସହିତ ଅସମର୍ଥତା ଓ ଲଜ୍ଜାର ଅନୁକରଣ କରିବ ।





ଉପସ୍ଥ ଓ ଅଗର ସଂଘର୍ଷରେ ଯେପରି ମୈଥୁନ କାର୍ଯ୍ୟ ଚାଲେ କୃତାସ୍ଥା ପ୍ରକୃତ କ୍ଲୀବର ମୁଖରେ ସେହିପରି କର୍ମକସ ହୁଏ । ଏହାକୁ ଆଚାର୍ଯ୍ୟମାନେ ଔପରିଷ୍ଟକ ନାମ ଦେଇ ଅଛନ୍ତି । ସେହି ସ୍ତ୍ରୀ ରୂପିଣୀ କ୍ଲୀବ ବେଶ୍ୟା ପରି ହାବଭାବ ପ୍ରକାଶ କରି ଅଭିମାନକ ପ୍ରୀତି ସହିତ ଜୀବିକା ଚଳାଇବାକୁ ଚେଷ୍ଟା କରେ । ଏହା ସ୍ତ୍ରୀ ରୂପିଣୀ କ୍ଲୀବ ପକ୍ଷରେ ବିହିତ ।

ଆୟୁର୍ବେଦ ତଥା କାମଶାସ୍ତ୍ରରେ ଏହି ନପୁଂସକମାନଙ୍କର ରତିକ୍ରିୟା ପ୍ରଣାଳୀ ବର୍ଣ୍ଣିତ ଅଛି । ବହୁ ପୁରୁଷ ନପୁଂସକ ଅଛନ୍ତି ସେମାନେ ଅନ୍ୟ ପୁରୁଷର ଉପସ୍ଥକୁ କିମ୍ବା ଅନ୍ୟ ସ୍ତ୍ରୀର ଭଗକୁ ମୁଖରେ ଧାରଣ କରି ଅଭିମାନକ ସୁଖ ପାଇଥାନ୍ତି । ସ୍ତ୍ରୀ ନପୁଂସକ ମଧ୍ୟ କେତେକ ଅଛନ୍ତି ପୁରୁଷର ଉପସ୍ଥକୁ ମୁଖରେ ଗ୍ରହଣ କରନ୍ତି ।

ଏହି ମୁଖମୈଥୁନ ବାତ୍ସ୍ୟାୟନଙ୍କ ମତରେ ଆଠ ପ୍ରକାର । ଯଥା—ନିମିତ୍ତ, ପାର୍ଶ୍ୱତୋଦଷ୍ଟା, ବହିଃସନ୍ଦଂଶ, ଅନ୍ତଃସନ୍ଦଂଶ, ଚୁମ୍ବିତକ, ପରିମୃଷ୍ଟକ, ଆମ୍ରଚୂଷିତକ ଓ ସଙ୍ଗର ।

ମୁଖମୈଥୁନ ବେଳେ ଆଲିଙ୍ଗନ ଓ ଚୁମ୍ବନାଦିର ପ୍ରୟୋଗ କରିବା ଅସମ୍ଭବ । କୁଳଟା, ସ୍ୱୈରିଣୀ, ଦାସୀ, ଗୋଡ଼ ଘଷିଦେବା ସ୍ତ୍ରୀଲୋକ ପ୍ରଭୃତି ମଧ୍ୟ ମୁଖମୈଥୁନ କରି ଥାଆନ୍ତି ।

ଆଚାର୍ଯ୍ୟ ବାତ୍ସ୍ୟାୟନ କହନ୍ତି, ବେଶ୍ୟାଗାମୀ ପୁରୁଷ ପକ୍ଷେ ମୁଖମୈଥୁନ ଦୋଷଜନକ ନୁହେଁ, କିନ୍ତୁ ଅନ୍ୟ ପୁରୁଷ ପକ୍ଷେ ଏହା ବର୍ଜନ କରିବା ଉଚିତ । ନିଜର ପତ୍ନୀ ସହିତ କେବେହେଁ ଏ ଦୁଷ୍କର୍ମ କରିବ ନାହିଁ । ବଶିଷ୍ଠ କହିଅଛନ୍ତି, ବିବାହିତା ସ୍ତ୍ରୀର

# କାମ-ବିଜ୍ଞାନ ୨ୟ



**( ନଂ: ୬ ) ପୁରୁଷ-ନପୁଂସକ**

ଏହି ଲୋକଟିର ପ୍ରାୟ ୪୦ ବର୍ଷ । ଏହାର ଅଣ୍ଡ ଗ୍ରନ୍ଥିରସର ଅଳ୍ପତା ବଶତଃ ଜନନେନ୍ଦ୍ରିୟର ବିକାଶ ହୋଇପାରି ନାହିଁ । ଦେଖିବାକୁ ସ୍ତ୍ରୈଣ ପରି । ଏହାର ହସ୍ତପଦ ସ୍ୱାଭାବିକ ଅପେକ୍ଷା ଲମ୍ବ ଓ ମୁଣ୍ଡରେ ବାଳ କମ୍ ଦେଖାଯାଉଛି ।

( ୧୬ ପୃଷ୍ଠା ଦ୍ରଷ୍ଟବ୍ୟ )



ମୁଖରେ ମୈଥୁନ କରିବା ଉଚିତ ନୁହେଁ । କୁଳଟା ପ୍ରଭୃତି ସ୍ୱାଧୀନା ବେଶ୍ୟାମାନଙ୍କ ଦ୍ୱାରା ମୁଖମୈଥୁନ କରାଇଲେ ଦୋଷ ଘଟେ ନାହିଁ । ଯେଉଁ ବେଶ୍ୟାର ମୁଖମୈଥୁନ କରିବାର ଅଭ୍ୟାସ ଅଛି ବୋଲି ଜାଣିବ, ତାହାର ମୁଖଚୁମ୍ବନ କରିବ ନାହିଁ । ବାତ୍ସ୍ୟାୟନ ଋଷି କହିଛନ୍ତି, ଯେଉଁ ଦେଶରେ ଯେଉଁ ଅଗ୍ରର ବର୍ତ୍ତନ ଚଳେ, ଅଭୀଷ୍ଟ ହେଲେ ବି ତା କର୍ତ୍ତବ୍ୟ ।

ବିଶେଷତଃ ଯେଉଁ ପୁରୁଷମାନଙ୍କର ଲିଙ୍ଗ ନଷ୍ଟ ହୋଇ ଯାଇଅଛି ଏବଂ ସ୍ତ୍ରୀସଙ୍ଗମ କରିବାକୁ ଅସମର୍ଥ କିନ୍ତୁ ମନରେ କାମବାସନା ଜାଗ୍ରତ ହେଉଛି—ଏହିପରି ନପୁଂସକମାନେ ମଧ୍ୟ ଏହା କରିବାକୁ ଭଲ ପାଆନ୍ତି । ଅନ୍ତଃପୁର ମଧ୍ୟ ସ୍ୱାନଚାରିଣୀ ରମଣୀମାନେ ପରପୁରୁଷଙ୍କୁ ନପାଇ ପରସ୍ପର ମଧ୍ୟରେ ମୁଖମୈଥୁନ କରନ୍ତି । ଏହି ମୁଖମୈଥୁନ ଦୁଇପ୍ରକାର, କ୍ରମିକ ଓ ଯୁଗପତ୍ । ଜଣେ ଜଣଙ୍କର ମୁଖମୈଥୁନ କଲେ ସେ ତା'ର ମୁଖମୈଥୁନ କରିଦିଏ । ଏହାକୁ କ୍ରମିକ କୁହାଯାଏ । ପୁଣି ଏକ ସମୟରେ ଉଭୟେ ଉଭୟଙ୍କର ମୁଖମୈଥୁନ କଲେ ଏହାକୁ ଯୁଗପତ୍ କୁହାଯାଏ । ଦୁଇଟି ସ୍ତ୍ରୀଲୋକଙ୍କ ମଧ୍ୟରେ ଜଣେ ଜଣଙ୍କର ଭଗରେ ମୁଖଚାଳନ କରେ । ଅନ୍ୟ ମଧ୍ୟ ସେହିପରି ତା'ର ଭଗରେ ମୁଖ ଚାଳନ କରେ । ପାର୍ଶ୍ୱ ସମ୍ପୁଟରେ ଶୋଇରହି ଜଙ୍ଘ ମଧ୍ୟରେ ପରସ୍ପରର ମସ୍ତକ ରଖି ଏକ ସମୟରେ ସ୍ତ୍ରୀ କିମ୍ବା ପୁରୁଷ, ଉଭୟେ ମୁଖ ଦ୍ୱାରା ସଂପ୍ରଯୁକ୍ତ ହୁଅନ୍ତି । ଏପରି କାମକଳାକୁ କାକିଳ ନାମରେ *ଅଭିହିତ କରାଯାଇଅଛି ।

ଏହି ମୁଖମୈଥୁନ ପ୍ରିୟ ବେଶ୍ୟାମାନେ ଗୁଣୀ, ଦାନଶୂର ନାୟକ ଗୁଣଯୁକ୍ତ ଲୋକମାନଙ୍କୁ ତ୍ୟାଗକରି ନୀଚ ସେବକମାନଙ୍କ ସଙ୍ଗରେ ଏହି ଔପରିଷ୍ଟକ କରନ୍ତି ଓ କରାନ୍ତି ।

ସମାଜରେ ଏପରି ବହୁ ସ୍ତ୍ରୀ ପୁରୁଷ ଅଛନ୍ତି ଯେଉଁମାନେ କି ଶୁଚି ଅଶୁଚିର ବିଚାର ରଖନ୍ତି ନାହିଁ । ଲାଟ, ସିନ୍ଧୁ ଆଦି କେତେକ ପ୍ରଦେଶରେ ସ୍ତ୍ରୀ ପୁରୁଷ ଏହାର ଅଧିକ ପ୍ରୟୋଗ କରନ୍ତି । ଦେଶ, କାଳ, ଧର୍ମଶାସ୍ତ୍ର ଏବଂ ନିଜର ସ୍ୱାସ୍ଥ୍ୟ ଓ ରୁଚି ବିଚାର କଲେ ଏହି କୁତ୍ସିତ ପ୍ରୟୋଗ ମନୁଷ୍ୟ ନ କରିବାହିଁ ଶ୍ରେୟସ୍କର ।



## ମୁଖମୈଥୁନର ଅପକାରିତା

ଏହି କାର୍ଯ୍ୟ ଅତି ଅଧମ ଓ ଧର୍ମଶାସ୍ତ୍ର ବିରୁଦ୍ଧ କାର୍ଯ୍ୟ ଅଟେ । ଅସଭ୍ୟ ଓ ଜଙ୍ଗଲୀମାନେ ଏହି କୁକର୍ମରେ ରତ ହୁଅନ୍ତି । ଆର୍ଯ୍ୟମାନେ କହିଛନ୍ତି, କୁଳଟାଦି ବେଶ୍ୟାଙ୍କ ମୁଖ ଏପରି ଅଶୁଚି ଓ ରୋଗକ୍ଲିଷ୍ଟ ଯେ ସେମାନଙ୍କ ସହିତ ମୁଖମୈଥୁନ କଲେ ନାନାଦି ରୋଗର ପ୍ରବେଶ ହୋଇଥାଏ । ଅସ୍ୱାଭାବିକ ଉପାୟରେ ରେତସ୍ଖଳିତ କରିବା ଯେ ସ୍ୱାସ୍ଥ୍ୟ ପକ୍ଷରେ ଅନିଷ୍ଟକର ଏହା କହିବା ବାହୁଲ୍ୟ ମାନ ! ଏହି ମୁଖମୈଥୁନ କାର୍ଯ୍ୟଟି ଗୋଟିଏ ଅସ୍ୱାଭାବିକ ଉପାୟ ଛଡ଼ା ଅନ୍ୟ କିଛି ନୁହେଁ ।

ଶାସ୍ତ୍ରରେ ଲେଖାଅଛି, ଅତଏବ ଏହି ଔପରିଷ୍ଟକ ବା ମୁଖମୈଥୁନ ପ୍ରୟୋଗ କରିବା ଦରକାର, ଏହା ଭାବିବା ଠିକ୍ ନୁହେଁ । କାମଶାସ୍ତ୍ରରେ ଏହା ଉଲ୍ଲେଖ କରା ଯାଇଅଛି, ଏହା ବୋଲି ଯେ ସ୍ତ୍ରୀ ପୁରୁଷ ସବୁ ଏହାକୁ ପ୍ରୟୋଗ କରିବେ ଏହା ନୁହେଁ । ଶାସ୍ତ୍ରରେ ଅଲିଙ୍ଗନ ଚୁମ୍ବନାଦି ଅନେକ ଉପଚାର ବର୍ଣ୍ଣନା କରା ଯାଇଅଛି । ତା ବୋଲି ସବୁଲୋକେ କ'ଣ ସବୁ



ଉପଗ୍ରହ ଭଳି ପାରନ୍ତି ? ନା ତା ସମ୍ଭବ ନୁହେଁ । ଶିକ୍ଷିତ ଲୋକମାନଙ୍କ ପକ୍ଷରେ ଦେଶର ଅଗ୍ରହ ଓ ସ୍ୱାଭାବିକ ବଗ୍ରହ କରିବା ଉଚିତ ।

ଆୟୁର୍ବେଦ ଶାସ୍ତ୍ରରେ ଲେଖା ହୋଇଅଛି କୁକୁର ମାଂସ ମଧୁର, ପୁଷ୍ଟିକାରକ ଓ ବଳବର୍ଦ୍ଧକ । ଏଥିପାଇଁ କ'ଣ ଶାସ୍ତ୍ରରେ ଲେଖା ଅଛି ବୋଲି ବୁଦ୍ଧିମାନ ଲୋକ ଏହି କୁକୁର ମାଂସ ଖାଇବେ ? ନା' କେବେହେଁ ନୁହେଁ । ଆମ୍ଭେମାନେ ଏ ଶାସ୍ତ୍ରରେ ଯେ ଏହାର ଆଲୋଚନା କରିଅଛୁ କେବଳ ମନୁଷ୍ୟର କାମୁକ ପ୍ରବୃତ୍ତି ଦେଖାଇବା ପାଇଁ, କିନ୍ତୁ ଏ କୁକର୍ମର ପ୍ରୟୋଗ ପାଇଁ ନୁହେଁ ।



## ନପୁଂସକତାର କାରଣ ସମ୍ବନ୍ଧରେ ଡାକ୍ତରୀ ମତାମତ

ଅଣ୍ଡଗ୍ରନ୍ଥିର ଅନ୍ତଃରସାଭାବ ଅର୍ଥାତ୍ କୌଣସି କାରଣରୁ ଅଣ୍ଡଗ୍ରନ୍ଥିର କ୍ରିୟା-ବୈକଲ୍ୟ ଘଟିଲେ, ଶାରୀରିକ ଓ ମାନସିକ ପରିବର୍ତ୍ତନ ଦୃଷ୍ଟି ହୁଏ । ଭ୍ରୂଣ ଯେତେବେଳେ ମାତୃ ଗର୍ଭରେ ଥାଏ ସେତେବେଳେ ପ୍ରଥମେ ତାହାର ଅଣ୍ଡଗ୍ରନ୍ଥି ( testis ) ଅଣ୍ଡକୋଷକୁ ଓହ୍ଲାଏ ନାହିଁ । ଜନ୍ମର କିଛିଦିନ ପୂର୍ବରୁ ଯଥା ସ୍ଥାନକୁ ଆସେ । କୌଣସି କୌଣସି ଶିଶୁର ଜନ୍ମ ପରେ ଦେଖା ଯାଇଅଛି ଯେ, ତାର ଅଣ୍ଡକୋଷ ଶୂନ୍ୟ ପଡ଼ିଅଛି, ସେଥିରେ ଅଣ୍ଡଗ୍ରନ୍ଥି ନାହିଁ । ଏପରି ଶେଷରେ ଅଧିକାଂଶ ସ୍ଥଳେ ଅଣ୍ଡକୋଷର ଠିକ୍ ଉପରେ ତଳପେଟ ଓ ଉରୁଦେଶର ସଂଯୋଗ ସ୍ଥଳରେ ଅଣ୍ଡଗ୍ରନ୍ଥି ଅନୁଭବ କରାଯାଏ । ଅର୍ଥାତ୍ ଏହା କିଛି ଦୂର ଓହ୍ଲାଇ ଆସି, ଠିକ୍ ସ୍ଥଳେ

ପହଞ୍ଚି ନ ପାରି ମଧ୍ୟପଥରେ ରହି ଯାଇଅଛି । ଏପରି ଶିଶୁର ଜନ-ନେନ୍ଦ୍ରିୟ ଆଉ ବିକାଶ ହୁଏ ନାହିଁ ।

ଏ ସ୍ଥଳେ ଅସ୍ତ୍ରୋପଚାର ଦ୍ଵାରା ଡାକ୍ତରମାନେ ଅଣ୍ଡଗ୍ରନ୍ଥିକୁ ଅଣ୍ଡକୋଷକୁ ଆଣି ପାରନ୍ତି । ଏହାର ଅନେକ ଚିକିତ୍ସା ମଧ୍ୟ ଦେଶରେ କରାଯାଇ ଅଛି ।

କ୍ଵଚିତ୍ ଏପରି ଶିଶୁ ମଧ୍ୟ ଦେଖାଯାନ୍ତି—ଯେଉଁମାନଙ୍କର ଅଣ୍ଡକୋଷ ଏକବାରେ ନାହିଁ । ଏ ମାନଙ୍କର ପୁରୁଷାଙ୍ଗ ଆଉ ବଢ଼ି ପାରେ ନାହିଁ ଏବଂ ପ୍ରୋଷ୍ଟେଟ୍‌ଗ୍ଲାଣ୍ଡ ପ୍ରଭୃତି ବିଶୀର୍ଣ୍ଣ ହୋଇଯାଏ । ଯୌବନ ସମୟରେ ଏମାନଙ୍କର ଦେହର ଗଠନ, କେଶ ଓ କଣ୍ଠସ୍ଵର ପୁରୁଷ ପରି ନ ହୋଇ କେତେକାଂଶରେ ସ୍ତ୍ରୀଲୋକ ପରି ହୋଇ-ଯାଏ । ଏମାନଙ୍କର ନିଶଦାଢ଼ି ଉଠେ ନାହିଁ ଓ ବୁଦ୍ଧିବୃତ୍ତି ମଧ୍ୟ ସେପରି ବିକାଶ ହୁଏ ନାହିଁ । ବାଲ୍ୟକାଳରେ ଏହି ଅଣ୍ଡଗ୍ରନ୍ଥି ଯଦି କାଟି ବାହାର କରି ଦିଆଯାଏ ତେବେ ପୁରୁଷ ମଧ୍ୟ ଏହିପରି ହୋଇ ଯାଇଥାଏ । ଅଣ୍ଡଗ୍ରନ୍ଥି ବିହୀନ ଏକ ପୁରୁଷ-ନପୁଂସକର ଛବି ନଂ ୨ମ୍ବର ଶିଟରେ ଦେଖ ।

## ଚିକିତ୍ସା

ଅଣ୍ଡଗ୍ରନ୍ଥି ରୁଗ୍‌ଣ ହୋଇ ଯଦି ଆବଶ୍ୟକ ଅନୁସାରେ ଅନ୍ତଃ ରସ ନିର୍ଗତ କରିବାକୁ ଅସମର୍ଥ ହୁଏ, ତେବେ ଏହାର ଅଭାବ ପୂରଣ କରିବା ଆବଶ୍ୟକ । ନିମ୍ନଲିଖିତ ରୂପେ ଅଣ୍ଡଗ୍ରନ୍ଥି ବ୍ୟବହାର କରାଯାଏ । ଯଥା—ପ୍ରାଚୀନ ଯୁଗରେ ଋଷିମାନେ ପୁରୁଷତ୍ଵ ହାନି ରୋଗରେ ଛେଳି ଅଣ୍ଡକୋଷ ଦୁଗ୍‌ଧ ସହିତ ସିଦ୍ଧ କରି ରୋଗୀକୁ ଖାଇବାକୁ ଦେଉଥିଲେ । ବର୍ତ୍ତମାନ ମଧ୍ୟ ଏହାର ପ୍ରଚଳନ ଅଛି ।



ସାଧାରଣତଃ ଏହିସବୁ ରୋଗରେ ଅଣ୍ଡଗ୍ରନ୍ଥି ସହିତ ଏଣ୍ଟିରିୟର ପିଚ୍ୟୁଇଟାରି ଗ୍ରନ୍ଥି ପ୍ରୟୋଗ କଲେ ଅଧିକ ଉପକାର ମିଳେ । ନିମ୍ନଲିଖିତ ରୂପେ ବ୍ୟବହାର କରାଯାଇ ପାରେ ।

| | |
|---|---|
| ଅର୍କିକ୍ ( ଓଭାରୀର ଚୂର୍ଣ୍ଣ ) | ୧ ଗ୍ରେନ୍ |
| ଏଣ୍ଟିରିୟର ପିଚ୍ୟୁଇଟାରି | ½ ଗ୍ରେନ୍ |
| କାଲ୍ସିୟମ ଗ୍ଲାଇସିରୋ ଫସ୍ଫେଟ୍ | ୨ ଗ୍ରେନ୍ |

ଏକତ୍ର ଏକମାତ୍ରା । ପ୍ରତିଦିନ ୨ ଥର ସେବ୍ୟ ।

( ENDOCRINOLOGY by Dr. S. K. Mukherji M. B. )

୨ । ଏଣ୍ଟିରିୟର ପିଚ୍ୟୁଇଟାରି ରସ ନାମକ ଗୋଟିଏ ପଦାର୍ଥ ଶରୀରରେ ସ୍ୱଭାବରେ ଥାଏ । କୌଣସି କାରଣ ବଶତଃ ଏହା ଯଦି ଶରୀରରୁ କମିଯାଏ ତା ହେଲେ ମନୁଷ୍ୟକୁ କ୍ଳୀବରୋଗ ଆକ୍ରମଣ କରେ । ରୋଗୀ ପୁରୁଷ ହୋଇଥିଲେ ତାହାର ଲିଙ୍ଗର ଆକୃତି ଛୋଟ ହୁଏ ଏବଂ ସଙ୍ଗମଶକ୍ତି କ୍ରମଶଃ କମିଯାଏ । ସ୍ତ୍ରୀଲୋକ ହୋଇଥିଲେ ତାହାର ଆଉ ଗର୍ଭଧାରଣ କରିବାର କ୍ଷମତା ରହେ ନାହିଁ । ଏହି ରୋଗ ସ୍ତ୍ରୀଲୋକମାନଙ୍କୁ ୨୫ ଠାରୁ ୩୫ ବର୍ଷ ମଧ୍ୟରେ ବେଶୀ ଦେଖା ଯାଇଥାଏ । କିନ୍ତୁ ସ୍ତ୍ରୀଲୋକର ବାଲ୍ୟାବସ୍ଥାରୁ ଏହି ପିଚ୍ୟୁଟାରି ରସର ଅଲ୍ପତା ଘଟିଲେ, ତା'ର କୁଚ ଓ ଜନନେନ୍ଦ୍ରିୟ ବୃଦ୍ଧି ପାଇଁ ପାରେ ନାହିଁ । ତେଣୁ ସେ କ୍ଳୀବ ହୋଇ ଯାଏ । ସେହିପରି ସ୍ତ୍ରୀ-କ୍ଳୀବର ଗୋଟିଏ ଛବି ନ ୧୩ ମ୍ବର ଶିଟରେ ଦେଖ ।





## ଶଙ୍କସ୍ରା

ଏହିପର ରୋଗୀ ପକ୍ଷେ ଡାକ୍ତର ଔଷଧର ମଧ୍ୟ ବ୍ୟବସ୍ଥା ଅଛି । ଏଣ୍ଟିରପ୍ୟୁର ପିଟ୍ୟୁଇଟାର ଓ ଶୁଷ୍କ ଡିମ୍ବକୋଷ ( ovary ) ର ଚୂର୍ଣ୍ଣକର ଏ ଉଭୟକୁ ଏକତ୍ର ମିଶାଇ ଖାଇଲେ ଉପକାର ହୁଏ ।

| | |
|---|---|
| ଏଣ୍ଟିରପ୍ୟୁର ପିଟ୍ୟୁଇଟାର | ଗ୍ରେ ୨ ନ |
| ଅର୍କ ( ଓଭାରୀର ଚୂର୍ଣ୍ଣ ) | ଗ୍ରେ ୨ ନ |

ଏକତ୍ର ଏକମାତ୍ରା । ପ୍ରତିଦିନ ୨ ମାତ୍ରା ସେବ୍ୟ ।

( ENDOCRINOLOGY by Dr. S. K. Mukherji M. B. )





# ପଞ୍ଚମ ଅଧିକରଣ

## ରହସ୍ୟ ବାର୍ତ୍ତା

କାମଶାସ୍ତ୍ରରେ ବର୍ଣ୍ଣିତ ସହବାସ ବିଧି ଯାହା ସବୁ ଏଥି ପୂର୍ବରୁ ବିବାହ ରଞ୍ଜନ ଓ କାମରଞ୍ଜନ ନାମରେ ଦର୍ଶାଇ ଦିଆ ଯାଇ ଅଛି. ସେ ସବୁରେ ସଫଳକାମ ହେବାକୁ ହେଲେ ସ୍ୱାମୀ ଓ ସ୍ତ୍ରୀର ସଂଯମ ଓ ଧୈର୍ଯ୍ୟ ଆବଶ୍ୟକ । ଯଦି ଦମ୍ପତିଙ୍କର ଚିରବାଞ୍ଛିତ ରତି-ସୁଖରେ ଅତୃପ୍ତି ଜାତ ହୁଏ, ତେବେ ସେମାନେ ନିମ୍ନଲିଖିତ ବିଷୟ ଗୁଡ଼ିକ ପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ରୂପ, ଗୁଣ, ଅବସ୍ଥା ଓ ଦାନ-ତ୍ୟାଗ ବା ଉଦାରତା, ଏହି ପାଞ୍ଚଗୋଟି ଗୁଣ ପୁରୁଷ ପକ୍ଷେ ସୌଭାଗ୍ୟ ବୃଦ୍ଧିର ମୁଖ୍ୟ କାରଣ । ଏହିସବୁ ଗୁଣଥିଲେ ନାରୀ ପୁରୁଷ ପ୍ରତି ଆକୃଷ୍ଟ ହୁଏ । ପୁରୁଷ କିମ୍ବା ସ୍ତ୍ରୀ, ସେ ଯଦି ସଦାସର୍ବଦା ବିଷୟ-ଭାବନାରେ ଲିପ୍ତ ରହି ନାନାଦି ଦୁଶ୍ଚିନ୍ତା, ବାଦବିବାଦ ଇତ୍ୟାଦିରେ ମନୋନିବେଶ କରେ, ସେ ଯୁବକ ବା ଯୁବତୀ ହେଲେ ସୁଦ୍ଧା ତା'ର ଅକାଳ ବାର୍ଦ୍ଧକ୍ୟ ଉପସ୍ଥିତ ହୁଏ । ତା'ର ଶକ୍ତି କମି ଯାଏ । ଯେ ଯେତେ ବିଷୟ ବାସନାରୁ ବିରତ ହୋଇ ଆନନ୍ଦ ଓ ନିଶ୍ଚିନ୍ତ ମନରେ କାଳଯାପନ କରିବ, ତାର ଯୌବନ ସେତେ ଦିନ ସ୍ଥାୟୀ ହେବ ।

ଯେ କୌଣସି ସୁନ୍ଦର ବସ୍ତୁକୁ ସମସ୍ତେ ଆଦର କରିଥାନ୍ତି । ଜ୍ୟୋତ୍ସ୍ନାମୟୀ ଶାରଦୀୟ ନିଶା, ଉଷାକାଳ, ସମୁଦ୍ର ବେଳାରେ





ଦଣ୍ଡାୟମାନ ହୋଇ ଦିଗ୍‌ବଳୟର ଦୃଶ୍ୟ, ବର୍ଷାଗମ ଦେଖି ଅରଣ୍ୟରେ ମୟୂରର ନୃତ୍ୟ ପ୍ରଭୃତି ସମସ୍ତଙ୍କୁ ସୁନ୍ଦର ଦିଶେ । ବୀଣାର ଝଙ୍କାର, ନାରୀର କୋମଳ କଣ୍ଠର ସଙ୍ଗୀତ, ଶିଶୁର ଦରୋଟି ବଚନ, କୋକିଳର କୁହୁତାନ କାନକୁ ମଧୁର ଲାଗେ । ଏଣୁ ରାଧାନାଥ ତାଙ୍କ ଗ୍ରନ୍ଥାବଳୀରେ ଲେଖିଛନ୍ତି—

"ସୁନ୍ଦରେ ତୃପ୍ତିର ଅବସାଦ ନାହିଁ,
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।"

ଅତଡ଼ଥାନ କାଳରୁ ନାରୀସମାଜ ନିଜର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ପାଇଁ ନିରନ୍ତର ଚେଷ୍ଟା କରୁଅଛନ୍ତି । ଦେଶ-କାଳ-ରୁଚି ଭେଦରେ ବସନ-ଭୂଷଣ ଆଭରଣର ପରିବର୍ତ୍ତନ ଘଟିଅଛି । ପ୍ରାଚୀନକାଳରୁ ଚଳି ଆସୁଥିବା ସ୍ତ୍ରୀସୌନ୍ଦର୍ଯ୍ୟ ବୃଦ୍ଧିର ନିମ୍ନଲିଖିତ ଆଦର୍ଶଗୁଡ଼ିକ ଆଜି ବି ସବୁଠାରେ ଆଦର ପାଉଅଛି । ତାର କେତେକ ଉଦାହରଣ ନିମ୍ନରେ ଦେଲୁ । ଏ ବିଷୟରେ କାମବିଜ୍ଞାନ ପ୍ରଥମ-ଖଣ୍ଡରେ ମଧ୍ୟ ଆଲୋଚନା କରା ଯାଇଅଛି ।

ଅବଶ୍ୟ ଏହା ଆଜିକାଲିର ରୁଚିକୁ ଖାପ ଖାଇ ନ ପାରେ, ତଥାପି ସୌନ୍ଦର୍ଯ୍ୟ ବଢ଼ାଇବାର କିଛି ଉପାଦାନ ଏଥିରୁ ମିଳିପାରେ ।



## ସ୍ତ୍ରୀର ଅଙ୍ଗପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ

ନାରୀର ସବୁଠାରୁ ବଡ଼ଧନ ହେଉଛି, ତା'ର ସୌନ୍ଦର୍ଯ୍ୟ । ରୂପ ଯୋଗୁଁ ସେ ସବୁଠାରେ ଆଦର ପାଇଥାଏ । ଏହି ରୂପ ସହିତ ଯଦି ଶୀଳତା, ଲଜ୍ଜା ଓ ସଦାଚାର, ଏହି ତିନିଗୁଣ ମିଶି ଯାଇଥାଏ



ତାହା ହେଲେ ସେ ନାରୀ ଦେବ ଦୁର୍ଲ୍ଲଭ ହୁଏ । ଶରୀରର ପ୍ରାକୃତିକ ସୌନ୍ଦର୍ଯ୍ୟ ହିସାବରେ ୧—ନେତ୍ର, ୨—ଦନ୍ତପଂକ୍ତି, ୩—ନଖାବଳି, ୪—ମୁଖରକାନ୍ତି, ଏ ଗୁଡ଼ିକ ଉଜ୍ଜ୍ୱଳବର୍ଣ୍ଣ ହେବା ଅବଶ୍ୟକ । ୧—କେଶପାଶ, ୨—ପଲକ, ୩—ଭ୍ରୁକୁଟି, ୪—ଆଖିର ତାରା, ଏ ଗୁଡ଼ିକ କୃଷ୍ଣବର୍ଣ୍ଣ ହେବା ଦରକାର । ୧—ଗଣ୍ଡଦେଶ, ୨—ଜିହ୍ୱା ୩—କପୋଳ ଓ ୪—ଅଧର, ଏହା ରକ୍ତବର୍ଣ୍ଣ ହେବା ଦରକାର । ୧—ଶିର, ୨—ଅଙ୍ଗୁଳିର ଅଗ୍ରଭାଗ, ୩—ଗୋଡ଼ର ଗୋଇଠି ୪—ବାହୁପ୍ରଦେଶ, ଏ ଗୁଡ଼ିକ ଗୋଲାକାର ହେବା ଅବଶ୍ୟକ । ୧—ନେତ୍ର, ୨—ମୁଣ୍ଡରବାଳ, ୩—ପଲକ ଓ ୪—ଅଙ୍ଗୁଳି, ଏହା ଦୀର୍ଘହେବା ଅବଶ୍ୟକ । ୧—ନିତମ୍ବ, ୨—ଗ୍ରୀବା, ୩—ପେଣ୍ଡୁ ୪—ଜଙ୍ଘ, ଏଗୁଡ଼ିକ ସ୍ଥୂଳ ଏବଂ ୧—ମସ୍ତକ, ୨—ନେତ୍ର, ୩—ସ୍ତନ ଓ ୪—ସ୍କନ୍ଧ, ଏ ଗୁଡ଼ିକ ବିଶାଳ ହେଲେ ସେ ନାରୀ ସର୍ବଶ୍ରେଷ୍ଠା ସୁନ୍ଦରୀ ବୋଲି ଖ୍ୟାତି ଲାଭ କରିଥାଏ । ଏପରି ସର୍ବ-ଅବୟବ-ସମ୍ପନ୍ନା ନାରୀ ସଂସାରରେ ଖୁବ୍ କମ ଦେଖିବାକୁ ମିଳନ୍ତି । ତଥାପି ଏହି "ସତ୍ୟଂ ଶିବଂ ସୁନ୍ଦରଂ" ଅଲୌକିକ ଅଙ୍ଗ-ପ୍ରତ୍ୟଙ୍ଗ-ସମାବେଶ ରମଣୀ ସଂସାରରେ ଅଛନ୍ତି ଓ ଦେଖିବାକୁ ମଧ୍ୟ ମିଳେ ।

ସ୍ତ୍ରୀର ସୌନ୍ଦର୍ଯ୍ୟ ବଢ଼ାଇବାକୁ ହେଲେ ସେଥିପାଇଁ ଷୋଳ ଶୃଙ୍ଗାର ଓ ଅଙ୍ଗରାଗାଦି ନାନା ପ୍ରକାର ପ୍ରସାଧନର ପ୍ରଚଳନ ଅଛି । ତାହା କାମରଞ୍ଜନ ୧ମ ଖଣ୍ଡରେ ପୃ୧୦୬ଷ୍ଠାରୁ ପୃ୧୧୧ଷ୍ଠା ପର୍ଯ୍ୟନ୍ତ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇ ଅଛି ।

—❋—





## ରମଣୀର ସ୍ତନ-ସୌନ୍ଦର୍ଯ୍ୟ

ରମଣୀର ଅବୟବ-ଗଠନ ସୌନ୍ଦର୍ଯ୍ୟ ମଧ୍ୟରେ ସ୍ତନ ହେଉଛି ସୌନ୍ଦର୍ଯ୍ୟର ଆଗାର । ହୀନ-ସ୍ତନା ନାରୀ ଯେତେ ଉଜ୍ଜ୍ୱଳବର୍ଣ୍ଣ, ସୌଷ୍ଠବ ଅଙ୍ଗଗଠନ ଓ ପଦ୍ମମୁଖ ଧାରଣ କଲେ ସୁଦ୍ଧା ତା'ର ସୌନ୍ଦର୍ଯ୍ୟର ବିକାଶ ହୁଏ ନାହିଁ । ପୀନ ସ୍ତନର କମନୀୟତା ସମ୍ବନ୍ଧେ ବର୍ଣ୍ଣନା କରିବାକୁ ଯାଇ କବିମାନଙ୍କର ଭାଷା ଅଣ୍ଟେ ନାହିଁ । ଏପରି କି ମହାକବି କାଳିଦାସ ମା· ସରସ୍ୱତୀଙ୍କ ରୂପବର୍ଣ୍ଣନା କରିବାକୁ ଯାଇ ପ୍ରଥମେ ବର୍ଣ୍ଣନା କଲେ "ସ୍ତନଯୁଗ ଶୋଭିତ ମୁକ୍ତା ହାରେ ।" କେବଳ ଏଇଥି ପାଇଁ, ସରସ୍ୱତୀ ତାଙ୍କୁ ମହାବିଦ୍ୱାନ କରି ଦେଲେ ସୁଦ୍ଧା ଅସନ୍ତୁଷ୍ଟା ହୋଇ, ବିଦ୍ୟାନଗରୀରେ କେଉଁ ଚୈଣୀଠାରେ ପରାଜିତ ହେବାକୁ ଅଭିଶାପ ଦେଇଥିଲେ ବୋଲି ଶାସ୍ତ୍ର ବର୍ଣ୍ଣନା କରେ ।

ସେହି ସ୍ତନଯୁଗଳକୁ ସମୁନ୍ନତ ରଖିବାକୁ ହେଲେ କ'ଣ ଉପାୟ କରଣୀୟ ତାହା ବିଚାହବିଜ୍ଞାନ ପୃ ୨୨୫ ଷ୍ଠାରେ ବର୍ଣ୍ଣନା କରାଯାଇ ଅଛି । ଏଣୁ ତାହାର ପୁନରାବୃତ୍ତି କରିବା ଏଠାରେ ନିଷ୍ପ୍ରୟୋଜନ ।

ପୀନସ୍ତନ ସମ୍ବନ୍ଧରେ କେତେକ ହାସ୍ୟରସାତ୍ମକ ବାକ୍ୟ ସଂସ୍କୃତ ଓ ପଦ୍ୟାର ଆକାରରେ ନିମ୍ନରେ ଦିଆଗଲା । ପାଠକ ପାଠିକାମାନଙ୍କର ଏହା ମନମୁଗ୍‌ଧକର ହେବ ବୋଲି ଆମ୍ଭେମାନେ ଅନୁମାନ କରୁ ।

ଏକ ପୀନସ୍ତନୀ ରମଣୀକୁ ଦେଖି କୌଣସି ରସିକ କହୁଅଛି—

(କ)ଯାସ୍ୟତି ଯୌବନ ମଚିରାତ୍ କୁଚୟୁବପି ପତଷ୍ୟତସ୍ତ ଲାବଣ୍ୟଂ,
ଯୁବାଜନରଞ୍ଜନ ପାପଂ କେବଳ ମଚଲେ ଚିରସ୍ଥାୟୀ ।



ଶୁଣେଲେ ସୁନ୍ଦରୀ ତୋ'ର ଏ ନବ ଯୋବନ,
ଶୀଘ୍ର ଗୁଳିଯିବ ନ ରହିବ ଚିରଦିନ ।
ତୋର ଯେଉଁ ଦୁଇସ୍ତନ ହୋଇଛନ୍ତି ଉନ୍ନତ,
ଦେଖୁ ଦେଖୁ ତାହା ମଧ୍ୟ ହୋଇବ ପତିତ ।
କିନ୍ତୁ ଧନି ! ଯୁବାଜନେ ବଞ୍ଚନା କରନ୍ତି,
ଛଳ ଯେଉଁ ପାପ ତାହା ଥିବ ଚିରଦିନ ।

(ଖ) କଞ୍ଚୁକେନ ପିହିତାବପି ପ୍ରିୟେ,
ବ୍ୟକ୍ତିମେବ ତବ ଗଚ୍ଛତଃ ସ୍ତନୌ,
ଉନ୍ନତସ୍ୟ ମହତସ୍ତିରସ୍କ୍ରିୟା,
ନୂନମସ୍ୟ ଗୁଣ ବୃଦ୍ଧୟେ ଭବେତ୍ ।

ପ୍ରିୟେ ! ମୁଁ ତୁମ୍ଭଙ୍କୁ କହୁଅଛି ନିବେଦନ,
ତୁମ୍ଭ ସ୍ତନଦ୍ୱୟ ନ କରିବ ଅଚ୍ଛାଦନ ।
କାଞ୍ଚୁଲିରେ ସ୍ତନଦ୍ୱୟ ଯେବେ ଆଚ୍ଛାଦିତ,
ତାହାର ସୌନ୍ଦର୍ଯ୍ୟ ସେତେକ ବାହାର ହୋଇବ ।
ଉଚ୍ଚକୁ ଆବୃତ କଲେ ଆବୃତ ନ ହେବ,
ଉଚ୍ଚର ସେ ଉଚ୍ଚଗୁଣ ବେଶୀ ବୃଦ୍ଧି ହେବ ।

(ଗ) ରୋମାବଳୀ ତରଣିଜା ଯୁବତିଜନାନାଂ,
ବକ୍ଷସ୍ଥଲେ ବିଶଦ ମୌକ୍ତିକହାର ଗଙ୍ଗା ।
ତୀର୍ଥଦ୍ୱୟଂ ଗୁରୁତରଂ ସମୁପେତ୍ୟ ମନ୍ୟେ,
ପିଣ୍ଡଦ୍ୱୟଂ କୁଚଯୁଗଂ ମଦନା ଦତ୍ତଂ ।

ଯୁବତୀର ରୋମାବଳୀ ଯମୁନା ଶୋଭୁଛି,
ବକ୍ଷସ୍ଥଳେ ମୁକ୍ତାହାର ଗଙ୍ଗା ବହୁଛି ।





ଥିବାରୁ ଏ ଦୁଇ ଗର୍ଭ ହେଉଅଛି ମନେ,
କୁଚ ଗିରିରୁଦ୍ଧେ ଦଣ୍ଡ ହୋଇଛି ମଦନେ ।

(ଘ) ଶମ୍ଭୁତ୍ୱଂ କୁଚୟୋର୍ବଦନ୍ତି ଯଦଦଂ ନୋସାମ୍ୟମେତଦ୍ ଯତଃ,
ଶମ୍ଭୋର୍ଦର୍ଶନତୋ ମୃତୋଽପି ମଦନୋ ଯଦ୍ଦର୍ଶନା ଜ୍ଜୀବତି ।
କୁମ୍ଭତ୍ୱଂ କୁଚୟୋର୍ବଦନ୍ତି କବୟ ସ୍ତତ୍ତ୍ୱ ସମ୍ୟଗାଭାତି ମେ,
ନୋଚେତ୍ତୌ ପୌରୁଷସିଂହ ଏବ ସତତଂ କାନ୍ତ୍ୟା ବଦାର୍ଯ୍ୟୌତକଥ

କବିଏ ବର୍ଣ୍ଣନ୍ତି କୁଚ ଶମ୍ଭୁର ସମାନ,
କିନ୍ତୁ ଶମ୍ଭୁ ସଙ୍ଗେ ନାହିଁ କୁଚର ମିଳନ ।
ଶମ୍ଭୁଙ୍କୁ ଦେଖିଣ ପ୍ରାଣ ତେଜିଲା ମଦନ,
କିନ୍ତୁ କୁଚ ଦେଖି ତା'ର ରହିଛି ଜୀବନ ।
ଗଜକୁମ୍ଭ-ସମ କୁଚ ଏହୁ ଯେ ବଚନ,
ସତ୍ୟ ସତ୍ୟ ମହାସତ୍ୟ ଶୁଣ ହେ କାରଣ ।
ନହୁଚ ପୁରୁଷ-ସିଂହ ତାକୁ ଆକ୍ରମିଣ,
କି କାରଣେ କହ କର ଦିଅଇ ବଦୀର୍ଣ୍ଣ ।

( ଙ ) ଅବୃଣୋତ ଯଦ ସା ମୃଗୀଦୃଶ୍ୟ,
ସ୍ତ୍ରାଞ୍ଚଳେନ କୁଚ-କାଞ୍ଚନାଚଳଂ ।
ଚୁମ୍ବ ଏବ ବହୁରେଣ ଗୌରବା—
ଦୁନ୍ନତା ନ ସହତେ ତିରସ୍କ୍ରିୟାଂ ।
ନିଜର ଅଞ୍ଚଳେ ଯଦ ମୃଗନେତ୍ରା ନାରୀ,
ଘୋଡ଼ାଇ ରଖଇ ଦୁଇ ସ୍ୱର୍ଣ୍ଣକୁଚ ଗିରି ।
ତଥାପି ବାହାରେ ଆସେ ସେ ଦୁଇ ତାହାର,
ସେ କୁଚ ଭିତରେ ରଖା ଅସାଧ୍ୟ ବେପାର ।



ଯଥାର୍ଥ ଉନ୍ନତ ଯଦ କେହ୍ନ କେବେ ହୁଏ,
ଅପରର ଉରସ୍କାର କଦାପି ନ ସହେ ।
(ଚ) କାମିନୀ କାମ୍ଭ-କାନ୍ତାରେ କୁଚପର୍ବତ ଦୁର୍ଗମେ,
ମା ସଞ୍ଚର ମନଃପାନ୍ଥ ତତ୍ରାସ୍ତେ ସ୍ମରତସ୍କରଃ ।
ରମଣୀର ଦେହଗୋଟି ଭୀଷଣ ଗହନ,
ଉଚ୍ଚକୁଚ ଗିରି ଦୁଇ ତହିଁ ବିଦ୍ୟମାନ ।
ସେଠାକୁ ନ ଯାଅ କେବେ ରେଶୁ ଅରେ ମନ
ଚୋରତ ପାଇଲେଟି ତହିଁ ବଧିବ ମଦନ ।



## ସର୍ବାଙ୍ଗ ସୁନ୍ଦରୀ ରମଣୀର ରୂପ ବର୍ଣ୍ଣନ

ଯା କୁଚଗୁର୍ବୀ ମୃଗ ଶିଶୁନୟନା,
ପୀନନିତମ୍ବା ମଦ୍‌କରିଗମନା ।
କିନ୍ନର କଣ୍ଠୀ ସୁଲଳିତ ଦଶନା,
ସା ଭବ ସୌଖ୍ୟଂ ବିତରତୁ ଲଲନା ।
ବକ୍ଷର ଉପର ଯାର ପୀନ ପୟୋଧର,
ମୃଗଶିଶୁ ସମ ଯାର ନୟନ ସୁନ୍ଦର ।
ବିପୁଳ ନିତମ୍ବ ଯାର ଶୋଭେ ଅନିବାର,
ମତ୍ତକରୀ ସମ ରମ୍ୟ ଗମନ ଯାହାର ।
କିନ୍ନରୀର ତୁଲ୍ୟ ମିଷ୍ଟ ଯାର କଣ୍ଠସ୍ବର ।
ଯାହାର ଦଶନପନ୍ତି ଅତି ମନୋହର ।
ତୁମ୍ଭ ଶତ୍ରେ ସେହି ମହା ସୁନ୍ଦରୀ ରମଣୀ,
ବିତରଣ କରୁ ସୁଖେ ଦିବସ ଯାମିନୀ ।







## ନାରୀର ବାଲ୍ୟକାଳରୁ ଯୌବନକାଳ ପର୍ଯ୍ୟନ୍ତ କ୍ରମ ବିକାଶ

ଅଦୌବାଗମୃତଂ ତତୋମୁଖଶଶୀ ଲାବଣ୍ୟଲକ୍ଷ୍ମୀସ୍ତତୋ,
ମତ୍ତେଭବ୍ରତ କୁମ୍ଭଯୁଗ୍ମନିଭକୁଚୌଜାତାନ୍ୟମୂନି କ୍ରମାତ୍ ।
ଇଥଂ ଯଲ୍ଲଭ ଯୌବନାଦ୍ରି ମଥନାଦ୍‌ବାଲାବପୁର୍ବାରିଧେ,
ର୍ଜାତଂ ଯଚ୍ଚ କଟାକ୍ଷବାଡଣି ବିଷଂ ସହ୍ୟଂ ନଶମ୍ଭୋରପି ।

ଏଷା ଭବତ୍ୟତ ବନୀନ୍ଦ୍ର ସରୋରୁହାକ୍ଷୀ,
କାମସ୍ୟ କାପି ବନିତା ତନୁଜାନୁଜା ବା ।
ଯଃ ପଶ୍ୟତ କ୍ଷଣମିମାଂ କଥମନ୍ୟଥାସୌ,
କୋପାତ୍ ତମସ୍ତ କହ୍ନଣଂ ତହ୍ନଣଂ ନିହନ୍ତି ।
ପ୍ରଥମରେ ବାକ୍ୟ ସୁଧା ଉଠିଲା ଉପରେ,
କ୍ରମେ ମୁଖ ଶଶୀ ଦେଖା ଦେଲା ତାର ପରେ ।
ଲାବଣ୍ୟ କମଳା ତହୁଁ ପରେ ଦେଖା ଦେଲା,
ତହୁଁ ହସ୍ତୀ କୁମ୍ଭ କୁଚ ଦ୍ୱୟ ଜନମିଲା ।
ତାର ପରେ ଯଉବନ ମନ୍ଦର ପର୍ବତ
ଡାଳା ଗାତ୍ର ସମୁଦ୍ରକୁ କଲା ଆଲୋଡ଼ିତ ।
ତହୁଁ ଯେ କଟାକ୍ଷ-ବିଷ ପୁଣି ଜନମିଲା,
ଶିବଙ୍କର ତାହା ମଧ୍ୟ ଅହସ୍ୟ ହୋଇଲା ।
ନିଶ୍ଚୟ ହୋଇବ ଏହି ସୁନ୍ଦରୀ ରମଣୀ,
ମଦନର ପତ୍ନୀ କିବା କନ୍ୟା ବା ଭଗିନୀ ।
ନୋହିଲେ ଏହାକୁ ଯେହୁ ଗୁହେଁ ମାତ୍ର ଥରେ,
ନିର୍ଦ୍ଦୟେ ମଦନ କମ୍ପା ତାହାକୁ ପ୍ରହାରେ ।





## କାମର ଆୟୁଧ

ଯେଉଁ ଦ୍ରବ୍ୟ ସେବନ କଲେ ପୁରୁଷ ଅଶ୍ୱ ପରି ମୈଥୁନ କରିବାକୁ ସକ୍ଷମ ହୁଏ, ତାହାକୁ ବାଜୀକରଣ ବୋଲାଯାଏ । ଏହିପରି କେତେକ ବାଜୀକରଣ ଔଷଧ ଶରୀର ବିଜ୍ଞାନ ୧୦୩ ପୃଷ୍ଠା ଦ୍ୱାଦଶ ପରିଚ୍ଛେଦରେ ଦିଆଯାଇଅଛି ।

ବୃଦ୍ଧତ୍ୱ, ଚିନ୍ତା, ବ୍ୟାଧି, ଶରୀର ଅପକର୍ଷଣ, ଉପବାସ, ଏବଂ ଅଧିକ ସ୍ତ୍ରୀ-ସହବାସ, ଏହିସବୁ କାରଣରୁ ମନୁଷ୍ୟର ବୀର୍ଯ୍ୟ କ୍ଷୟ ପ୍ରାପ୍ତ ହୁଏ ।

ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ, ଏହି ପଞ୍ଚେନ୍ଦ୍ରିୟ ସନ୍ତୋଷ ବିଧାୟକ ଗୁଣ ଯେଉଁ ସ୍ତ୍ରୀଠାରେ ଥାଏ, ସେପରି ସ୍ତ୍ରୀ ପୁରୁଷ ଅତି ଆଦରଣୀୟ ହୋଇଥାଏ ।

ତେଲ ମାଲିସ, ପ୍ରଲେପ, ସ୍ନାନ, ସୁଗନ୍ଧିତ ବସ୍ତୁଧାରଣ ଫୁଲ ହାର ଓ ଉତ୍ତମ ଅଳଙ୍କାର ଭୂଷଣ, ସୁନ୍ଦର ଘର, ସୁନ୍ଦର ଶଯ୍ୟା, ଆସନ, ଉତ୍ତମ ବସ୍ତ୍ର, ଉଦ୍ୟାନରେ ପକ୍ଷୀମାନଙ୍କର କଳରବ, ସୁନ୍ଦର ସ୍ତ୍ରୀମାନଙ୍କର ନୂପୁର ଶିଞ୍ଜନ, ସୁନ୍ଦର ସ୍ତ୍ରୀ ଲୋକର ସ୍ପର୍ଶନ, ଏ ସବୁ କାମ ଉତ୍ତେଜନା ବୃଦ୍ଧି କରଏ ।

ମତୁଆଲା ଭ୍ରମରର ଗୁଂଜନଯୁକ୍ତ କଇଁଫୁଲରେ ଭରା ସୁଶୋଭିତ ଜଳାଶୟ, ମଲ୍ଲି, ଜାଈ, ଜୁଈ ପୁଷ୍ପ ଶୋଭିତ ଶୀତଳ ସୁରଭିତ ଗୃହ, ନୀଳ ତରଙ୍ଗିତ ନଦୀ, ନୀଳବର୍ଣ୍ଣ ପାହାଡ଼ର ଶିଖର ଦେଶରେ, ଜ୍ୟୋତ୍ସ୍ନାମୟୀ ରଜନୀ, ସୁଗନ୍ଧିତ ଫୁଲ ଗନ୍ଧଯୁକ୍ତ ଶୀତଳ ମନ୍ଦସମିରଣର ସ୍ପର୍ଶ, ରତିକ୍ରୀଡ଼ା କରିବା ପାଇଁ ଉପଭୋଗ୍ୟ ସ୍ଥାନ,





ସଙ୍କୋଚ ରହିତ ଏକାନ୍ତ ସ୍ଥାନ, ସୁନ୍ଦର ସୁଖଦାୟକ କାମ-ସହାୟକ କୋକିଳର ମନୋହର କୁହୁତାନ; ଉତ୍ତମ-ମଧୁର ସ୍ନିଗ୍ଧ ପାନାହାର, ମଧୁର ବାଦ୍ୟ ଓ ସଙ୍ଗୀତ, ସୁଗନ୍ଧିତ ପୁଷ୍ପମାଲ୍ୟ, ନିଷ୍ଟିନ୍ତ ଓ ପ୍ରସନ୍ନ ଚିତ୍ତ, ସୁନ୍ଦର ନବଯୌବନା ସ୍ତ୍ରୀ, ଏ ସବୁ କାମଦେବଙ୍କର ଆୟୁଧ ଅଟନ୍ତି । ଏହାଛଡ଼ା ଯୁବାବସ୍ଥା, ବସନ୍ତ ଋତୁ, ମନୁଷ୍ୟ ଶରୀରରେ କାମ ଜାଗ୍ରତ କରିଥାଏ ।

ଶାସ୍ତ୍ର କହୁଛି :—

ତସ୍ମାନ୍ନରେଣ ରତିରଙ୍ଗ ବିଚକ୍ଷଣେନ ।
ମାୟୁ ମୂପାସ୍ୟସକଳାଂ ସ୍ମରଶାସ୍ତ୍ର ସାଧମ୍ ॥
ଚିଁ ସାଂ ମନୋହରଣମେବ ପରଂ ବିଧେୟମ ।
ନୋଚେଦଭାଃପ୍ରିୟହୃଦୟଂ ଖଳୁକାମିନୀନାମ୍ ॥

ରତିରଙ୍ଗ ବିଚକ୍ଷଣ ପୁରୁଷ-ପ୍ରଧାନ ।
କାମଶାସ୍ତ୍ର ପ୍ରବୀଣତ୍ୱ କରିଣ ଅର୍ଜନ ॥
କାମିନୀ ମନହରଣେ ଚଳାଇବ ମନ ।
ତେବେ ସିଦ୍ଧ ପୁରୁଷରେ ସେ ହୋଇବ ଗଣ୍ୟ ॥
କିନ୍ତୁ ନାରୀର ଅନ୍ତର ଅଟେ ସୁଗଭୀର ।
ତାର ସନ୍ଧାନ ମିଳିବା ବଡ଼ହିଁ ଦୁଷ୍କର ॥



## ବିବାହ ପଦ୍ଧତି

ପଶୁ ଓ ମନୁଷ୍ୟଙ୍କ ମଧ୍ୟରେ ମୈଥୁନ ସମ୍ବନ୍ଧରେ କେତେ ପ୍ରଭେଦ ଅଛି । ତାହା ନିମ୍ନରେ ଦିଆଗଲା—

# କାମ ବିଜ୍ଞାନ ୨ୟ



( ନଂ: ୧୩ ) ସ୍ତ୍ରୀ-ନପୁଂସକ

ଏହି ସ୍ତ୍ରୀଲୋକଟିର ବୟସ ୨୭ ବର୍ଷ। କିନ୍ତୁ ଏ ପର୍ଯ୍ୟନ୍ତ ଋତୁମତୀ ହୋଇନାହିଁ। କାରଣ ବାଲ୍ୟାବସ୍ଥାରୁ ଏଡ୍ରିନାଲର ପିଟ୍ୟୁଇଟାର ରସର ଅଳ୍ପତା ହେତୁ ଏହାର ସ୍ତନ ଓ ଜନନେନ୍ଦ୍ରିୟ ବୃଦ୍ଧି ପାଇ ପାରିନାହିଁ। ଏପରିକି କାମାଦ୍ରିରେ ଲୋମୋଦ୍ଗମ ପର୍ଯ୍ୟନ୍ତ ହୋଇନାହିଁ। ଦେଖିବାକୁ ଠିକ୍ ଶିଶୁଟି ପରି।

୧୪୯ ପୃଷ୍ଠା ଦ୍ରଷ୍ଟବ୍ୟ



ସ୍ତ୍ରୀ-ପଶୁ ପୁରୁଷ-ପଶୁ ସହିତ ମିଳନ ହେବାରେ ଗୋଟିଏ ନିର୍ଦ୍ଧାରିତ ସମୟ ଅଛି । ସେ ସେହି ସମୟରେ ସଙ୍ଗମ ଖୋଜେ ଏବଂ ପୁରୁଷ-ପଶୁକୁ ନିଜେ ବାଛି ନିଏ । କିନ୍ତୁ ପୁରୁଷ-ପଶୁ ଯେ କୌଣସି ସମୟରେ ସଙ୍ଗମ କରିବାକୁ ପ୍ରସ୍ତୁତ ।

ମାନବ ଜଗତର ବ୍ୟବସ୍ଥା ଭିନ୍ନ । ନାରୀ ମାସକୁ ମାସ ଋତୁମତୀ ହୁଏ । ନର ଓ ନାରୀ ଯେ କୌଣସି ସମୟରେ କାମ ପିପାସା ମେଣ୍ଟାଇ ପାରନ୍ତି । ଏଥିପାଇଁ ଶାସ୍ତ୍ରରେ ଅଛି ଋତୁକାଳରେ ପୁରୁଷ ସଂସର୍ଗ କର୍ତ୍ତବ୍ୟ, ଯେହି ସଂସର୍ଗ କେବଳ ହେବ "ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା" । କିନ୍ତୁ ସେ ଶାସ୍ତ୍ରନିଷିଦ୍ଧ ବାକ୍ୟ କେହି ମାନୁ ନାହାନ୍ତି । ଅଧିକାଂଶ ନର ନାରୀ ଏହି ଦୋଷରୁ ହୀନବୀର୍ଯ୍ୟ, ଅକାଳ ବୃଦ୍ଧତ୍ୱ, ରୋଗ କ୍ଲିଷ୍ଟ ଓ ବନ୍ଧ୍ୟାଦି ହୋଇ ଦୁଃଖଭୋଗ କରନ୍ତି ।

ଯେପରି ସ୍ତ୍ରୀ-ପଶୁ ନିଜର ପୁରୁଷ ପଶୁକୁ ନିର୍ବାଚନ କରେ, ଆଦି ଯୁଗରେ ସେହିପରି ନାରୀମାନେ ନିଜର ନରକୁ ବାଛୁଥିଲେ । ସେତେବେଳେ ନାରୀ ଥିଲା ଦଳରେ ସର୍ବେସର୍ବା । ନର ନାରୀର ଅଧୀନରେ ଚଳି ଆସୁଥିଲା । ଦଳରେ ଥିବା ବଳଶାଳୀ ପୁରୁଷମାନେ ନାରୀମାନଙ୍କର ପ୍ରିୟପାତ୍ର ହେଉଥିଲେ । କ୍ରମେ ମାନବ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଚତୁର ଓ ବୁଦ୍ଧିମାନ ଲୋକର ଆଦର ସମାଜରେ ବଢ଼ିବାକୁ ଲାଗିଲା । ଏହି ଚତୁର ଓ ବୁଦ୍ଧିମାନ ଲୋକେ ବଳଶାଳୀ ଲୋକଙ୍କ ଅପେକ୍ଷା ନାରୀମାନଙ୍କ ନିକଟରେ ବେଶୀ ଆଦୃତ ହେଲେ ।

ପଶୁମାନଙ୍କ ମଧ୍ୟରେ ଯେପରି ଦେଖାଯାଏ ଗୋଟିଏ ଅଣ୍ଡିରା ପଶୁ ଜନ୍ମ ହେଲାକ୍ଷଣି ଦଳର ବଳଶାଳୀ ପୁରୁଷ-ପଶୁ ସେ ଛୁଆକୁ





ମାର ପକାଏ କିମ୍ବା ଖାଇଯାଏ । ଅଦ୍ୟଯୁଗରେ ସେହିପରି ନରମାନଙ୍କ ମଧ୍ୟରେ ଯୁଦ୍ଧ ବିଗ୍ରହ ମଧ୍ୟ ଚାଲୁଥିଲା ।

କ୍ରମେ ସଭ୍ୟତାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାଥି ଖୋଜିବାର ଭାର ଆସିଲା ନର ହାତକୁ । ନର ତା'ର ମନମତ ନାରୀକୁ ବାଛିଲା । ନର ବଳଶାଳୀ ସ୍ତ୍ରୀଲୋକକୁ ନିର୍ବାଚିତ ନ କରି ଶାନ୍ତ-ଶିଷ୍ଟା ଦୁର୍ବଳା ନାରୀକୁ ପତ୍ନୀ ରୂପରେ ବରଣ କଲା । କାରଣ ନାରୀ ଦୁର୍ବଳା ହେଲେ ଗୃହକାର୍ଯ୍ୟ ଆଦି ଓ ସନ୍ତାନ ପାଳନାଦି କରିବାରେ ନିୟୋଗ ହେବ । ଏହିପରି କ୍ରମେ ନାରୀମାନଙ୍କର ପ୍ରାଧାନ୍ୟ କମି ପୁରୁଷର ପ୍ରାଧାନ୍ୟ ସମାଜରେ ବଢ଼ିବାକୁ ଲାଗିଲା ।

ପୂର୍ବେ ଅତି ପ୍ରାଚୀନ କାଳରେ ନର ନାରୀ ଦଳ ବାନ୍ଧି ବାସ କରୁଥିଲେ । ସ୍ୱାମୀ-ସ୍ତ୍ରୀର ପ୍ରଚଳନ ହୋଇ ନଥିଲା । ଯେ କୌଣସି ସ୍ତ୍ରୀ ବା ଯେ କୌଣସି ପୁରୁଷ ମଧ୍ୟରେ ମୈଥୁନ କରିବାକୁ କେହି କୁଣ୍ଠାବୋଧ କରୁ ନ ଥିଲେ । ଏପରି କି ଭାଇ ଭଉଣୀ, ମା ପୁଅ, ବାପ ଝିଅ, ମାମୁଁ ଭଣିଜୀ, ଏ ସବୁର ବି ବାରଣ ରହୁ ନଥିଲା । ଯେତେବେଳେ ସ୍ତ୍ରୀ ସନ୍ତାନ ପ୍ରସବ କଲା କୌଣସି ପୁରୁଷ ତା'ର ଭରଣ ପୋଷଣର ଦାୟିତ୍ୱ ନେଲେ ନାହିଁ । କେଉଁ ପୁରୁଷର ବୀର୍ଯ୍ୟରୁ ସେ ସନ୍ତାନର ଉତ୍ପତ୍ତି ତାହା କେହି ଠିକ୍ କରି ପାରିଲେ ନାହିଁ । ଏଣୁ ସମାଜରେ ବିଶୃଙ୍ଖଳା ଭଳି ଅନର୍ଥର ସୃଷ୍ଟି ହେଲା । ସେହି ସମୟରେ ଏକ ନାରୀ ଏକ ପୁରୁଷ ନିକଟରେ ଆବଦ୍ଧ ରହିବାର ବ୍ୟବସ୍ଥା କରାଗଲା । ଏଥିରୁ ହିଁ ବିବାହ-ପଦ୍ଧତିର ସୃଷ୍ଟି ।





# କନ୍ୟାର ଦାବୀ

ସମାଜରେ ପୁରୁଷ ଯେତେବେଳେ ହେଲା ସର୍ବେସର୍ବା, ନାରୀ ତାହାର ହେଲା ଅଧୀନା । କ୍ରମେ ନର ନାରୀକୁ ନିଜର ଭୋଗ୍ୟ ସାମଗ୍ରୀ ଖେଳନା ବିଶେଷ ଭଳି ବ୍ୟବହାର କଲା । ଶତକଡ଼ା ୯୦ ପୁରୁଷ ନାରୀମାନଙ୍କୁ ଏହି ଦୃଷ୍ଟିରେ ଦେଖିବାକୁ ଲାଗିଲେ । ସନ୍ତାନ ଉତ୍ପାଦନ କରିବା ଓ ଗୃହକର୍ମ କରିବାର ଯନ୍ତ୍ର-ବିଶେଷ ରୂପେ ନାରୀ ବ୍ୟବହୃତ ହେଲା ।

ଆମ ଦେଶରେ ଅଧିକାଂଶ କୁମାରୀ କନ୍ୟା ଯେତେବେଳେ ବିବାହ କରନ୍ତି ସ୍ୱାମୀଠାରୁ ସେମାନେ କିପରି ବ୍ୟବହାର ପାଇବେ, ତାହା ଜାଣନ୍ତି ନାହିଁ । ସେମାନେ ଜାଣନ୍ତି ଝିଅ ଜନ୍ମହେଲା ମାନେ ବିବାହ ଓ ଗୃହ ସଂସାର କରିବାକୁ ବାଧ୍ୟ, ଏତିକି ସେମାନଙ୍କ ପକ୍ଷରେ ଯଥେଷ୍ଟ । ସେମାନଙ୍କର ବିଶ୍ୱାସଥାଏ 'ବାପ-ମା' ଯାହାଙ୍କୁ ମୋତେ ବିବାହ ଦେଇଛନ୍ତି ସେ ସ୍ୱାମୀ ମୋ'ର ସର୍ବ-ରୂପ-ଗୁଣ ସଂପନ୍ନ ।' ଏହି ସ୍ଥିର ବିଶ୍ୱାସ ସେମାନଙ୍କର ଥାଏ ।

କିନ୍ତୁ କାହା ଭାଗ୍ୟରେ କଣ ଘଟେ ତାହାର ସୂଚନା ମିଳିଲା ବେଳକୁ ହାତଗୋଡ଼ ନେଉଳକୁ ବୋହି ଯାଇଥାଏ । ଏଥିପାଇଁ କେତେ ପ୍ରକାର ବିବାହ ବିଚ୍ଛେଦ, ମାଲ୍‌ମକଦମା ମଧ୍ୟ ସୃଷ୍ଟି ହୋଇଥାଏ । ଏଣୁ ପ୍ରତ୍ୟେକ ଅଭିଭାବକମାନଙ୍କର ଉଚିତ ପାତ୍ର ନିର୍ବାଚନ ଭାର ପାତ୍ରୀ ଉପରେହିଁ ଦେବା ସମିଚୀନ କିମ୍ବା ପାତ୍ରର ସମସ୍ତ ପ୍ରକାର ଭଲମନ୍ଦ ତନ୍ନ ତନ୍ନ କରି ଦେଖି ପାତ୍ରୀର ମତ ନେଇ ବିବାହରେ ଅଗ୍ରସର ହେବା ଉଚିତ । ନଚେତ ଦାମ୍ପତ୍ୟ ପ୍ରେମ ବ୍ୟର୍ଥ ହୋଇ ଯିବାର ସମ୍ଭାବନା ।

—୦—





## କନ୍ୟାର କର୍ତ୍ତବ୍ୟ

ନବବିବାହିତା ନାରୀ, ସ୍ୱାମୀସୁ ଦାମ୍ପତ୍ୟସୁଖ ଭୋଗ କରିବାକୁ ହେଲେ ସେ ପ୍ରଥମରୁ ସାବଧାନ ହୋଇ ନିଜର କର୍ତ୍ତବ୍ୟ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବା ଦରକାର । ଏଥି ପ୍ରତି ସେ ଅସାବଧାନ ହେଲେ ନିଜ ପ୍ରତି ସେ ବିଶ୍ୱାସ ହରାଇ ବସେ । ଏଥିପାଇଁ ସେ ସାରାଜୀବନ ଦୁଃଖଭୋଗ କରେ ।

ଯୌନ-ସଂପର୍କ ଏକ ଲଜ୍ଜାକର ବିଷୟ । ଏଣେ ପୁଣି ନବ ବିବାହିତା-ନାରୀ ସେ ସବୁରେ ସମ୍ପୂର୍ଣ୍ଣ ଅନଭିଜ୍ଞା । ତା'ର ସ୍ୱାମୀଠାରୁ କପର ଯୌନ ଅନୁଭୂତି ପାଇବାକୁ ଆଶା କରେ ତାହା ସେ ଜାଣି ନ ଥାଏ । ସନ୍ଦେହ ଓ ଆଶଙ୍କା, ଏହି ଦୁଇଟିର ମଝିରେ ପଡ଼ି ସେ ମଧୁଶଯ୍ୟା ଘରକୁ ଗମନ କରେ ।

କିନ୍ତୁ ଶତକଡ଼ା ଅନେଶ୍ୱତ ପୁରୁଷ ବିବାହ ପୂର୍ବରୁ କାମସେବାରେ ସ୍ୱଜ୍ଞ ହୋଇଥାନ୍ତି । ଏଣୁ ପୁରୁଷର ଏଠାରେ ସାବଧାନତା ଲୋଡ଼ା ବେଶୀ । ତଥାପି ପ୍ରତ୍ୟେକ ନବ ବିବାହିତା ନାରୀର ମନେ ରଖିବା ଉଚିତ, ଯୌନ-ଜୀବନରେ ଯଦି ସ୍ୱାମୀ ସହିତ କୌଣସି ପ୍ରକାର ମତାନ୍ତର ଘଟେ, ତେବେ ତାହାର ସନ୍ଦେହ ମୋଚନାର୍ଥେ ସ୍ୱାମୀ ସହିତ ଖୋଲି ଖୋଲି ଭାବେ କଥାବାର୍ତ୍ତା ହେବା ଉଚିତ । ସହବାସରେ କେଉଁଠି ତୃପ୍ତି ବା ଅତୃପ୍ତିର କାରଣ ନିହିତ ଅଛି, ତା'ର ସୂକ୍ଷ୍ମ ତତ୍ତ୍ୱ ଗବେଷଣା କରି ସେହି ଅନୁସାରେ କାର୍ଯ୍ୟକାରୀ ହେଲେ ଦୁଃଖ ଆଉ ରହିବ ନାହିଁ ।

ଖୁବ୍ କମ ସ୍ତ୍ରୀଲୋକ ସଂସାରରେ ଅଛନ୍ତି ଯେଉଁମାନେ କି କାମ ଉତ୍ତେଜନା ବେଳେ ସଂଯମ ଓ ଧୀରତା ଅବଲମ୍ବନ କରି



ପାରନ୍ତି । କିନ୍ତୁ ଅଧିକାଂଶଙ୍କର ଏ ସମ୍ବନ୍ଧରେ କାଣ୍ଡଜ୍ଞାନ ନ ଥିବେ ନାହିଁ । ସେମାନେ ଯଦି ମନସ୍ତତ୍ତ୍ୱ ଓ ଶରୀରତତ୍ତ୍ୱ ସମ୍ବନ୍ଧରେ କିଛି ଜ୍ଞାନ ଅର୍ଜନ କରନ୍ତେ ତେବେ ସେମାନଙ୍କ ସକଳ ଦୁଃଖ ଦୂର ହୋଇଯାନ୍ତା ।

—୦—

## ନାରୀର ପରିଷ୍କାର ପରିଚ୍ଛନ୍ନତା ଓ ବସନ ଭୂଷଣ

ନିଜ ଶରୀରର ଓ ବସ୍ତ୍ରାଦିର ପରିଷ୍କାର ପରିଚ୍ଛନ୍ନତା ଉପରେ ନାରୀର ସୌଭାଗ୍ୟ ବୃଦ୍ଧି ନିର୍ଭର କରେ । ନିଜେ ଯେପରି ପରିଷ୍କାର ପରିଚ୍ଛନ୍ନତା ରହିବ, ନିଜର ସ୍ୱାମୀକୁ ମଧ୍ୟ ସେହିପରି ଭାବରେ ରହିବା ପାଇଁ ଦାବୀ କରିବା ସଙ୍ଗତ । ପୁରୁଷର ପ୍ରକୃତି ହେଲା ସୌନ୍ଦର୍ଯ୍ୟର ଅନୁସନ୍ଧାନ । ନିଜ ନାରୀର ବେଶ ପରିପାଟି ଇତ୍ୟାଦିରେ କିଛି ବିଶୃଙ୍ଖଳା ଦେଖିଲେ ତା'ର ସୌନ୍ଦର୍ଯ୍ୟପିପାସୀ ମନ ଅନ୍ୟ ରମଣୀ ଅଙ୍ଗକୁ ଧାଇଁଥାଏ । ଏହି କଥା ଯଦି ସ୍ତ୍ରୀଲୋକ ମାନେ ଠିକ୍ ଏ ଭାବନ୍ତେ ତେବେ ସ୍ୱାମୀମାନଙ୍କୁ ପାପ ପଥରୁ ଫେରାଇ ଆଣି ପାରନ୍ତେ ।

ବେଶୀ ମୂଲ୍ୟବାନ ବସନ ଓ ଚାକଚକ୍ୟମୟ ଭୂଷଣ ପରିଧାନ କଲେ ଯେ ସୌନ୍ଦର୍ଯ୍ୟର ବିକାଶ ହୁଏ, ଏ ଧାରଣା ଭୁଲ୍ । ସ୍ୱାମୀର ଆର୍ଥିକ ଅବସ୍ଥାକୁ ଲକ୍ଷ ରଖି, ଗୃହସ୍ଥାଶ୍ରମର ଅନ୍ୟାନ୍ୟ ବିଷୟକୁ ଭାବି ନିଜର ବସନ ଭୂଷଣ ଠିକ୍ କରିବା ଉଚିତ । ତାହା ଯେପରି ସବୁବେଳେ ପରିଷ୍କାର ରହେ, ମୁଣ୍ଡର କେଶଆଦି ଯେପରି ସୁବିନ୍ୟାସ ହୁଏ ଏଥି ପ୍ରତି ଦୃଷ୍ଟି ରଖିବା ଆବଶ୍ୟକ ।

ଦେଖିବାକୁ ମିଳେ ଅନେକ ସ୍ତ୍ରୀଲୋକ ନିଜ ଘରେ ଯା ଇଚ୍ଛା ତାହା ମଇଳା ଲୁଗାପଟା ପିନ୍ଧି ନିଜର ଶରୀର ପ୍ରତି ଦୃଷ୍ଟି

ନ ରଖି ଚଳନ୍ତି । କିନ୍ତୁ ବାହାରକୁ କୌଣସି ମେଳା ଯାତ୍ରା ବା ବନ୍ଧୁ ବାନ୍ଧବ ଗୃହକୁ ଯିବାକୁ ହେଲେ ନାନାପ୍ରକାର ବେଶ ଭୂଷା ହୁଅନ୍ତି । ଏହା ଦ୍ୱାରା ସ୍ୱାମୀର ଧାରଣା ହୁଏ ଯେ ଏହି ବେଶ ବିନ୍ୟାସର ମୂଳରେ ନିହିତ ଅଛି ଅନ୍ୟ ପୁରୁଷକୁ ଦେଖେଇ ହେବାର ବାସନା । ଏଣୁ ଘରେ ଓ ବାହାରେ ସବୁବେଳେ ସୁଭୂଷଣ ଓ ସୁବସନ ପରିଧାନ କରିବା କର୍ତ୍ତବ୍ୟ । ତେବେ ଆମର ଗୃହକର୍ମ ସବୁ କରିବାର ଯେତେବେଳେ ଗୃହଲକ୍ଷ୍ମୀମାନଙ୍କ ଉପରେ ନିର୍ଭର କରେ, ସେତେବେଳେ ବସନ ଭୂଷଣ ପ୍ରତି ଦୃଷ୍ଟି ନରହିବା ସ୍ୱାଭାବିକ । କିନ୍ତୁ ଗୃହକାର୍ଯ୍ୟ ପରେ ସନ୍ଧ୍ୟା ଆଗମନରେ ସୁଭୂଷଣ ଓ ସୁବସନ ପରିଧାନ କରି ନିଜର ସ୍ୱାମୀର ସମ୍ମୁଖୀନ ହେବା ଉଚିତ । ମିଷ୍ଟାଳାପ, ଶିଷ୍ଟାଚାର ହେଉଛି ନାରୀର ପ୍ରଧାନ ଭୂଷଣ । କୌଣସି କାରଣ ନେଇ ସ୍ୱାମୀର ମନ କ୍ରୁଦ୍ଧ ହୋଇଥିଲେ ତାହାର ପ୍ରତିଦାନ କ୍ରୋଧ ନୁହେଁ । ମିଷ୍ଟାଳାପ ଦ୍ୱାରା ହିଁ ସ୍ୱାମୀକୁ ବଶୀଭୂତ କରିବାକୁ ହୁଏ ।

ନାରୀମାନଙ୍କର ଏହିସବୁ ଅସାବଧାନତା ବଶରୁ ସ୍ୱାମୀମାନେ ବେଶ୍ୟାସକ୍ତ ହୋଇ ଅବାଟକୁ ଗୋଡ଼ ବଢ଼ାଇଥାନ୍ତି । ଏହାର ବହୁ ଆଦର୍ଶ ମଧ୍ୟ ଦେଖିବାକୁ ମିଳେ ।



## ନବବିବାହିତା ରମଣୀମାନଙ୍କର କ'ଣ ଭାବିବା ଉଚିତ

ତୁମ୍ଭମାନଙ୍କର ଭାବିବା ଉଚିତ ସେବା ପାଇଁ ତୁମ୍ଭମାନଙ୍କର ଜନ୍ମ । ଅନ୍ୟକୁ ସୁଖଦେବା ପାଇଁ ତୁମ୍ଭେମାନେ ସଂସାରକୁ ଆସିଅଛ । ବ୍ୟବହାରରେ, ଚାଲିଚଳନରେ, ହାବଭାବରେ, ତୁମ୍ଭମାନଙ୍କର



ଭଦ୍ରତା, ମଧୁରତା ଓ ନମ୍ରତା ଫୁଟି ଉଠିବା ଉଚିତ । କେବେଁ କାହା ଉପରେ ରାଗାନ୍ୱିତ ହେବନାହିଁ । ରାଗିଲେ ମୁଖର ସୌନ୍ଦର୍ଯ୍ୟ ନଷ୍ଟ ହୁଏ । ସ୍ୱାମୀର ଇଚ୍ଛାନୁରୂପ ଯୌନକ୍ରିୟା କଳାପରେ ବାଧା ଦେବ ନାହିଁ । ସ୍ୱାମୀର ଅଜ୍ଞାତରେ କୌଣସି ପର ପୁରୁଷ ସଙ୍ଗରେ ଚିଠିପତ୍ର ଆଦାନ ପ୍ରଦାନ କରିବ ନାହିଁ । ତାହା ଜାଣିଲେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଅବିଶ୍ୱାସର ସ୍ଥାନ ପାଏ ।

ନିଜର ବିବାହିତ ଜୀବନ ସୁଖମୟ କରିବାକୁ ହେଲେ କେଉଁ କେଉଁ ନିୟମ ପାଳନ କରିବାକୁ ହେବ ତାହା ନିମ୍ନରେ ଦିଆଗଲା ।

୧—ଅନ୍ୟକୁ ତୁଷ୍ଟ କରିବାହିଁ ହେଉଛି ରମଣୀର ନାରୀତ୍ୱ ବିକାଶର ମାପକାଠି । ଏଣୁ ସ୍ୱାମୀକୁ ସନ୍ତୁଷ୍ଟ କରିବା ତା'ର ପ୍ରଧାନ ଲକ୍ଷ୍ୟ ।

୨—ଲଜ୍ଜା ହେଉଛି ନାରୀର ପ୍ରଧାନ ଭୂଷଣ । ସେଥିରେ ତା'ର ସୌନ୍ଦର୍ଯ୍ୟର ବିକାଶ ହୁଏ । ଏଣୁ ବ୍ୟବହାରରେ, କଥାବାର୍ତ୍ତାରେ ଓ ବେଶଭୂଷଣରେ ସ୍ତ୍ରୀଲୋକର ଲଜ୍ଜାକୁ ଭୁଲିଯିବା ଅନୁଚିତ ।

୩—ସବୁବେଳେ ଉତ୍ତମ ବସ୍ତ୍ରାଳଙ୍କାରରେ ନିଜକୁ ସଜାଇବା ଦରକାର ଏବଂ ନିଜର ଯୌବନ ଯେ ଏ ପର୍ଯ୍ୟନ୍ତ ବିତି ଯାଇନାହିଁ, ଏହି ଭାବ ମନରେ ଆଣିଲେ ପ୍ରୌଢ଼ା ଅବସ୍ଥାରେ ମଧ୍ୟ ଯୁବତୀ-ସୁଲଭ ମୁଖ-ସୌନ୍ଦର୍ଯ୍ୟର ହ୍ରାସ ହୁଏ ନାହିଁ । କାରଣ ସୁନ୍ଦରତାର ଜନ୍ମ ସବୁକାଳରେ ଓ ସବୁସ୍ଥାନରେ ଘଟିବାରେ ଦେଖା ଯାଉଅଛି ।





୪—ନିଜର ସୌନ୍ଦର୍ଯ୍ୟକୁ ନିଜେ କେବେହେଁ ପ୍ରଶଂସା କରିବ ନାହିଁ । ତାହା ଅନ୍ୟ ଦ୍ୱାରା ପ୍ରଶଂସିତ ହୋଇଥାଏ ।

୫—ସବୁବେଳେ ଧୀର ଭାବରେ କଥା କହିବ କିନ୍ତୁ ସେଥିରେ ବାଗ୍ମିତା ପ୍ରକାଶ ପାଇବା ଆବଶ୍ୟକ ।

୬—ମନେରଖ କଷ୍ଟ ସହିଷ୍ଣୁ ନ ହେଲେ ଘରକରଣା ତୃପ୍ତି ପ୍ରାପ୍ତ ହୁଏ ନାହିଁ । ନିଷ୍କପଟ ହୃଦୟ ଓ ସାଧାସିଧା ନ ହୋଇ କୁଟିଳତାକୁ ଅନ୍ତରରେ ସ୍ଥାନ ଦେଲେ ସୌନ୍ଦର୍ଯ୍ୟର ହାନି ଘଟେ ।

୭—ସବୁବେଳେ ନିଜର ଗୃହଟିକୁ ପରିଷ୍କାର ପରିଚ୍ଛନ୍ନ ରଖି ଶାନ୍ତିର-ନିଳୟ କରି ଗଢ଼ିବା ଉଚିତ ।

୮—ନିଜର ସ୍ୱାମୀର ମନୋରଞ୍ଜନକାରୀ ଆମୋଦ ପ୍ରମୋଦ କରିବାରେ କୁଣ୍ଠାବୋଧ କରିବ ନାହିଁ ।

୯—ଯୌନବିଜ୍ଞାନରେ ନିଜେ କିଛି ଜ୍ଞାନ ଅର୍ଜନ କରିବା ଆବଶ୍ୟକ । ସେଥିପାଇଁ ନିଜ ମାତାଠାରୁ କିମ୍ବା ଅନ୍ୟ କୌଣସି ଅଭିଜ୍ଞ ସ୍ତ୍ରୀଲୋକଠାରୁ ଏ ବିଷୟରେ କିଛି ତଥ୍ୟ ଶିକ୍ଷା କରିବା ଉଚିତ । ନଚେତ୍ ଯୌନ-ଜୀବନ ପଣ୍ଡ ହେବାର ଆଶଙ୍କା ଥାଏ ।

୧୦—ବିବାହିତ ନବଦମ୍ପତିମାନଙ୍କର ବିବାହ ବିଜ୍ଞାନ, କାମବିଜ୍ଞାନ ପଢ଼ିବା ଉଚିତ । ସେଥିରେ ବିବାହିତ ଜୀବନ ସୁଖମୟ କରିବାର ଉପାୟମାନ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଅଛି ।

—୦—



## ପତ୍ନୀର କର୍ତ୍ତବ୍ୟ

ସୁଦକ୍ଷ ଗୃହିଣୀ ନିଜର ସମସ୍ତ ପ୍ରେମ ତା'ର ସ୍ୱାମୀର ନିକଟରେ ଅଜାଡ଼ି ଦିଏ । ସେ କଥାରେ କିମ୍ବା କାର୍ଯ୍ୟରେ ନିଜର ଦାମ୍ପତ୍ୟ-ଜୀବନର ବାର୍ତ୍ତା ସବୁ ଅନ୍ୟ ନିକଟରେ ପ୍ରକାଶ କରେ ନାହିଁ । ଏପରି କି, ନିଜର ଜନ୍ମଦାତ୍ରୀ ନିକଟରେ ମଧ୍ୟ ସ୍ୱାମୀ ବିରୁଦ୍ଧରେ କିଛି କହେ ନାହିଁ । ନିଜର ସ୍ୱାମୀକୁ ସବୁବେଳେ ନିର୍ଦ୍ଦୋଷ ବୋଲି ଭାବେ । ବ୍ୟବହାରରେ ନିଜର ସ୍ୱାମୀ ପ୍ରତି କୌଣସିଭାବ ପ୍ରକାଶ କରେ ନାହିଁ । ନିଜର ପାରିବାରିକ ଜୀବନରେ କିଛି ଅଶାନ୍ତି ଘଟିଲେ ତାହା ଖୋଲାଖୋଲି ଭାବେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଆଲୋ-ଚନା କରି ମିଳାମିଶା କରିନେଇ । ନଚେତ ଅଯଥା ସ୍ୱାମୀ ଓ ସ୍ତ୍ରୀ ମନରେ ଦୁଃଖ ଖାଇ ମନକଷ୍ଟ ହେତୁ ଶରୀରରେ ବ୍ୟାଧିର ସଂଗ୍ରହ ହୋଇଥାଏ । ସେହି ଅବସ୍ଥାରେ ଯଦି ସେ ସନ୍ତାନବତୀ ହୁଏ ତେବେ ତା'ର ପ୍ରଭାବ ସନ୍ତାନ ଉପରେ ପଡ଼େ ଏବଂ ସନ୍ତାନ ମଧ୍ୟ ସେ ଦୁଃଖ କଷ୍ଟରୁ ବାଦ ଯାଏ ନାହିଁ ।



## ଲକ୍ଷ୍ମୀ ସ୍ୱରୂପା ନାରୀ କିଏ ?

ମନ୍ତ୍ରେଷୁ ମନ୍ତ୍ରୀ କରଣେଷୁ ଦାସୀ,
ଭୋଜ୍ୟେଷୁ ମାତା ଶୟନେ ଚ ରମ୍ଭା,
କଳାସୁ ଶିଷ୍ୟା କ୍ଷମୟା ଧରିତ୍ରୀ,
ଷଡ଼୍ଲକ୍ଷଣା ଲକ୍ଷ୍ମଣ ସା ପ୍ରିୟା ମେ ।
ମନ୍ତ୍ରଣା ଦେବା ସମୟେ ହୁଏ ମନ୍ତ୍ରୀ ପରି,
ସେବା କରିବା ସମୟେ କରେ ଦାସୀଟିଏ ।





ପରହିଲା ବେଳେ ଯେହ୍ନ ମାତା ପରି ହୁଏ,
ଶଯ୍ୟାରେ ଯେ ଆଚରଣ କରେ ବେଶ୍ୟା ପ୍ରାୟେ ।
କଳାବିଦ୍ୟା ଚରିତ୍ରର ଶିକ୍ଷ୍ୟା ଆଚରଣ,
ବସୁମତୀ ପରି କ୍ଷମାଶୀଳା ହେବ ଜାଣ ।

ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଥିଲେ ଏହି ଷଡ଼୍‌ଗୁଣଯୁକ୍ତା ନାରୀ ହିଁ ଲକ୍ଷ୍ମୀସ୍ୱରୂପା ।



## ନାରୀ ସର୍ବଗ୍ରାସୀ ରାକ୍ଷସୀ ହୁଏ କେତେବେଳେ:

"ବହ୍ନେର୍ନଶାନ୍ତ ମୁପୟାତି କଦାପି କାଷ୍ଠୈଃ ।
ନାମ୍ଭୋନିଧିର୍ବିରମତିଃ ପ୍ରଚୁରୈଃ ପୟୋଭିଃ ॥
ନଯ୍ୟାନ୍ତକୋ ଜଗତି ଜନ୍ତୁଭିରେତି ତୋଷମ୍ ।
ବାମ ଦୃଶି ନୈବ ପୁରୁଷୈଃ ଖଲୁ ଯାତି ତୃପ୍ତିମ୍ ॥
ଯେତେ କାଠ ଜାଳିଲେ ହେଁ ଅଗ୍ନି ନୁହେଁ ଶାନ୍ତ ।
ଯେତେ ଜଳ ପଶିଲେ ସମୁଦ୍ର ନୁହେଁ ଭର୍ତ୍ତି ॥
ସଂସାରେ ସର୍ବ ଜୀବେ କରିଲେ ନିଧନ ।
ତଥାପି ସନ୍ତୁଷ୍ଟ ନୁହେ କୃତାନ୍ତର ମନ ॥
ସେହିପରି ଯେତେ ସେବା କଲେ, ନାରୀ ମନ ।
ସନ୍ତୋଷ କରି ନ ପାରେ ଏ ନର ଅଧମ ॥"

ଏହିପରି ଅବସ୍ଥାକ୍ରାନ୍ତ ନାରୀ ଅସିଲେ ସେ ହୁଏ ସର୍ବଗ୍ରାସୀ ରାକ୍ଷସୀ । ତା'ର ଅଙ୍ଗ ଦେଇଥିରେ ତୃପ୍ତି ହୁଏ ନାହିଁ ।





## ମିଥ୍ୟା ଗର୍ଭ ଓ ଅପୌରୁଷଜନନ

ସ୍ତ୍ରୀଲୋକମାନଙ୍କର ମିଥ୍ୟା ଗର୍ଭ ହେବାର ଶୁଣାଯାଏ। ଅର୍ଥାତ୍—ସେମାନଙ୍କର ଗର୍ଭ ଲକ୍ଷଣ ସବୁ ପ୍ରକାଶ ପାଏ ଓ ଋତୁସ୍ରାବ ବନ୍ଦ ହୋଇଯାଏ। ପୁଣି କେତେମାସ ପରେ ଗର୍ଭ ଲକ୍ଷଣ-ସବୁ ଉଭେଇ ଯାଇ ଋତୁସ୍ରାବ ଆରମ୍ଭ ହୁଏ। ଏପର କାହିଁକି ହୁଏ ତାହା କହିବା କଠିନ। ତଥାପି ଅନେକ ସମୟରେ ଦେଖିବାକୁ ମିଳେ ସନ୍ତାନହୀନା ରମଣୀମାନେ ସନ୍ତାନ ପାଇଁ ବଡ଼ ବ୍ୟାକୁଳ ଓ କ୍ରମାଗତ ଗର୍ଭ ବିଷୟରେ ଗଭୀର ଚିନ୍ତାକରି କାଳ୍ପନିକ ଗର୍ଭର ସୃଷ୍ଟିକରନ୍ତି। ଆବେଗଶୀଳା ଓ ଉତ୍କଣ୍ଠିତା ରମଣୀ ପ୍ରଧାନତଃ କାଳ୍ପନିକ ଗର୍ଭ ଦ୍ୱାରା ଆକ୍ରାନ୍ତ ହୁଏ। ପାଶ୍ଚାତ୍ୟ ଧାତ୍ରୀ-ବିଦ୍ୟାରେ ଏହାକୁ ଇମାଜିନାରି ପ୍ରେଗ୍ନାନ୍‌ସି ( Imaginary Pregnancy ) ବୋଲିଯାଏ।

ପ୍ରକୃତ ଗର୍ଭ ହୋଇଅଛି କି ନା, ତାହା ପରୀକ୍ଷା କରିବା ପାଇଁ ପୂର୍ବକାଳରେ ଅନେକ ପ୍ରକାର ଔଷଧର ପ୍ରୟୋଗ ଥିଲା। ତନ୍ମଧ୍ୟରୁ ଗୋଟିଏ ଉପାୟ ନିମ୍ନରେ ବର୍ଣ୍ଣନା କରାଯାଉଅଛି।

ଅଳ୍ପ ପରିମାଣରେ ଯବ ଓ ଗହମ ପୃଥକ ଭାବରେ କିଣା ପୁଟୁଳି କରିବ। ପ୍ରତିଦିନ ସକାଳେ ତଥାକଥିତ ଗର୍ଭିଣୀର ପ୍ରଥମ ପରିତ୍ୟକ୍ତ ପ୍ରସ୍ରାବ ମଧ୍ୟରେ ଏ ପୁଟୁଳି ଦୁଇଟି କେତେଘଣ୍ଟା ପାଇଁ ଭିଜାଇ ରଖିବାକୁ ହୁଏ। କିଛି ଦିନପରେ ପୁଟୁଳି ଦୁଇଟିରୁ ଗୋଟିଏ ଗହମ ଓ ଗୋଟିଏ ଯବର ଅଙ୍କୁର ଦେଖାଯାଏ ତେବେ ଗର୍ଭ କାଳ୍ପନିକ ନୁହେଁ। ଯଦି ଯବ ପ୍ରଥମେ ଅଙ୍କୁରିତ ହୁଏ, ତେବେ ପୁତ୍ର ସନ୍ତାନ, ଗହମ ପ୍ରଥମେ ଅଙ୍କୁରିତ ହେଲେ କନ୍ୟା ସନ୍ତାନ ଜନ୍ମିବାର ସୂଚନା ମିଳେ।





ଜାଲ୍‌ଜନକ ଗର୍ଭର ଗୋଟିଏ ଇତିହାସ-ପ୍ରସିଦ୍ଧ ଉଦାହରଣ ବୋଧହୁଏ ଆପଣମାନେ ଜାଣନ୍ତି ନାହିଁ । ପୂର୍ବେ ଇଂଲଣ୍ଡରେ କୁଇନ ମେରୀ ନାମରେ ଜଣେ ରାଣୀ ଥିଲେ । ତାଙ୍କର ସ୍ୱାମୀର ନାମ ଫିଲିପ୍ । ସ୍ୱାମୀ ସ୍ତ୍ରୀ ଉଭୟ ଗୋଟିଏ ପୁତ୍ର ସନ୍ତାନ ପାଇଁ ବଡ଼ ଉଦ୍‌ଗ୍ରୀବ ହୋଇଥିଲେ । ବିବାହ ପରେ ବହୁଦିନ ଗତହେଲେ ସୁଦ୍ଧା ତାଙ୍କର ସନ୍ତାନ ନ ହେବାରୁ ସେ ସବୁବେଳେ ଭଗବାନଙ୍କୁ ଜଣାଉଥାନ୍ତି । ହଠାତ୍ ଗୋଟିଏ ମାସରେ ତାଙ୍କର ଋତୁସ୍ରାବ ବନ୍ଦ ହୋଇଗଲା ଏବଂ କ୍ରମଶଃ ବକ୍ଷଦେଶ ସ୍ଫୀତ ଓ କୁଚର ବୃନ୍ତ ଚାରିପାଖରେ ବର୍ଣ୍ଣ ବିବର୍ଣ୍ଣ ଦେଖାଗଲା ଓ ଉଦର ବୃଦ୍ଧି ପାଇବାକୁ ଲାଗିଲା । ଏ ସବୁ ଗର୍ଭ ଲକ୍ଷଣ ଦେଖି ସମସ୍ତଙ୍କର ଆନନ୍ଦର ଆଉ ସୀମା ରହିଲା ନାହିଁ । ତା'ପରେ ରାଣୀ ରାଜକାର୍ଯ୍ୟ ପରିତ୍ୟାଗ କରି ପୂଜା ପ୍ରାର୍ଥନାରେ ରତ ହୋଇ ପବିତ୍ର ଜୀବନ ଯାପନ କରିବାକୁ ଲାଗିଲେ । ନୂତନ ଅତିଥି ଆଗମନର ଆଶା ଓ ଆଶଙ୍କା ମଧ୍ୟରେ ଚଢ଼ି ଭବିଷ୍ୟତ ବଂଶଧର ପାଇଁ ନିଜ ହସ୍ତରେ କନ୍ଥା, ଜାମା, ଟୋପି ପ୍ରଭୃତି ପ୍ରସ୍ତୁତ କରିବାକୁ ଲାଗିଲେ । ନବମମାସ ଶେଷରେ ଦିନେ ରାତିରେ ରାଣୀଙ୍କର ପ୍ରସବ ବେଦନା ହେଲା । ଶେଷ ରାତିରେ ଟାୱାର ଅଫ୍ ଲଣ୍ଡନରୁ ଆଗତପ୍ରାୟ ରାଜବଂଶଧରର ମଙ୍ଗଳ ସୂଚକ ଘଣ୍ଟାଧ୍ୱନି କରାହେଲା । ରାଜଦୂତ ପୋପ୍‌ଙ୍କ ନିକଟକୁ ଏ ସମ୍ବାଦ ଦେବାକୁ ଧାଇଁଲେ । ନବଜାତ ଶିଶୁର ସ୍ୱସ୍ତିବାଣୀ ଉଚ୍ଚାରଣ କରିବା ପାଇଁ ଆର୍ଚ୍ଚବିଶପ୍ ଅଫ୍ କାଣ୍ଟରବେରୀ ସେଣ୍ଟପଲ୍ ଗୀର୍ଜାରେ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ଶେଷରେ ସବୁ ଆକାଶ-କୁସୁମରେ ପରିଣତ ହେଲା । ରାଣୀ ପ୍ରସବ କଲେ ଏକ ପାହାଡ଼ିଆ ମୂଷା । ବନ୍ଧୁମାନେ "ହାୟ ହାୟ" କଲେ । ଶତ୍ରୁମାନେ ଛି ଛି କରି ଉପହାସ କରି-



ବାକୁ ଲଗିଲେ । ଘୃଣା ଓ ଲଜ୍ଜାରେ ଫିଲିପ୍ ରାଣୀଙ୍କୁ ପରିତ୍ୟାଗ କଲେ । ତା'ପରେ ରାଣୀ ମଧ୍ୟ ପାଗଳିନୀ ପ୍ରାୟ ହୋଇ ପ୍ରଜାପୀଡ଼ନ ଆଦି ଅସତ୍ କର୍ମରେ ପ୍ରବୃତ୍ତ ହେଲେ ।

ପୃଥିବୀର ସବୁ ଦେଶରେ ସବୁ ସମାଜରେ ନାନା ପ୍ରକାର ଲୋକ-ପ୍ରବାଦ ଓ ପୌରାଣିକ ରୂପକଥାର ଭୂରି ଭୂରି ଦୃଷ୍ଟାନ୍ତ ଦେଖିବାକୁ ମିଳେ । କୌଣସି ଋତୁମତୀ ସ୍ତ୍ରୀ ପୁରୁଷଙ୍କୁ ଖାଲିଦେଖି, ସ୍ପର୍ଶକରି, ପୁରୁଷର ପରିତ୍ୟକ୍ତ ଲୁଗାକୁ ପରିଧାନ କରି, ବା କେବଳ ପୁରୁଷର ଶଯ୍ୟାରେ ଶୟନ କରି ଗର୍ଭୋତ୍ପନ୍ନା ହୋଇଥାଏ । ପୁନଶ୍ଚ ପୁରୁଷ ବୀର୍ଯ୍ୟରେ ପଶୁଗର୍ଭରେ, କଳସି ମଧ୍ୟରେ ଓ ସ୍ତ୍ରୀର ନାକ କାନ ମଧ୍ୟରେ ପୁତ୍ର ଉତ୍ପାଦନ ହେବା କଥା, ଏହି ଅସମ୍ଭବ କାହାଣୀ ଶୁଣିବାକୁ ମିଳେ ।

ଏହା ଯେ କେବଳ ଭାରତବର୍ଷରେ ଶୁଣାଯାଏ ଏପରି ନୁହେଁ । ଇଂଲଣ୍ଡ, ଫ୍ରାନ୍ସ, ଇଟାଲି ପ୍ରଭୃତି ଦେଶମାନଙ୍କରେ ନିମ୍ନସ୍ତରର ଲୋକମାନଙ୍କ ମଧ୍ୟରେ ବିଶ୍ୱାସ ଥିଲା ଯେ, ପୁରୁଷର ଅଗମ ଚେୟାରରେ ବସି, ସ୍ନାନର ଜଳ ବ୍ୟବହାର କରି ବିଛଣାରେ ଶୋଇ, ସଦ୍ୟ ଋତୁମତୀ ନାରୀ ସନ୍ତାନବତୀ ହୋଇ ପାରନ୍ତି । ପୁଣି ବାଇବେଲରେ ଲେଖା ଅଛି—ସ୍ୱର୍ଗ ଲୋକରୁ ଏକ ଜ୍ୟୋତିଃ ପୁଞ୍ଜ ଓହ୍ଲାଇ ଆସି ଗର୍ଭରେ ପଶି ଯିଶୁମାତା ମେରୀଙ୍କୁ ଗର୍ଭବତୀ କରିଥିଲା । ବାଇବେଲର ଏହି ଉକ୍ତିକୁ ଆଜି ସୁଦ୍ଧା କୌଣସି ଧର୍ମଭୀରୁ କାଥଲିକ ହସି ଉଡ଼ାଇ ଦେଇପାରିବ ନାହିଁ ।

ସୂର୍ଯ୍ୟ, ବାୟୁ, ଯମ, ଇନ୍ଦ୍ର ଆସି ଶରି ତରୁଣୀ କୁନ୍ତୀଙ୍କୁ କେବଳ ଆଶୀର୍ବାଦ ବଳରେ ସନ୍ତାନବତୀ କରିଥିବା କଥାକୁ ବିଶ୍ୱାସ କରିବା

ବୈଜ୍ଞାନିକ ପକ୍ଷରେ ଅସମ୍ଭବ । ତାହା ଯଦି ସତ୍ୟ ହୋଇଥାନ୍ତା ତେବେ କୁମାରୀ ଅବସ୍ଥାରେ ଜାନକାଠେ କର୍ଣ୍ଣକୁ ଜନ୍ମ କରି ନଦୀ-ଜଳରେ ଭସାଇ ଦେବାର ପ୍ରୟୋଜନ ନ ଥିଲା ।

ବିଚିତ୍ରବୀର୍ଯ୍ୟ ଯେତେବେଳେ ଅପୁତ୍ରିକ ଅବସ୍ଥାରେ ମୃତ୍ୟୁ ମୁଖରେ ପଡ଼ିଲେ ସେତେବେଳେ ବଂଶରକ୍ଷା ପାଇଁ ସତ୍ୟବତୀ ବେଦ ବ୍ୟାସଙ୍କୁ ଡାକି ପଠାଇଥିଲେ । ମହର୍ଷି ବେଦବ୍ୟାସ ପୁତ୍ରେଷ୍ଟି ଯଜ୍ଞ ବଳରେ କିମ୍ବା ଆଶୀର୍ବାଦ ବଳରେ ନିଜର ଭ୍ରାତୃବଧୂମାନଙ୍କୁ ସନ୍ତାନବତୀ କରି ପାରିଥାନ୍ତେ । କିନ୍ତୁ ସେ ଅମ୍ବିକା ଓ ଅମ୍ବାଳିକା ସହବାସ କରି ଗର୍ଭଧାରିଣୀ କରିଥିଲେ । ଉଭୟ ଭ୍ରାତୃବଧୂଙ୍କୁ ରମଣ କରି ସୁଦ୍ଧା ତାଙ୍କର କାମ ପିପାସା ମେଣ୍ଟିଲା ନାହିଁ । କୌରବ ରାଜାନ୍ତପୁରରେ ଏକ ସୁନ୍ଦରୀ ଦାସୀ ପ୍ରତି ମଧ୍ୟ ତାଙ୍କର ଦୃଷ୍ଟି ପଡ଼ିଲା ତାକୁ ମଧ୍ୟ ରମଣକରି ଗର୍ଭବତୀ କରିଲେ । ଏହାର ଫଳ ସ୍ୱରୂପ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁରଙ୍କର ଜନ୍ମ ।



## ସ୍ତ୍ରୀ କେତେବେଳେ ଚରିତ୍ର ହରାଏ

ସ୍ତ୍ରୀ ଲୋକମାନଙ୍କର ରତିସୁଖ ଅତି ଧୀରେ ଧୀରେ ଜାଗେ ଓ ଅତି ଧୀରେ ଧୀରେ ତୃପ୍ତ ହୁଏ । କିନ୍ତୁ ଅଧିକାଂଶ ପୁରୁଷ ନିଜର ସ୍ତ୍ରୀ ସହିତ ତାଳ ସମାନ ରଖି ଚଳି ପାରନ୍ତି ନାହିଁ । ସେମାନଙ୍କର ରେତଃପାତ ଶୀଘ୍ର ହୋଇ ସ୍ତ୍ରୀକୁ ଅସୁଖୀ କରେ । ଏପରି ସ୍ଥଳେ ସ୍ୱାମୀ ଯଦି ନିୟମିତ ଭାବରେ ସ୍ତ୍ରୀକୁ ବସନ ଭୂଷଣ ଦେଇ ପ୍ରିୟ ବାକ୍ୟ, ମିଷ୍ଟ ବ୍ୟବହାର, ପ୍ରଚୁର ସୁହାଗ ସାହଚର୍ଯ୍ୟ ଚୁମ୍ବନ, ଆଲିଙ୍ଗନ, ପ୍ରଭୃତି ଉପଚାର ଦିଏ ତାହାହେଲେ ସ୍ତ୍ରୀର ସହବାସରେ ଚରମାନନ୍ଦ ନ ଘଟିଲେ ସୁଦ୍ଧା ତା'ର ମନରେ କଷ୍ଟ ହୁଏ ନାହିଁ ।



ତେବେ ଉଚ୍ଚଶିକ୍ଷିତା, ଅବେଗଶୀଳା ଓ ଅତ୍ୟନ୍ତ କାମାତୁରା ନାରୀର କଥା ସ୍ୱତନ୍ତ୍ର । ଆଉ ଗୋଟିଏ କଥା, ଯେଉଁ ନାରୀ ବିବାହିତ ଜୀବନର ପ୍ରଥମାବସ୍ଥାରେ କିଛିକାଳ ଯଥାରୀତି ଆବେଗମୟ ଭର୍ତ୍ତାର ଆଦ ସଙ୍ଗେ ନିୟମିତ ଭାବରେ ଗାଢ଼ ସଙ୍ଗମ ପାଇଥିବ ଏବଂ ଚରମାନନ୍ଦ ଲାଭ କରିଥିବ, ସେ ସ୍ତ୍ରୀ ଯଦି ପରେ ସ୍ୱାମୀଠାରୁ କିଛି ଅବହେଳା, ଅରୁଚି, ଅନାଗ୍ରହ ଓ ଶୀଘ୍ର ରେତଃସ୍ଖଳନ ଯୋଗୁ ସଙ୍ଗମରେ ଅତୃପ୍ତି ପାଏ, ତାହା ହେଲେ ସେ ସ୍ତ୍ରୀ ଲୋକ ଅସୁଖୀ ହୋଇପଡ଼େ ।

ସ୍ୱାମୀର ଏହି ସ୍ୱାର୍ଥପରତା ଓ ତ୍ରୁଟି ଯୋଗୁ ସେମାନଙ୍କ ପ୍ରେମର ଇଚ୍ଛା ପଡ଼ିଯାଏ । ସାମାନ୍ୟ କଥାରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଝଗଡ଼ା ଲାଗେ । ସାମାନ୍ୟ କାରଣରୁ ବା ଅକାରଣରୁ ସେ ନାରୀ କନ୍ଦାକଟା କରେ ଓ ସଂସାର ପ୍ରତି ବିରାଗ ଭାବ ଦେଖାଏ । ଅଥଚ ଏପରି କାହିଁକି ହୁଏ ସେ ତାହା ନିଜେ ମଧ୍ୟ ଜାଣି ପାରେ ନାହିଁ । ଏହି ଅବେଗଶୀଳା ବା ସ୍ୱାଧୀନ ସ୍ତ୍ରୀଲୋକମାନେ ଏପରି ଅବସ୍ଥାରେ ପଡ଼ିଲେ ସାମାନ୍ୟ ଉତ୍ତେଜନାରେ ଚରିତ୍ର ହରାଇ ବସନ୍ତି । ୪୦।୪୫ ବର୍ଷର ସ୍ତ୍ରୀଲୋକ ମଧ୍ୟ ଏ ଅବସ୍ଥାରେ ପଡ଼ି ପାପ-ପଥକୁ ଗୋଡ଼ ବଢ଼ାଇବାର ଦେଖାଯାଇଅଛି ।

—୦—

## କୁମାରୀମାନଙ୍କର ଗୀତ, ବାଦ୍ୟ ଓ ନୃତ୍ୟ ଶିକ୍ଷା ସମ୍ବନ୍ଧରେ ଅଭିମତ

ବର୍ତ୍ତମାନ ଦେଶରେ କନ୍ୟାମାନେ ଲେଖାପଢ଼ା ସହିତ ଗୀତ ବାଦ୍ୟ ଓ ନୃତ୍ୟ ଶିଖିବାର ଦେଖାଯାଉଅଛି । ଏସବୁ ପ୍ରଧାନତଃ ସ୍ୱାମୀର ମନରଞ୍ଜନ ପାଇଁ ଶିକ୍ଷା ଦିଆଯାଉଅଛି ।

ବିଦ୍ୟାଶିକ୍ଷା ସହିତ ଗୀତବାଦ୍ୟ ଶିଖିବା କୁମାରୀମାନଙ୍କର ଅଧିକ ପ୍ରୟୋଜନ, କିନ୍ତୁ ନୃତ୍ୟର ନୁହେଁ । ବିଶେଷତଃ ମଧ୍ୟବିତ୍ତ ବା ନିମ୍ନମଧ୍ୟବିତ୍ତ ଓ ଦରିଦ୍ର ଘରର ଝିଅମାନଙ୍କ ପାଇଁ ଏହା ଆଦୌ ଠିକ୍ ନୁହେଁ । ସନ୍ଧ୍ୟାପରେ କନ୍ୟାମାନଙ୍କୁ ଗୀତଶିଖିବାକୁ ବା ନୃତ୍ୟ ଶିଖିବାକୁ କୌଣସି ସଙ୍ଗୀତ ବିଦ୍ୟାଳୟରେ ଛାଡ଼ିବାକୁ କେହି ପସନ୍ଦ କରିବେ ନାହିଁ । ଏପରି ସଂଗୀତ ଓ ନୃତ୍ୟ ଶିକ୍ଷାକାଳେ ବାଳିକାମାନେ ସଙ୍ଗଦୋଷରୁ ଅପରିକର ଶିକ୍ଷାରେ ପରିପକ୍ୱତା ଲାଭକରି ନିଜର ଚରିତ୍ର ଦୂଷିତ କରିବାକୁ ବାଧ୍ୟ ହୁଅନ୍ତି ବୋଲି ବିଶ୍ୱାସ ।

ତଥାପି କେତେକ ନୃତ୍ୟ ସହିତ ବ୍ୟାୟାମର ସଂପର୍କ ଅଛି । ସେହିସବୁ ନୃତ୍ୟ ଦ୍ୱାରା ଶରୀରର ମାଂସପେଶି ସୁପରିଚାଳିତ ହୋଇ ଶରୀରର ସୌନ୍ଦର୍ଯ୍ୟ ବୃଦ୍ଧିପ୍ରାପ୍ତ ହୁଏ ।

—o—

## ସତୀ ଓ ଅସତୀ କର୍ତ୍ତବ୍ୟ

କୋକା ବୋଲି ଜଣେ ପଣ୍ଡିତ ଥିଲେ । ସେ ଯୌନ ବିଜ୍ଞାନ ସମ୍ବନ୍ଧରେ ଅନେକ ଲେଖା ଲେଖି କରିଯାଇଅଛନ୍ତି । ଏଣୁ ତାଙ୍କର ନାମାନୁସାରେ ରତିଶାସ୍ତ୍ରକୁ କୋକଶାସ୍ତ୍ର ବୋଲଯାଏ । ସ୍ତ୍ରୀ ସତୀ କି ଅସତୀ ଏହା କିପରି ଚିହ୍ନିବାକୁ ହେବ ତାହା ସେ ତାଙ୍କର ପତ୍ନୀକୁ ଏହିପରି ବୁଝାଇ ଅଛନ୍ତି—

ପଣ୍ଡିତଙ୍କୁ ସମ୍ବୋଧି ପୁଣି କହେ ରସବତୀ,<br>
ଶୁଣିଲି ଗୋ ପ୍ରାଣନାଥ ଅପୂର୍ବ ଭାରତୀ ।<br>
ଶୁଣିବାକୁ ମନ ମୋର ହେଉଛି ଅଥୟ,<br>
ସନ୍ଦେହ ଭଞ୍ଜନ କର ହୋଇଣ ସଦୟ ।



କିରୂପେ ପରୀକ୍ଷା ହୁଏ ସତୀ କି ଅସତୀ, ଏହି କଥା କୁହ ମୋତେ ଅହେ ମହାପତି । ହସିଣ କୋକା କୁହନ୍ତି ଶୁଣ ପ୍ରାଣଧନ, ଶୁଣ ଶୁଣ ବଚନକେ କରଇ ବର୍ଣ୍ଣନ । ମରାଳ ଗତିର ସମ ଯେ ନାରୀର ଗତି, ନୟନ ସୁନ୍ଦର ପୁଣି ପ୍ରଶସ୍ତ ଯେ ଅତି । ଯେବେଳେ ରମଣୀ କରେ କୁତ୍ରାପି ଗମନ, ପୁନଃ ପୁନଃ ବାମଦିଗେ ଫେରଏ ନୟନ । ସେହି ନାରୀ ସତୀ ଅତି ଜାଣିବ ଅନ୍ତରେ, ପତିପ୍ରିୟା ହୁଏ ସେହି ଜଗତ ମଧ୍ୟରେ । ତାହାର ସୁଖ୍ୟାତି କରେ ଜଗତର ଜନ, ଶାସ୍ତ୍ରର ବଚନ ମିଥ୍ୟା ନୁହେ କଦାଚନ । ତିଳକ ଯଦ୍ୟପି ଥାଏ ବାମ ଉରୁଦେଶେ, ଅଥବା ତିଳକ ଥାଏ ବାମ ଚକ୍ଷୁ ପାଶେ । ପତିରତା ସତୀନାରୀ ସେ ରମଣୀ ହୁଏ, ସତ୍ୟ ସତ୍ୟ ଏହି କଥା ନାହିଁଟି ସଂଶୟେ । ଯାହାର କଣ୍ଠର ସ୍ୱର ଅତି ମନୋହର, ସତୀଶିରୋମଣୀ ସେହି ଜଗତ ମଧ୍ୟର । ବିବାହ ସମ୍ବନ୍ଧ ହୁଏ ଯେ କାଳେ ଘଟନ, କନ୍ୟା ଦର୍ଶନାର୍ଥେ ଯଦି କରିବ ଗମନ । ସେହି କାଳେ ମେଘଶବ୍ଦ ଯଦି କେବେ ହୁଏ, ସେ କନ୍ୟା କୁଳଟା ହେବ ଜାଣିବ ନିଶ୍ଚୟେ । ବର୍ଷାକାଳେ ଯଦି ହୁଏ ଜଳଦ ଗର୍ଜନ, ତହିଁ ନାହି ଦୋଷ କିଛି ନ ଧରିବ ମନ । ଅସମୟେ ମେଘଧ୍ୱନି ଯଦି କେବେ ହୁଏ, ତହିଁରେହିଁ ଦୋଷ ହୁଏ ଜାଣିବ ନିଶ୍ଚୟେ । ଉତ୍ତର ଅଷାଢ଼ା ଶତଭିଷା ନକ୍ଷତ୍ରରେ, ଯାହାର ଜନମ ହୁଏ ଅବନୀ ମଧ୍ୟରେ । ସତୀ ପତି-ପରାୟଣା ସେହି ନାରୀ ହୁଏ, ସତ୍ୟ ସତ୍ୟ ଏହି କଥା କେବେହେଁ ମିଥ୍ୟା ନୁହେ । ତାହାର ଅଦର୍ଶେ ଯେତେ ମାନବ ଘରଣୀ, ପାତିବ୍ରତ୍ୟ ଶିକ୍ଷାକରେ ଶାସ୍ତ୍ରେ ଏହା ଜାଣି । ବର ପାତ୍ରୀ ଉଭୟର ନାମର ମଧ୍ୟରେ, ଯେତୋଟି ଅକ୍ଷର ଥାଏ ନେବ ତା' ସାଦରେ ଦୁହିଁଙ୍କ ବୟସ କେତେ କାଣିଣ ତତ୍‌କ୍ଷଣି, ତା'ର ସଂଖ୍ୟା





ଦ୍ୱିବ ସଂଖ୍ୟା କରିବ ଯୋଜନ । ଏକତ୍ର କରିଣ ଯେତେ ସମଷ୍ଟି ହୋଇବ, ତ୍ରିର ଦ୍ୱାରା ତାହାକୁ ଯେ ଗୁଣନ କରିବ । ଗୁଣଫଳ ଯେତେ ହେବ କରିଣ ଦର୍ଶନ, ତହିଁ ମଧ୍ୟୁ ତିନି ଫେଡ଼ି ଦିଅ ହେ ବହନ । ବାକୀ ସଂଖ୍ୟା ଯା' ରହିବ ରଖି ଏକ ସ୍ଥାନ, ଉଭୟର ନାମ ସଂଖ୍ୟା ତହିଁରେ ଯୋଜନ । ସମଷ୍ଟି ହୋଇବ ଯାହା କରି ଦରଶନ, ତିନି ଦ୍ୱାରା ତାକୁ ପୁଣି କରିବ ହରଣ । ହରଣି କରିଣ ଯଦି ଏକ ବାକୀ ରହେ, ସତୀ ହେବ ସେହି ନାରୀ ଜାଣିବ ନିଶ୍ଚୟେ । ଦୁଇ ଯଦି ରହେ ବାକୀ ତାହେଲେ ଜାଣିବ, ସତ୍ୟ ସତ୍ୟ ସେହି ନାରୀ କୁଳଟା ହୋଇବ । ତାହାକୁ ଯଦ୍ୟପି ପତି କରିବ ଗ୍ରହଣ, ମହାଦୁଃଖୀ ସେହି ଜନ ଯାପିବ ଜୀବନ । ସେ ନାରୀ ଯଦ୍ୟପି ରହେ ପତିର ଗୃହରେ, ଗୋପନେ ରମିବ ସେହି ପର ପୁରୁଷରେ । ଅଙ୍କ କଷି ବାକୀ ଯଦି କିଛି ନାହିଁ ରହେ, ସତୀ ହେବ ସେହି ନାରୀ ଜାଣିବ ନିଶ୍ଚୟେ । ଶାସ୍ତ୍ରର ବଚନ ମିଥ୍ୟା ନ ଭାବ ଅନ୍ତରେ, ନିଗୂଢ଼ ବଚନ ଏହା କହିଲିଁ ତୋରେ । ଏହିସବୁ ବିବେଚନା କରି ନରଗଣ, ଉଚିତ ରମଣୀ ପାଣି କରିବ ଗ୍ରହଣ । ଯେବେଳେ ଗମନ କରେ ରୂପବତୀ ଧନୀ, ପଦଭରେ ଧନ ଧନ କମ୍ପଇ ଧରଣୀ । ଅସତୀ ସେ ନାରୀ ହୁଏ ନାହିଁଟି ସଂଶୟେ, ଶାସ୍ତ୍ରର ବଚନ କେବେ ମିଥ୍ୟା ନାହିଁ ହୁଏ । ବିବାହ ଅଗରୁ ଏହା ଜାଣି ପାରିଥିଲେ, ତାକୁ କରିବ ତ୍ୟାଗ ଶାସ୍ତ୍ର ଏହା ବୋଲେ । ଅଜାନୁ 'ଧବଳା ଯଦି ହୁଏ କେଉଁ ନାରୀ, ଧବଳର ଚିହ୍ନ କିଛି ଥାଏ ଦେହୋପରି । ଅସତୀ ସେ ନାରୀ ହୁଏ ଶାସ୍ତ୍ରର ବଚନ, ଘୃଣା ନ ମାଡ଼ିବ ତାର ଅଛୁ ନିରୂପଣ । ବିବାହ ଅଗରୁ ଯଦି କନ୍ୟା ଦେଖିବାରେ, କେହି ବରକର୍ତ୍ତା ଯାଏ ହରଷ ଅନ୍ତରେ । ଗୃଧ୍ର ଦାଗ ଚମ୍ପା ଶିଳ୍ପ ଯଦ୍ୟପି



ତତ୍କ୍ଷଣ, ଶୂନ୍ୟରୁ ଅଧୋଭାଗରେ ହୁଅଇ ପତନ । ଜାଣିବ ସେ କନ୍ୟା ହେବ ଅସତୀ ନିଶ୍ଚୟେ, ବୁଝି କର ବାଗ୍ ଦଅ କର ମନେ ଲୟେ । ଯଥାଯଥ ତାହା ମୁନି କରନ୍ତି ବର୍ଣ୍ଣନ, ଏହୁ ସବୁ ବିବେଚନା କରିବ ସୁଜନ ।”

ଏହି ଉପର ଲିଖିତ ପଦ୍ୟରେ ଯେଉଁ ଅଙ୍କ କଷିବାର ପ୍ରଣାଳୀ ଦିଆ ଯାଇ ଅଛି ତାହା ନିମ୍ନରେ ବୁଝାଇ ଦିଆଗଲା । ଯଥା—

ମନେକର ବରର ନାମ ସିଦ୍ଧେଶ୍ୱର ଏବଂ କନ୍ୟାର ନାମ ନୟନତାରା ।

| | |
|---|---|
| ବରନାମର ଅକ୍ଷର ସଂଖ୍ୟା— | ୪ |
| କନ୍ୟାନାମର ଅକ୍ଷର ସଂଖ୍ୟା | ୫ |
| ଏକତ୍ର କଲେ ସମସ୍ତ | ୯ |
| ବରର ବୟସ | ୧୭ |
| କନ୍ୟାର ବୟସ | ୯ |
| ମୋଟ | ୩୫ |
| ୪ ଦ୍ୱାରା ଗୁଣିଲେ | ୪ |
| ଗୁଣ ଫଳ | ୧୪୦ |
| ବାଦ | — ୩ |
| ବାକି | ୧୩୭ |
| ପୁନର୍ବସୁ ଉଭୟଙ୍କର ନାମର ସଂଖ୍ୟା ଯୋଗକର— | ୯ |
| ଯୋଗଫଳ | ୧୪୬ |

ଏହି ସଂଖ୍ୟାକୁ ୩ ଦ୍ୱାରା ଭାଗକଲେ ୨ ଭାଗଶେଷ ରହିବ ।
ଯଥା :—

୩ ) ୧୪୨ ( ୪୮
୧୨
———
୨୨
୨୦
———
ବାକୀ ୨

ସୁତରାଂ ଏଥିରୁ ଜଣା ଯାଉଛି ଯେ ଯିଏ ଶ୍ୱଶୁର ପଦ ନପୁଂସକତାରେ ବିବାହ କରେ ତେବେ ତା'ର ଜୀବନ ଦୁଃଖମୟ ହେବ ଏବଂ ନପୁଂସକତାର ନିଜର ପତିକୁ ତ୍ୟାଗ କରି ଉପପତି କୋଳରେ ଆଶ୍ରୟ ଗ୍ରହଣ କରିବ । ତେଣୁ ସେପରି ରମଣୀ ଯେତେ ସୁନ୍ଦରୀ ବା ଉଚ୍ଚବଂଶସମ୍ଭୂତା ହେଲେ ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ ।



## ତଳଚନ୍ଦ୍ରାଦ ଦୃଷ୍ଟେ ସତୀ ଅସତୀ ନିର୍ଣ୍ଣୟ ଓ ସୁଖ ଦୁଃଖ ଭୋଗାଦିର ଫଳାଫଳ ।

### ( ଭୋଜ ପଣ୍ଡିତଙ୍କ ମତାନୁସାରେ )

ପ୍ରଫୁଲ୍ଲିତ ମୁଖପଦ୍ମେ କରି ନିରୀକ୍ଷଣ, ମଧୁର ସମ୍ଭାଷେ ଭୋଜ କହନ୍ତି ବଚନ । 'ଶୁଣ ଧନ ମନଦେଇ କହେ ଯାହା ଭଲ, ଶୁଣିଲେ ଅନ୍ତର ତୋର ହେବ କୁତୂହଳ । ତଳଚନ୍ଦ୍ର ଆଦି ଯଦି ନାରୀ ଅଙ୍ଗେ ରହେ, ସତୀ ବା ଅସତୀ ତାହା ହୋଇବ ନିର୍ଣ୍ଣୟେ । ଏହି ଜ୍ଞାନ ଯଦି ଥାଏ ହୃଦୟ ମଧ୍ୟରେ, ଦୃଷ୍ଟେ ମାତ୍ରେ ନାରୀମନ ଜାଣି



ଯାଇପାରେ । ଶୁଭ୍ରବର୍ଣ୍ଣ ବିନ୍ଦୁ ଯଦି ନଖେ ଦେଖାଯାଏ, ସେ ନାରୀ କୁଳଟା ହୁଏ ଜାଣିବ ନିଶ୍ଚୟ । ଭ୍ରୂଯୁଗର ପ୍ରାନ୍ତଭାଗେ ତିଳଚିହ୍ନ ରହିଲେ ଅଥବା ଯଦ୍ୟପି ଥାଏ ଲଲାଟ ଉପରେ । ପତିବ୍ରତା ସେହି ନାରୀ ଜାଣିବ ନିଶ୍ଚୟେ, ରାଜାର ପ୍ରେୟସୀ ହୁଏ ଶାସ୍ତ୍ର ଏହା କହେ । ବାମଗଣ୍ଡେ ରକ୍ତବର୍ଣ୍ଣ ତିଳଚିହ୍ନ ରହିଲେ, ତାହାର ହୃଦୟ ଥାଏ ସତୀତ୍ୱ ଉପରେ । ବକ୍ଷସ୍ଥଳେ ତିଳ ଚିହ୍ନ ଯଦି ଦେଖାଯାଏ, ସେହି ନାରୀ ପତି ପ୍ରାଣା ଜାଣ ନିଶ୍ଚେ ହୁଏ । ଲୋହିତ ତିଳକ ଯଦି ନାସାଗ୍ରେ ରହେ ସେହି ନାରୀ ସତୀସାଧ୍ୱୀ ରାଜପତ୍ନୀ ହୁଏ । କୃଷ୍ଣବର୍ଣ୍ଣ ହେଲେ କିନ୍ତୁ ଦୁଃଖଫଳ ଫଳେ, ଅଚିରେ ବିଧବା ହୁଏ ଜାଣିବ ଭୂତଳେ । ତାହାପରେ ଉପପତି କରେ ସେହି ନାରୀ,ଅନ୍ତିମେ ନରକ ମଧ୍ୟେ ବସତି ତାହାର । ଦକ୍ଷିଣ ନାସାରେ ଯଦି ତିଳ ଦୃଷ୍ଟି ହୁଏ, କୁଳଟା ସେ ନାରୀ ହୁଏ ନାହିଁ ସଂଶୟ । କିନ୍ତୁ ସେହି ତିଳ ଯଦି ରକ୍ତବର୍ଣ୍ଣ ଧରେ ତେବେ ଏହି ଫଳ ହୁଏ ଶାସ୍ତ୍ରର ବିଚାରେ । ଗୁହ୍ୟର ଦକ୍ଷିଣ ଭାଗେ ଯଦି ତିଳଥାଇ, ନାହିଁ ସଂଶୟ ସେ ଟି ରାଜପତ୍ନୀ ହୋଇ । ଭିତରେ ଭିତରେ କିନ୍ତୁ ବ୍ୟଭିଚାରୀ ହେବ, ନିକୃଷ୍ଟ ପୁରୁଷେ ମନପ୍ରାଣ ଢାଳି ଦେବ । କଣ୍ଠ ଦେଶେ ତିଳଚିହ୍ନ ଯଦି ଦେଖାଯାଏ, ପତିବ୍ରତା ହେବ ସେହି ଜାଣିବ ନିଶ୍ଚୟେ ପାର୍ଶ୍ୱଦେଶେ ତିଳଚିହ୍ନ ଯଦି ହୁଏ ଦେଖା, ସେନାରୀ ନିଶ୍ଚୟ ପତିପରାୟଣା ଲେଖା । ତିଳଚିହ୍ନ ଯଦି ଥାଏ ବାମକୁକ୍ଷି ଦେଶେ, ରକ୍ତବର୍ଣ୍ଣ ହୁଏ ତାହା ଅଶେଷ ବିଶେଷେ । ପତିର ଉପରେ ଥାଏ ସେ ନାରୀର ମନ, ପରମ ସୁଖରେ କରେ ଜୀବନ ଯାପନ । ବାମ-ଗଣ୍ଡେ ଅଧରର ବାମ ପ୍ରଦେଶରେ, ବାମ ହସ୍ତେ ବାମକର୍ଣ୍ଣେ ଗଣ୍ଡର ବାମରେ । ଏ କେତୋଟି ସ୍ଥାନେ ଯଦି ଜାଇଚିହ୍ନ ରହେ, ଅକାରେ





ଛଦଳୀ ସମ ଯଦି କୃଷ୍ଣ ହୁଏ । ବ୍ୟଭିଚାରେ ରତ ହେବ ସେହି ସେ ରମଣୀ, କେବେ ନୁହେ ମିଥ୍ୟା ଏହା ଶାସ୍ତ୍ରରେ ଯେ ଭଣି । କଣ୍ଠଦେଶେ ନୀଳବର୍ଣ୍ଣ ଯଦି ତିଳ ରହେ, ଅଚିରେ ବିଧବା ହୁଏ ସେ ନାରୀ ନିଶ୍ଚୟେ । ଅବଶେଷେ ପର ପ୍ରେମେ ମଜେ ତାର ମନ, ସ୍ୱର୍ଗ ପଥେ ତାର ହୁଏ କଣ୍ଟକ ସ୍ଥାପନ । ମେରୁଦଣ୍ଡ ଦକ୍ଷିଣରେ ଯଦି ତିଳ ରହେ, ପତିରତା ହୁଏ ସେହି ନାରୀ ଏ ଶାସ୍ତ୍ରେ । ଯୋନିର ଉପରେ ଯଦି ତିଳ ଦେଖା ଯାଏ, ପର ପୁରୁଷ ଗାମିନୀ ସେହି ନାରୀ ହୁଏ । ଜପପତି ଔରସରେ ବହୁପୁତ୍ର ଲଭେ, ଦାରୁଣ ଯାତନା ପାଏ ବନ୍ଧୁ ଏହି ଭବେ । ଗୁହ୍ୟ ଠାରୁ କଟି ଦେଶ ପ୍ରଦେଶ ସ୍ଥାନରେ, ସପ୍ତତିଳ ଯଦି ଥାଏ ଏକାଦିକ୍ରମରେ । ମହା ପାପିୟସୀ ହୁଏ ସେହିନାରୀ ଜାଣ, ବହୁ ପୁରୁଷ ଗାମିନୀ ଅଟଇ ପ୍ରମାଣ । କଣ୍ଠଦେଶେ 'ଦୋ'ଟି ତିଳ ଯଦିଧରେ ନାରୀ, ପର ପୁରୁଷ ଗମନ ସଦା ସେ ଅଚରି । ଯଦ୍ୟପି ତିଳକ ଥାଏ ସୀମନ୍ତ ପ୍ରଦେଶେ, ସେ ନାରୀ ପତିକୁ ପୂଜେ ଦେବତା ସଦୃଶେ । କିନ୍ତୁ ଜାଇଚିହ୍ନ ଯଦି ସେଠି ଦେଖାଯାଏ, ପର ପୁରୁଷରେ ସେହି ମଜିବ ନିଶ୍ଚୟେ । ଶିରଦେଶେ ବାମାବର୍ତ୍ତେ ତିନି ତିଳଥିଲେ, କୁଲକ୍ଷଣା ସେହି ନାରୀ ଶାସ୍ତ୍ର ଏହା ବୋଲେ । ଦେବର ଘାତନୀ ହୁଏ ଅଗ୍ରେ ସେହି ଧନୀ, ପତିକୁ ନାଶ କରଇ ପରେ ଭୁଜଙ୍ଗିନୀ । ପରକୁ ସମର୍ପି ଦିଏ ଜୀବନ ଯୌବନ, ଯେ ଫଳ ଫଳଇ ତାହା କର ବିବେଚନ । ଯଦି ଏକତିଳ ନାରୀ କଟି ଦେଶେ ଥାଏ, ସେହି ତିଳ କୃଷ୍ଣବର୍ଣ୍ଣ ଦେଖିବାକୁ ହୁଏ । ତିଳମୁଖେ ରକ୍ତବିନ୍ଦୁ ହେଲେ ଦରଶନ, କଳଙ୍କା ସେ ନାରୀ ହୁଏ ଶାସ୍ତ୍ରର ବଚନ । ନାଭିରେ ଯଦ୍ୟପି ଥାଏ ଜାଇ ତିଳଗୋଟି, ପତିପରାୟଣା ସେହି ନାରୀ ହୋଇବଟି । ଏକ



ହାତେ ଉଲଦେଶେ ଉଲ ଶବ୍ଦ ହେଲେ, ଅନ୍ୟଙ୍କର ଉଠେ ଯଦି ମୁଦ୍ରା ଶବ୍ଦ ଧରେ । କୁଳଟା ସେ ନାରୀ ହୁଏ ନରକେ ପତନ ସେହି ନାରୀ ଅଟଇଟି ଦୁଃଖର କାରଣ ।

---

## ଅକାଳ ମୃତ୍ୟୁ ଓ ବକଳାଙ୍ଗ ପ୍ରଭୃତର କାରଣ

( ବୋବା ପଣ୍ଡିତଙ୍କ ମତ )

ପୌର୍ଣ୍ଣମାସି ଅମାବାସ୍ୟା ଏହି ଦୁଇଦିନ, ରସାଧିକ୍ୟ ହୁଏ ଏହା କହନ୍ତି ପ୍ରବୀଣ । ଏହି ଦୁଇ ତିଥି ଯୋଗେ ମାନବ ଶରୀରେ, ରସାଧିକ୍ୟ ହୁଏ ବୈଦ୍ୟ ଶାସ୍ତ୍ରର ବଗୃତରେ । ନ କରିବ ଏ ତିଥିରେ ରମଣୀ ଗମନ, ପୁନଃ ପୁନଃ ଶାସ୍ତ୍ର ଏହା କରେ ନିବାରଣ । ଏହି ଦୁଇଦିନ ଯଦି ନାରୀକୁ ବିହରେ, ସେଥିରେ ଯଦ୍ୟପି ନାରୀ ଗର୍ଭ ଶବ୍ଦ ଧରେ । ସେ ଗର୍ଭେ ଜନମେ ଯଦି କୌଣସି ସନ୍ତାନ, ନିଶ୍ଚୟ ଦୁର୍ବଳ ହେବ ଶାସ୍ତ୍ରର ବିଧାନ । ଅଥବା ବିକୃତ ଅଙ୍ଗ ହେବ ସେ ନିଶ୍ଚୟେ, ଶାସ୍ତ୍ରର ବଚନ ମିଥ୍ୟା କେବେ ନାହିଁ ହୁଏ । ଅଧିକନ୍ତୁ ଅଳ୍ପ ଆୟୁ ହୋଇବ ତାହାରେ । ମୃତ୍ୟୁ ନିଶ୍ଚୟ ଘଟିବ ତାହାର ଅଚିରେ । ଅକାଳେ ଶିଶୁର ମୃତ୍ୟୁ ଏହାର କାରଣ, ଏହି ହେତୁ ବିକଳାଙ୍ଗ ହୁଏ ଦରଶନ ।







## ଷଷ୍ଠ ଅଧିକରଣ

# ବିପରୀତ ରତି ବା ପୁରୁଷାୟିତ ରମଣ

ମହର୍ଷୀ ବାତ୍ସ୍ୟାୟନ ତାଙ୍କ ରଚିତ କାମସୂତ୍ରରେ ସାମ୍ପ୍ରୟୋଗିକ ଅଧିକକରଣରେ ନାରୀ ପୁରୁଷର ରତିକ୍ରିୟା ସମ୍ବନ୍ଧେ ବିଶଦ ଭାବରେ ଆଲୋଚନା କରି ଅଛନ୍ତି । ତହିଁ ମଧ୍ୟରୁ ବିପରୀତ ବିହାର ଏକ ପ୍ରକାର ସମ୍ପ୍ରୟୋଗ ଅଟେ ।

ବିରହ ବିଜ୍ଞାନର ପୃ: ୧୧୧ ଷ୍ଠାରେ ବିପରୀତ ବିହାର ସମ୍ବନ୍ଧରେ କେତେକ ବିଷୟ ଦିଆଯାଇ ଅଛି । ସେଥିରେ କେବଳ ଏହାର ସୁଫଳ ଓ କୁଫଳ ମାତ୍ର ବର୍ଣ୍ଣନା କରାଯାଇଅଛି । ଏଠାରେ ତା'ର ପ୍ରଣାଳୀ ସମ୍ବନ୍ଧରେ କେତେକ ବିସ୍ତୃତ ବିବରଣି ଦିଆଗଲା । ବିପରୀତ ରତି ସମ୍ବନ୍ଧରେ ଗୋଟିଏ ରସପୂର୍ଣ୍ଣ ଶ୍ଳୋକ ନିମ୍ନରେ ବର୍ଣ୍ଣନା କରା ଯାଉଅଛି ।

ଚନ୍ଦ୍ରାକାନ୍ତାଗାରେ ପରିମଳ ମିଳତ୍ପୁଷ୍ପ ଶୟନେ,
ଶୟାନଃ ଶ୍ୟାମାୟାଃ କୁଚଯୁଗ ମଧ୍ୟଂ ବକ୍ଷସି ବହନ୍ ।
ଅୟେ ସ୍ନିଗ୍ଧେ ମୁଗ୍ଧେ ଚପଳନୟନେ ଚନ୍ଦ୍ରବଦନେ,
ପ୍ରସୀଦେତ୍ୟାଳାପୈ ଶନୈର୍ନିମିଷମିବ ନେଷ୍ୟାମି ଦିବସାନ୍ ।

ଶୟନ କରଣ ସେହି ସୁରମ୍ୟ ଭବନେ
ସୁବାସିତ ମନୋହର କୁସୁମ ଶୟନେ ।



ରମ୍ୟକାନ୍ତା କୁଚ ଯୁଗ ଧରି ମୁଁ ବକ୍ଷରେ
ମହାନନ୍ଦେ ଏହା କହୁ ବିଧ୍ୱାଣି କାନ୍ତାରେ ।
ଅଗୋ ମୋର ବିଧୁମୁଖି ! ତରଳ ନୟନ,
ସ୍ନିଗ୍ଧମୂର୍ତ୍ତି ମୁଗ୍ଧା ତୁହି ଯମ ଏ ଅଧୀନେ * ।
ଆହା ମୁହିଁ କେବେ ପୁଣି ରଜନୀ ଦିବସ,
ବଞ୍ଚିବି ଯାପନ କରି ନିମିଷ ସଦୃଶ ।

——

## ପୁରୁଷାୟିତ ରମଣର କାରଣ

ସମ୍ଭୋଗ କାଳରେ ସତତ ରତି କ୍ରିୟାକରି ନାୟକ କ୍ଲାନ୍ତ ହୋଇଗଲେ ତାହାର ସହାୟତା କରିବା ପାଇଁ ଏବଂ ନିଜର କାମ ଲାଳସାରେ ଅତୃପ୍ତ ବୋଧକରି ନାୟିକା ନାୟକର ଅନୁମତି ନେଇ, ନିଜେ ଉପରକୁ ଆସେ ଏବଂ ନାୟକକୁ ତଳେ ଶୁଆଇ ପୁରୁଷ ପରି ଆଚରଣ କରେ । ଏହା ଦ୍ୱାରା ପୁରୁଷକୁ ବିଶ୍ରାମ ମିଳେ ଓ ସ୍ତ୍ରୀର ବାସନା ତୃପ୍ତହୁଏ । ଅହୁରି ମଧ୍ୟ କେହି କେହି ସ୍ୱାମୀ ସ୍ତ୍ରୀ ଗୋଟାଏ ନୂତନତ୍ୱ ପାଇବା ଆଶାରେ ଅଧିକ ରସ ପାଇବାର ଇଚ୍ଛାବତୀ ହୋଇ ଏହି ବିପରୀତ ବିହାର କରିଥାନ୍ତି । ନାୟକ ଯେପରି ନାୟିକାର ଉପରେ ଥାଇ ସ୍ତନ ମର୍ଦ୍ଦନ, ଗଣ୍ଡଚୁମ୍ବନ ଓ କଟିଚାଳନ ପ୍ରଭୃତି କରେ, ବିପରୀତ ରତରେ ନାୟିକା ମଧ୍ୟ ତଦ୍ରୂପ ବ୍ୟବହାର କରିବା ଦରକାର । ତାହା ଦ୍ୱାରା ଅଧିକ ରସର ସଞ୍ଚାର ହୋଇଥାଏ ।

---

* ଯମ ଏ ଅଧୀନେ—ସ୍ତ୍ରୀ ଉପରେ ଓ ପୁରୁଷ ନିମ୍ନରେ ଶୟନ କରିଥିବାରୁ, ଏଠି ଅଧୀନ ଶବ୍ଦ ସେହି ଅର୍ଥେ ପ୍ରୟୋଗ କରା ଯାଇଛି ।





ବିପରୀତ ରତିର ଆସନ ଦୁଇପ୍ରକାର ଅଟେ । ଉଭୟଙ୍କର କାମ ଯନ୍ତ୍ର ଯୁକ୍ତ ଥାଇ ନାୟିକା ନାୟକ ଉପରକୁ ଉଠି ଆସିବା ଏବଂ ରତି ଯନ୍ତ୍ରକୁ ଅଲଗାକରି ନେଇ ପୁରୁଷକୁ ତଳେ ଶୁଆଇ ନାରୀ ଉପରକୁ ଆସି ପୁନରାୟ ଯନ୍ତ୍ରସଂଯୋଗ କରି ସମ୍ଭୋଗ କରିବା । ଏହି ଦୁଇ ପ୍ରକାର ଆସନରେ ନାୟିକା ହେଉଛନ୍ତି କର୍ତ୍ତା ଓ ନାୟକ ହେଉଛନ୍ତି କର୍ମ ।



## ନବୋଢ଼ା ନାୟିକାର ବିପରୀତ ବିହାର

ନବୋଢ଼ା ନାୟିକାମାନେ ବିଶେଷତଃ ଲଜ୍ଜାଶୀଳା । ସେମାନେ ସହଜରେ ବିପରୀତ ବିହାର କରିବାକୁ ରାଜି ହୁଅନ୍ତି ନାହିଁ । ପୁରୁଷର ବହୁ ସାଧ୍ୟ ସାଧନା ଓ ଅନୁନୟ ବିନୟରେ ସେମାନେ ରାଜି ହୋଇଥାନ୍ତି ।

ଚନ୍ଦ୍ରମୁଖୀ ନାୟିକା ସମ୍ଭୋଗ କାଳରେ ନିଜର ବସ୍ତ୍ରକୁ ଏକ ହାତରେ ଧରି ଅନ୍ୟ ହାତରେ ନିଜ ସ୍ୱାମୀର ବେକକୁ ଭୁଜ ପୁରୁଷ ପରି ଆଚରଣ କରେ । ଏହା ଦ୍ୱାରା ସେ ଓ ତାହାର ସ୍ୱାମୀ ସ୍ୱର୍ଗୀୟ ଆନନ୍ଦ ପାଇଥାନ୍ତି । ବିପରୀତ ରତିବେଳେ ନବୋଢ଼ାପତ୍ନୀ ଲଜ୍ଜାବଶତଃ ନିଜର ସ୍ୱାମୀର ବେକକୁ ଭୁଜ ଧରେ । ଏହା ମଧ୍ୟ ହେବା ସ୍ୱାଭାବିକ । କିନ୍ତୁ ତରୁଣୀ ଓ ପ୍ରୌଢ଼ା ନାୟିକମାନେ ଏପରି କରନ୍ତି ନାହିଁ । ନବୋଢ଼ା ନାୟିକା ବେଳେ ବେଳେ ଏକ ହାତରେ ନିଜର ବେକ ଓ ଅନ୍ୟହାତରେ ସ୍ୱାମୀର ବେକ ଭୁଜଧରି ବିପରୀତ ରତି କରିଥାଏ । କିନ୍ତୁ ସାବଧାନ ନବୋଢ଼ା ବଧୂର ଇଚ୍ଛାବିରୁଦ୍ଧ କାର୍ଯ୍ୟରେ କଦାପି ବ୍ରତୀ ହେବ ନାହିଁ । ତହିଁର ଗୋଟିଏ ପ୍ରବଚନ ଶ୍ଲୋକ ଓ ପଦ୍ୟାର୍ଥ ସହ ଦିଆଗଲା—



ହସ୍ତେ ଧୃତାପି ଶୟନେ ବିନିବେଶିତାପି,
କ୍ରୋଡ଼େ କୃତାପି ଯତତେ ବହିରେବ ଗନ୍ତୁଂ ।
ଜାନୀମହେ ନବବଧୂ ରଥ ତସ୍ୟବଶ୍ୟା,
ଯଃ ପାରଦଂ ସ୍ଥଗୟିତୁ କ୍ଷମତେ କରେଣ ।
ବାଳିକା ବଧୂର ଭାବ ଅତି ଚମତ୍କାର ।
ଯେ ଭୋଗିଛି ସେହି ଜାଣେ ତାର ବ୍ୟବହାର ॥
ହସ୍ତପଦ ଧରି ଅବା ବିଛଣାକୁ ନେଇ ।
କୋଳେ ଧରି ରଖିଲେ ହେଁ କେବେ ନ ରହଇ ॥
ବାଳିକା-ବଧୂକୁ ବଶେ ଆଣିବା ଦୁଃସାଧ୍ୟ ।
ପାରଦ ଧରିବା ହସ୍ତେ ଯେପରି ଅସାଧ୍ୟ ।



## ତରୁଣୀ ଓ ପ୍ରୌଢ଼ାର ବିପରୀତ ବିହାର

ତରୁଣୀ ଓ ପ୍ରୌଢ଼ା ଯୁବତୀମାନେ ନବୋଢ଼ା ରମଣୀଠାରୁ ବିପରୀତ ରତି କ୍ରୀଡ଼ାରେ ବିଶେଷ ନିର୍ଲଜ ଭାବ ଦେଖାଇ ଥାନ୍ତି । ଏହିମାନେ ନିଜର ପୁରୁଷ ପ୍ରତି ନଖକ୍ଷତ, ଆଲିଙ୍ଗନ, ଚୁମ୍ବନ ଆଦିରେ ଠିକ୍ ପୁରୁଷ ଭଳି ମାତି ଉଠନ୍ତି । ଏହି ସମୟରେ ସେମାନଙ୍କର 'ଅଲୁଲାୟିତ କେଶ ଗୁଚ୍ଛ ଅଙ୍ଗେ ବିଞ୍ଛୋଇ ପଡେ । ଘନ ଘନ ଶ୍ୱାସ ପ୍ରଶ୍ୱାସ ବହେ । ସେମାନଙ୍କର ଦୁଇ କୁଚ ପ୍ରିୟତମର ଛାତିରେ ବାରମ୍ବାର ରଗଡ଼ ହୋଇ ସ୍ୱାମୀକୁ ସ୍ୱର୍ଗୀୟ ଆନନ୍ଦ ଦାନ କରେ । ସେ ସମୟରେ ସ୍ତ୍ରୀର ମନରେ ଗୋଟିଏ ଅଭିମାନ ଜାଗେ । ସେ ସ୍ୱାମୀକୁ କହି ପକାଏ, "ତୁମେ ମୋତେ ଏହିପରି ଆଚରଣ ଦ୍ୱାରା କଷ୍ଟ ଦେଇଅଛ, ମୁଁ ତାହାର ବର୍ତ୍ତମାନ ପ୍ରତିଶୋଧ





ନେଉଛନ୍ତି" । ପୁଣି ଯେତେବେଳେ ଲଜ୍ଜା ବଶତଃ ସ୍ୱାମୀର କାନ୍ଧରେ ମୁଖ ଲୁଚାଏ । ପରିଶେଷରେ କ୍ଳାନ୍ତ ହୋଇପଡେ ।

ବିପରୀତ ବିହାର କରିବାକୁ ରମଣୀମାନେ ଲଜ୍ଜାବଶତଃ ସହଜରେ ରାଜି ହୁଅନ୍ତି ନାହିଁ । କାମ ବିଜ୍ଞାନ ୧ମ ଖଣ୍ଡର ଷଡ଼ବିଂଶ ଅଧିକରଣ ପୃଃ୦୧ସ୍ଥାରେ "ପୁରୁଷାୟିତ ବନ୍ଧ" ଏହି ବିଷୟ ଗୁଡ଼ିକ ପାଠକେ ପଢ଼ିଲେ ନାୟିକାକୁ ସ୍ୱବଶକୁ ଆଣି ପୁରୁଷାୟିତ କରିବାର ପ୍ରଣାଳୀ ବିଶଦ ଭାବରେ ବୁଝି ପାରିବେ ।

ଋତୁକାଳରେ ଋତୁମତୀକୁ, ପ୍ରସୂତାକୁ ମୃଗୀ ନାରୀକୁ ଗର୍ଭିଣୀକୁ ଏବଂ ଅତ୍ୟନ୍ତ ଡେଙ୍ଗା ଓ ଅତ୍ୟନ୍ତ ସ୍ଥୂଳା ସ୍ତ୍ରୀ ଲୋକକୁ ବିପରୀତ ବିହାର କରିବା ଠିକ୍ ନୁହେଁ । କାରଣ, ଋତୁମତୀ ନାରୀକୁ ବିପରୀତ ରତିକଲେ ଅଧିକ ରଜସ୍ରାବ ଘଟି ପୁରୁଷର କୋଡ ଗାଏଁ ଓ ଚନ୍ଦ୍ରଣା ଆଦି ଘଟା ହୋଇଥାଏ । ପ୍ରସୂତାକୁ ବିପରୀତ ବିହାର କଲେ ତା'ର ପ୍ରଦର ରୋଗ ହେବାର ସମ୍ଭାବନା ଥାଏ । ମୃଗୀ ନାୟିକା ଏହା ଅଦୌ ଆଚରଣ କରିପାରେ ନାହିଁ । କାରଣ ତା'ର ସ୍ମର-ମନ୍ଦିର-ଗହ୍ୱର ଅଗଭୀର ହେତୁ ତାହାକୁ କଷ୍ଟ ବୋଧହୁଏ । ଏହାଦ୍ୱାରା ଗର୍ଭିଣୀର ଗର୍ଭ ନଷ୍ଟ ହେବାର ସମ୍ଭାବନା । ଅତି ସ୍ଥୂଳ ବା ଅତି ଡେଙ୍ଗା ରମଣୀ ବିପରୀତ ସହବାସରେ ନାୟକ ବା ନାୟିକା କେହି ତୃପ୍ତି ପାଆନ୍ତି ନାହିଁ ।





# ସପ୍ତମ ଅଧିକରଣ

## ଜନ ନିୟନ୍ତ୍ରଣ ବା ବାର୍ଥ କଣ୍ଟ୍ରୋଲ ।

ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ଅତି ଦ୍ରୁତ ଗତିରେ ବଢ଼ି ଚାଲିଛି । କିନ୍ତୁ ସେ ଅନୁପାତରେ ଖାଦ୍ୟୋତ୍ପାଦନ ବଢ଼ିବା ସମ୍ଭବ ହେଉ ନାହିଁ

ପ୍ରଥମ ମହାଯୁଦ୍ଧ ଓ ଦ୍ୱିତୀୟ ମହା ଯୁଦ୍ଧରେ ବହୁ କାଳ କାରଖାନାଦିର ଧ୍ୱଂସ ଯୋଗୁ ସବୁ ଦେଶର ଉତ୍ପାଦନ ଶକ୍ତି ହ୍ରାସ ପାଇଅଛି । ପ୍ରଥମ ମହାଯୁଦ୍ଧରେ ପ୍ରାୟ ଚାରିକୋଟି ଲୋକ ମରିଥିଲେ । ଦ୍ୱିତୀୟ ମହାଯୁଦ୍ଧରେ ପ୍ରାୟ ପାଞ୍ଚକୋଟିରୁ ବେଶୀ ଲୋକ ମଲେ । ଜାପାନର ହିରୋସୀମା ଓ ନାଗାସାକି ସହରରେ ପରମାଣୁ ବୋମା ପଡ଼ିବା ଫଳରେ ପ୍ରାୟ ଦୁଇଲକ୍ଷ ଲୋକଙ୍କର ଜୀବନ ନାଶ ଘଟିଲା । ପୁଣି ପୃଥିବୀରେ ପ୍ଲେଗ, ମହାମାରୀ, ଭୂମିକମ୍ପ ଦୁର୍ଭିକ୍ଷାଦିରେ ମଧ୍ୟ କେତେ ଲୋକ ମରୁଛନ୍ତି । ତଥାପି ପୃଥିବୀର ଲୋକସଂଖ୍ୟା ବୃଦ୍ଧିର ବିରାମ ନାହିଁ । ଖ୍ରୀଷ୍ଟ ଜନ୍ମବେଳେ ପୃଥିବୀର ଲୋକ ସଂଖ୍ୟା ଥିଲା ପ୍ରାୟ ଷୋଳକୋଟି । ବର୍ତ୍ତମାନ ତାହା ପ୍ରାୟ ୧୫ଗୁଣ ବଢ଼ି ଯାଇଅଛି । ହିସାବ କରି ଦେଖାଯାଇ ଅଛି ପୃଥିବୀର ଲୋକ ସଂଖ୍ୟା ଦୈନିକ ପ୍ରାୟ ୭୦ହଜାର ଲେଖା ବଢ଼ି ଚାଲିଛି ।

ଆମ ଭାରତ ବର୍ଷ କଥା ବିଚାର କରଯାଉ । ଅଭିବକ୍ତ ଭାରତର ଲୋକ ସଂଖ୍ୟା ଥିଲା ୪୫କୋଟି । ପାକିସ୍ଥାନର ସୃଷ୍ଟି





ହେଲାପରେ ବର୍ତ୍ତମାନ ଭାରତର ଲୋକସଂଖ୍ୟା ୩୫କୋଟି । ପୁଣି ସାମ୍ପ୍ରଦାୟିକ ଗଣ୍ଡଗୋଳ ଫଳରେ ବହୁ ଲୋକ ପାକିସ୍ଥାନରୁ ପଳାଇ ଆସିବା ଦ୍ୱାରା ଭାରତର ଲୋକସଂଖ୍ୟା ଅଜସ୍ର ବଢ଼ିଯାଇଅଛି । ଏ ଦେଶ କୃଷି-ପ୍ରଧାନ ଦେଶ । ଏହାର ଚାଷୋପଯୋଗୀ ଜମିର ପରିମାଣ ନିର୍ଦ୍ଦିଷ୍ଟ ସୀମା ଭିତରେ ଥିବାବେଳେ ଲୋକ ସଂଖ୍ୟା ବର୍ଷକୁ ପ୍ରାୟ ୫୦ଲକ୍ଷ ଲେଖାଏଁ ବଢ଼ି ଚାଲିଛି । ଅତଏବ ଭାରତ ପକ୍ଷରେ ଜନ୍ମ ନିୟନ୍ତ୍ରଣ ପ୍ରଶ୍ନ ସର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ।



## ଜନ୍ମ ନିରୋଧ କଣ ?

ସ୍ୱାମୀ ଓ ସ୍ତ୍ରୀର ସଂଯୋଗ ଫଳରେ ସନ୍ତାନ ଜନ୍ମର ଯେଉଁ ସମ୍ଭାବନା ଥାଏ, ତାହା ଉପରେ ସ୍ୱାମୀ ସ୍ତ୍ରୀଙ୍କର କୌଣସି ହାତ ନ ଥାଏ । ସେମାନେ ଉଭୟ ଯୌନକ୍ଷୁଧା ମେଣ୍ଟାଇବା ପାଇଁ ଓ ଆନନ୍ଦ ଉପଭୋଗ କରିବା ପାଇଁ ରତି କ୍ରୀଡ଼ାରେ ମାତନ୍ତି । ସେହି ସହବାସରେ ଯେ ଗର୍ଭୋତ୍ପତ୍ତି ହେବ, ଏ ଧାରଣା ତାଙ୍କର ସେତେବେଳେ ନ ଥାଏ । ସେହି ଜନ୍ମ ସମ୍ଭାବନାକୁ ନିୟନ୍ତ୍ରଣ କରି ସ୍ୱାମୀ ସ୍ତ୍ରୀ ଯୌନ ସୁଖ ଉପଭୋଗ କରିବାର ଉପାୟକୁହିଁ "ଜନ୍ମ ନିୟନ୍ତ୍ରଣ ବା ବାର୍ଥ କଣ୍ଟ୍ରୋଲ୍" କୁହାଯାଏ । ଏକଥା ତ ଆମ୍ଭେମାନେ ପୂର୍ବରୁ ଜାଣିଅଛୁ ଯେ, ପୁରୁଷର ଶୁକ୍ର କୀଟ ଓ ନାରୀର ଦେହପକ୍ୱ ଡିମ୍ବାଣୁର ମିଳନ ଫଳରେ ଗର୍ଭ ସଞ୍ଚାର ହୁଏ । ଅତଏବ ଯେଉଁ ଉପାୟମାନଙ୍କ ଦ୍ୱାରା ଏ ଉଭୟର ମିଳନ ସମ୍ଭବ ହେବ ନାହିଁ, ତାହାର ଉପାୟ ମାନ ପରପୃଷ୍ଠାରେ ଦିଆ ଗଲା ।



ଆମ ଶାସ୍ତ୍ର କୁହେ ଭ୍ରୁଣହତ୍ୟା ମହାପାପ । ଏଣୁ ମୂଳରୁ ସେ ଭ୍ରୁଣକୁ ସୃଷ୍ଟି କରଇ ନ ଦେବାହିଁ ଏ ଲେଖାର ଉଦ୍ଦେଶ୍ୟ ।



## ଜନ୍ମନିୟନ୍ତ୍ରଣର ଉପକାରିତା

ଜନ୍ମନିୟନ୍ତ୍ରଣର ପ୍ରଥମ ପ୍ରୟୋଜନୀୟତା ହେଉଛି ଦେଶରୁ ଦାରିଦ୍ର୍ୟ ନିବାରଣ କରିବା । ଏହାଛଡ଼ା ନାରୀ ଜାତିର ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଲେ ଦେଖାଯାଏ ଯେ ସେମାନେ ଅନଭିପ୍ରେତ ବହୁସନ୍ତାନ ପ୍ରସବ କରି, ନିଜେ ଦୁର୍ବଳ ଓ କ୍ଷୀଣକାୟ ହୋଇଯାନ୍ତି । ଜଣେ ପୁରୁଷ ନିଜକୁ ଏବଂ ନିଜର ସମସ୍ତ ପରିବାରକୁ ଭରଣପୋଷଣ କରିବାରେ କଣ୍ଠାଗତ ହୋଇଯାଏ । ଅବଶ୍ୟ ଧନୀଙ୍କର କଥା ସ୍ୱତନ୍ତ୍ର । କିନ୍ତୁ ଆମ ଦେଶର ଜନସାଧାରଣ ଶତକଡ଼ା ନବେ-ଭାଗ ଦରିଦ୍ର ଥିବାସ୍ଥଳେ ବହୁ ସନ୍ତାନ ପ୍ରସବ ଯେ ସେମାନଙ୍କ ପକ୍ଷରେ କେତେ ଦୁଃଖଦାୟକ ତାହା ସହଜରେ ଅନୁମେୟ । କେତେ ଶିଶୁ ଅଭାବ ବଶତଃ ଉପଯୁକ୍ତ ଖାଦ୍ୟ ନ ପାଇ ଅକାଳରେ ମଉଳି ପଡ଼ନ୍ତି । କେତେକ ପୁତ୍ରମାନଙ୍କୁ ପିତା ଅର୍ଥାଭାବରୁ ଉପଯୁକ୍ତ ଶିକ୍ଷା ଦେଇ ନ ପାରିବାରୁ ପରବର୍ତ୍ତୀ ବୟସରେ ସେମାନେ ଚରିତ୍ରହୀନ, ବଦମାସ, ଚୋର ଓ ଡକାୟତ ହୋଇ ସମାଜର ବହୁ ଅପକାର କରନ୍ତି ।

ଜନ୍ମନିୟନ୍ତ୍ରଣ ବ୍ୟବସ୍ଥା ଦ୍ୱାରା କେବଳ ଯେ ପିତା ମାତାଙ୍କ ଦୈହିକ, ମାନସିକ, ଅର୍ଥନୈତିକ ଉପକାର ସାଧିତ ହୁଏ ତାହା ନୁହେଁ । ଏହା ଦ୍ୱାରା ରାଷ୍ଟ୍ରର ଓ ସମାଜର ମଧ୍ୟ ଯଥେଷ୍ଟ ଉନ୍ନତି ସାଧନା ହୋଇଥାଏ । ଏଥିରେ ବ୍ୟକ୍ତିଗତ ପ୍ରଣାଳୀ ଉପରେ ଦେଇ





ସାମାଜିକ, ସାମ୍ୟର ଭିତ୍ତି ଗଢ଼ି ହୁଏ ଏବଂ ଜାତିମଧ୍ୟ ଶିକ୍ଷା, କୃଷି, ସ୍ୱାସ୍ଥ୍ୟ ଓ ଅର୍ଥନୀତି ଦିଗରୁ ସମୃଦ୍ଧିଶାଳୀ ହୋଇ ଉଠେ । ଜୀବନ ଯୁଦ୍ଧରେ ଅନୁପଯୁକ୍ତ, ଦଣ୍ଡ ସଦ୍ଗୁଣ ପାଳିତ, ଜନ୍ମମୂର୍ଖ, ରୁଗ୍ଣ, ବିକଳାଙ୍ଗ, ବିକୃତ-ମସ୍ତିଷ୍କ ସନ୍ତାନ କେବଳ ସମାଜର କଣ୍ଟକ ସ୍ୱରୂପ ନୁହେଁ—ରାଷ୍ଟ୍ରର ମଧ୍ୟ ବୋଝ ସ୍ୱରୂପ । ଦେଶର ଓ ଜାତିର ଏ ଦୁର୍ଦ୍ଦିନରେ ସୁସ୍ଥ, ସବଳ, ମେଧାବୀ ମନୁଷ୍ୟ ଆବଶ୍ୟକ । ପ୍ରକୃତ ମନୁଷ୍ୟ ସୃଷ୍ଟି କରିବାକୁ ହେଲେ ଦେଶରେ ଜନ୍ମ ନିୟନ୍ତ୍ରଣ ଏକାନ୍ତ ପ୍ରୟୋଜନ ।

ଯାହା ହେଉ ଆମ୍ଭମାନଙ୍କର କହିବାର ଏତିକି ଯେ, ଯେଉଁମାନେ ଭ୍ରୂଣହତ୍ୟା ବା ଔଷଧ ବା ଯନ୍ତ୍ର ସାହାଯ୍ୟରେ ଗର୍ଭପାତକୁ ଅନ୍ତରରେ ସହିତ ଘୃଣା କରନ୍ତି, କୌଣସି ନିର୍ଦ୍ଦିଷ୍ଟ ସଂଖ୍ୟାରୁ ଅଧିକ ସନ୍ତାନଙ୍କର ଲାଳନ ପାଳନ ଶିକ୍ଷାଦାନ ପ୍ରଭୃତି ବହନ କରିବାକୁ ଅକ୍ଷମ, ଯେଉଁମାନେ ନିଜ ସ୍ତ୍ରୀର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ଅକ୍ଷୁଣ୍ଣ ରଖିବାକୁ ଚାହାନ୍ତି, ଦାମ୍ପତ୍ୟ ପ୍ରେମକୁ ଆନନ୍ଦଦାୟକ ଓ ଦୀର୍ଘସ୍ଥାୟୀ କରିବାକୁ ଇଚ୍ଛା କରନ୍ତି, ଏବଂ ଯେଉଁମାନେ ଚିରରୁଗ୍ଣ, ମରଣାପନ୍ନ ଓ ଅକର୍ମଣ୍ୟ ସନ୍ତାନ ଚାହାନ୍ତି ନାହିଁ, ସେମାନେ ନିଜ ନିଜର ପ୍ରୟୋଜନ ଓ ରୁଚି ଅନୁସାରେ ଚିକିତ୍ସା ବିଜ୍ଞାନ-ସମ୍ମତ ଜନ୍ମ ନିୟନ୍ତ୍ରଣ ପ୍ରଣାଳୀ ଗ୍ରହଣ କଲେ ତାହା ଆଦୌ ଅସଙ୍ଗତ ହେବ ନାହିଁ । କାରଣ ଦେଶ ଓ ଦଶର ହିତ ଦୃଷ୍ଟିରୁ ଦେଶର ଜନସଂଖ୍ୟା ବଢ଼ିବା ଉଚିତ ନୁହେଁ । ଯେ ଜନ୍ମ ହେବେ ସେମାନେ ଦୀର୍ଘାୟୁ, ସୁଗୁଣସମ୍ପନ୍ନ ହେବା ଉଚିତ ।

ଗର୍ଭଗ୍ରହଣ ନାରୀ ପକ୍ଷରେ ଜୀବନ-ମରଣ ସମସ୍ୟା । ଏଣୁ ଅନଭିପ୍ରେତ ଓ ଅନାବଶ୍ୟକ ଗର୍ଭଗ୍ରହଣ ଦେଶ ଓ ଜାତି ପକ୍ଷେ



ଯେପରି ଅନିଷ୍ଟକର ନାରୀ ପକ୍ଷେ ତହୁଁ ଅଧିକ ଅନିଷ୍ଟକର । ପୁରୁଷ ଭ୍ରୂଣ ସୃଷ୍ଟି କରି ଦେଇ ନିଶ୍ଚିନ୍ତ । କିନ୍ତୁ ନାରୀ କଣ୍ଠାଗତ ପ୍ରାଣ । ଉପହାସ ଛଳରେ କଥାରେ ଅଛି—

ହସିତ୍ୱା ଗର୍ଭ ମାଧତ୍ତେ ରୁଦିତ୍ୱା ତଦ୍‌ବିମୁଞ୍ଚତି ।
ଶୃଣୁ ରମ୍ୟାଂ କଥାଂ ରାଜନ୍ ଯଥାଗର୍ଭଂ ଋଣଂତଥା ॥
ରମଣୀ ଗ୍ରହଣ କରେ ହସି ହସି ଗର୍ଭ ।
କିନ୍ତୁ କାନ୍ଦି କାନ୍ଦି ତାହା କରଇ ପ୍ରସବ ।
ଋଣ ନେବା ସମୟରେ ହୁଏ ଯେତେ ସୁଖ ।
ସୁଝିବା କାଳରେ ହୁଏ ସେତିକି ଯେ ଦୁଃଖ ॥
କିବା ଋଣ କିବା ଗର୍ଭ ଶୁଣ ହେ ରାଜନ ।
ଉଭୟରେ ରହିଅଛି ହାସ୍ୟ ଓ କ୍ରନ୍ଦନ ॥

---

## ସ୍ୱାଭାବିକ ଉପାୟରେ ଜନ୍ମ ନିୟନ୍ତ୍ରଣ

ସ୍ୱାଭାବିକ ଉପାୟରେ ଜନ୍ମନିୟନ୍ତ୍ରଣ ପ୍ରକ୍ରିୟା କହିଲେ ବୁଝିବାକୁ ହେବ ଯେ ବିନା ଔଷଧ ଓ ଯନ୍ତ୍ର ସାହାଯ୍ୟରେ ଜନ୍ମ ନିୟନ୍ତ୍ରଣ କରିବା । ସ୍ତ୍ରୀ ଯୋନି ବିଷୟରେ କେତେକ କଥା ପାଠକବର୍ଗଙ୍କୁ ଏଠାରେ ମନେ ପକାଇ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ । ସହବାସ ସମୟରେ ଯୋନି ଭିତରେ କିପରି ଓ କେଉଁ ସ୍ଥାନରେ ବୀର୍ଯ୍ୟପାତ ହୁଏ, ଶୁକ୍ରକୀଟ କିପରି ଭାବରେ ଗତିକରି ଯାଇ ଜରାୟୁରେ ଅଶ୍ରୟ ନିଏ, ସ୍ତ୍ରୀ ଯୋନିର ବାହାର ଓ ଭିତର ଅଂଶ ସମ୍ବନ୍ଧରେ କେତେକ ସତ୍ୟ ଅଲୋଚନା ଏବଂ ପୁରୁଷର ଲିଙ୍ଗ ଓ





ଲିଙ୍ଗର ଭିତର ଅଂଶ ସମ୍ବନ୍ଧରେ କାମବିଜ୍ଞାନ ପ୍ରଥମ ଖଣ୍ଡର ତୃତୀୟ ଅଧିକରଣରେ ଅତି ସହଜ ବିଶଦ ଭାବରେ ବର୍ଣ୍ଣନା କରାଯାଇ ଅଛି । ପାଠକବର୍ଗ ତାହା ଅଧ୍ୟୟନ କରି ଜନ୍ମନିୟନ୍ତ୍ରଣରେ ଅଗ୍ରସର ହେଲେ ଅନେକ ଅସୁବିଧା ଦୂର ହୋଇଯିବ ।

ସଂଯମ ହେଉଛି ସ୍ୱାଭାବିକ ଜନ୍ମନିୟନ୍ତ୍ରଣର ଶ୍ରେଷ୍ଠ ପନ୍ଥା । ସ୍ୱାମୀ ସ୍ତ୍ରୀ ନିର୍ଦ୍ଦିଷ୍ଟ ସନ୍ତାନ ଲାଭ ପରେ ସଂଯମ ଅବଲମ୍ବନ କରି ସନ୍ତାନ ଜନ୍ମ ନିରୋଧ କରି ପାରନ୍ତି । କିନ୍ତୁ ତାହା ଅଧିକାଂଶ ମାନବ ଜୀବନରେ ଘଟିବା ଅସମ୍ଭବ ।

---

## ନାରୀ ଦ୍ୱାରା କରଣୀୟ ଜନ୍ମନିୟନ୍ତ୍ରଣ

୧—ସ୍ତ୍ରୀ ସହବାସ ବେଳେ ଉଦାସୀନ ଓ ନିଷ୍କ୍ରିୟ ରହି ତାହାର ଚରମ ତୃପ୍ତି ପାଇବାର ସ୍ୱାଭାବିକ ପ୍ରବୃତ୍ତିକୁ ଜୋର କରି ଦମନ କରି ରଖିଲେ ଗର୍ଭ ହେବାର ସମ୍ଭାବନା ରହେ ନାହିଁ । କିନ୍ତୁ ଏକଥାଟି ଅଂଶିକ ସତ୍ୟ । ବହୁ ସ୍ଥଳରେ ଏହାର ବ୍ୟତିକ୍ରମ ଘଟିବାର ଦେଖାଯାଇ ଅଛି । ନିଜର ଅନିଚ୍ଛାରେ ବା ଉତ୍ପୀଡିତ ହୋଇ ନାରୀ ସହବାସ କରି ମଧ୍ୟ ଗର୍ଭବାସ ହୋଇ ଥାଏ ।

କୌଣସି କୌଣସି କ୍ଷେତ୍ରରେ ସ୍ତ୍ରୀର ସମ୍ମତିକୁ ଅପେକ୍ଷା ନ ରଖି କିମ୍ବା ତାହାର ଯୌନକ୍ଷୁଧାକୁ ଜାଗ୍ରତ ନ କରାଇ କାମୋନ୍ମତ୍ତ ପୁରୁଷ ନାରୀର ଦେହକୁ ଭୋଗକରେ । ତାହାପରେ ସ୍ତ୍ରୀର ଚରମ ତୃପ୍ତି ଆସିବା ପର୍ଯ୍ୟନ୍ତ ଅପେକ୍ଷା ନ କରି କିମ୍ବା କରିବାକୁ ଅକ୍ଷମ ହୋଇ ଶୁକ୍ରପାତ ଘଟାଏ । ଅର୍ଥାତ୍ ନିଜେ ଚରମାନନ୍ଦ ପାଏ ।



କିନ୍ତୁ ପ୍ରେମଶୀଳା ସ୍ତ୍ରୀ ପକ୍ଷରେ ଏହା ଅଧିକ ଚୋଭର ବିଷୟ । ସେମାନେ ସ୍ୱାମୀର ଏତଦ୍ ବ୍ୟବହାର ଦ୍ୱାରା ନିଜକୁ ବଡ଼ ଦୁର୍ଭାଗିନୀ ବୋଲି ମନେ କରନ୍ତି । ନାରୀ ଗୃହେ, ରତିକ୍ରୀଡ଼ାରେ ତା'ର ସ୍ୱାମୀଠାରୁ ସମ୍ପୂର୍ଣ୍ଣ ପରାଜୟ ଓ ନିବିଡ଼ ବଳିଷ୍ଠ ବାହୁର ବନ୍ଧନ ଭିତରେ ରହି ଗାଢ଼ ଆଲିଙ୍ଗନ ଓ ଚୁମ୍ବନ । ଏହି ପରାଜୟ ହିଁ ତାହାର ଆନନ୍ଦ । ଏଣୁ ଏ ପ୍ରକାର ଜନ୍ମନିୟନ୍ତ୍ରଣ ଦାମ୍ପତ୍ୟ ପ୍ରେମକୁ ଶିଥିଳ କରେ ।

ପୟୋଧରରେ ପତିଦତ୍ତ ନଖକ୍ଷତାଦି ଗାଢ଼ ଆଲିଙ୍ଗନ ପାଇଲେ ରମଣୀଗଣ ତତ୍ ସମ୍ବନ୍ଧେ କ'ଣ କରନ୍ତି, ସେ ସମ୍ବନ୍ଧେ ଏକ ଶ୍ଳୋକ ନିମ୍ନରେ ଦିଆଗଲା ।—

ପୀନତୁଙ୍ଗ କଠିନ ସ୍ତନାନ୍ତରେ କାନ୍ତଦତ୍ତ ମଚଲା ନଖକ୍ଷତଂ ।
ଅକ୍ଷିଶୋଭ ବିକ୍ଷୋଭ ବୀକ୍ଷତେ ଲବ୍ଧ ରତ୍ନମିବନିର୍ଧନୋ ଜନଃ ।

ପୀନତୁଙ୍ଗ ସୁକଠିନ ଦୁଇ ପୟୋଧରେ
ପତି ଯଦି ନଖକ୍ଷତ କରେ ପ୍ରେମ ଭରେ ।
ତାହା ହେଲେ ମହାହର୍ଷେ ସୀମନ୍ତିନୀଗଣ,
ଢାଙ୍କନ୍ତି ଖୋଲନ୍ତି ପୁଣି କରନ୍ତି ଦର୍ଶନ ।
ଯେପରି ଅମୂଲ୍ୟ ରତ୍ନ ପାଇ ଦୁଃଖୀ ଜନ,
ତାଙ୍କେ ଅଙ୍କ ଖୋଲେ ପୁଣି କରେ ନିରୀକ୍ଷଣ ।

ତେବେ ଚିରସ୍ୱାମୀ ନାରୀ ଯେଉଁମାନେ ପ୍ରେମ ଅନୁଭୂତିର ଧାର ନ ଧାରି କେବଳ ଅର୍ଥ ପାଇଁ ପୁରୁଷ ସହିତ ରତିକ୍ରୀଡ଼ାରେ ଅଧୀନା ହୁଅନ୍ତି, ସେମାନଙ୍କ ପକ୍ଷରେ ଉପରୋକ୍ତ ପ୍ରକାର ଜନ୍ମ ନିୟନ୍ତ୍ରଣ ଯେପରି ସହଜସାଧ୍ୟ ସେହିପରି ସମ୍ଭବପର ମଧ୍ୟ ।

ତେବେ ଏକଥା ସ୍ମରଣ ରଖିବା ଉଚିତ ଯେ, ପୁରୁଷ ସ୍ତ୍ରୀର ସଂଯୋଗ ବ୍ୟତୀତ କୃତ୍ରିମ ଭାବରେ ଏକବିନ୍ଦୁ ସୂକ୍ଷ୍ମ ଶୁକ୍ର ପ୍ଲାଟିନମ ଶଲାକା ସାହାଯ୍ୟରେ ଜରାୟୁ ଭିତରେ ପ୍ରବେଶ କରାଇ ଦେଇ ରମଣୀର ଗର୍ଭାଧାନ କରାଇବା ଆଜିକାଲି ବୈଜ୍ଞାନିକ ଯୁଗରେ ସମ୍ଭବପର ହୋଇ ପାରିଲାଣି ।

୨—କେତେକ ଅଳ୍ପଶିକ୍ଷିତା ରମଣୀମାନଙ୍କ ମଧ୍ୟରେ ଏପରି ଗୋଟିଏ ବିଶ୍ୱାସ ରହିଛି ଯେ, ପୁରୁଷର ବୀର୍ଯ୍ୟପତନର ଠିକ୍ ପରେ ପରେ ନାରୀ ଯଦି ତାହାର ଚରମ-ତୃପ୍ତି ଜନିତ ରେତଃ ନିସ୍ରାବ କରେ ତାହା ହେଲେ ପୁରୁଷର ଶୁକ୍ରକୀଟ ଗୁଡ଼ିକ ଜରାୟୁ ଭିତରକୁ ଯାଇ ନ ପାରି ସେ ସ୍ରୋତ ମୁହଁରେ ପଡ଼ି ବାହାରକୁ ବାହାରି ଆସିବେ । କିନ୍ତୁ ଏ ବିଶ୍ୱାସ ମଧ୍ୟ ଭିତ୍ତିହୀନ ଧରାଯାଇ ପାରେ ।

ପ୍ରଥମ କଥା ହେଲା ପୁରୁଷର ରେତଃ ସ୍ଖଳନର ଅବ୍ୟବହିତ ପରେ, ଅର୍ଥାତ୍ କେତେକ ମୁହୂର୍ତ୍ତ ଭିତରେ ଇଚ୍ଛାନୁଯାୟୀ ଚରମା-ନନ୍ଦ ଅଣାଇବା ଅନେକ ସ୍ତ୍ରୀଙ୍କର ସାଧ୍ୟାତୀତ । ଦ୍ୱିତୀୟ କଥା ହେଉଛି, ଚରମାନନ୍ଦ ଘଟିଲେ ଯେ ସ୍ତ୍ରୀଙ୍କର ତଥାକଥିତ ରେତଃ ନିସ୍ରାବ ହେବ, ଏପରି କୌଣସି ଅର୍ଥ ନାହିଁ ।

ତାହାପରେ ଆଉ ଗୋଟିଏ କଥା ହେଉଛି ପୁରୁଷର ପ୍ରତି-ବିନ୍ଦୁ ଶୁକ୍ରରେ ଯେତେବେଳେ ଲକ୍ଷଲକ୍ଷ ଶୁକ୍ର କୀଟାଣୁ ରହି, ଅଛନ୍ତି, ସେତେବେଳେ ସ୍ତ୍ରୀ ରେତଃ ନିସ୍ରାବ ଦ୍ୱାରା ସବୁ ଶୁକ୍ରକୀଟ ଗୁଡ଼ିକ ଯେ ସ୍ରୋତରେ ପଡ଼ି ଯୋନି ପ୍ରଣାଳୀର ବାହାରକୁ ବାହାରି ଆସିବେ, ଏହାର କିଛି ଠିକ୍ ନାହିଁ ।



ଏହାଛଡ଼ା ଯୌନସଂଯୋଗ ପ୍ରଥମ ବା ମଧ୍ୟ ସମୟରେ କିମ୍ବା ଅନ୍ୟ ସମୟରେ ରମଣୀର ଯୋନି ପ୍ରଣାଳୀ ଭିତରର ଅଳ୍ପାଧିକ ଯେଉଁ ରସ ନିଷେକ ହୁଏ, ତାହା ଅଳ୍ପ ବହୁତ ଅମ୍ଳଧର୍ମୀ । ଅତି ଅଳ୍ପ ଅମ୍ଳାତ୍ମକ ରସରେ ଶୁକ୍ର କୀଟ ଗୁଡ଼ିକ ଦିନେ ଦୁଇଦିନ ପର୍ଯ୍ୟନ୍ତ ସଚଳ ଓ ଜୀବିତ ରହିପାରନ୍ତି, ତହୁଁ ଅଧିକ ସେ ଗୁଡ଼ିକ ଅଦୌ ବଞ୍ଚି ପାରନ୍ତି ନାହିଁ । ଯୌନ ସଂସର୍ଗର ଶେଷ ସମୟରେ ଜରାୟୁ-ଗ୍ରୀବା-ସନ୍ନିହିତ ସ୍ଥାନ ଓ ଜରାୟୁ ଗହ୍ୱରରୁ ଯେଉଁ ରସ ନିସୃତ ହୁଏ ତାହା କ୍ଷାରଧର୍ମୀ । ତାହା ସହଯୋଗରେ ଶୁକ୍ର କୀଟଗୁଡ଼ିକ ସ୍ଥଳ ବିଶେଷରେ ୭ଦିନରୁ ୧୦ଦିନ ପର୍ଯ୍ୟନ୍ତ ବଞ୍ଚିରହି ପାରନ୍ତି । ଯେଉଁ ନାରୀମାନେ ବନ୍ଧ୍ୟା ବା ଅନୁର୍ବର ସେମାନଙ୍କର ଗର୍ଭାଧାନ ନ ହେବାର ଅନ୍ୟତମ କାରଣ ହେଉଛି—ଯୋନି-ପ୍ରଣାଳୀର ରସ ଅତ୍ୟନ୍ତ ଅମ୍ଳାତ୍ମକ ଓ ଚରମାନନ୍ଦ ରସ ହେଉଛି ଅଳ୍ପ-କ୍ଷାରଧର୍ମୀ ।

୩—ଯୌନ ସଂଯୋଗ ଏପରି ଏକ ବନ୍ଧ ଦ୍ୱାରା କରାଯାଇ ହେବ, ଯେପରି ପୁରୁଷାଙ୍ଗ ଯୋନିପଥରେ ଅଧିକ ଦୂର ଅଗ୍ରସର ହୋଇ ଜରାୟୁ ସହିତ ମିଳିତ ହୋଇ ନ ପାରେ । ଏହି ବନ୍ଧମାନଙ୍କ ମଧ୍ୟରୁ କେତେକ ନାମ ନିମ୍ନରେ ଦିଆଗଲା—ଜାନୁପୂର୍ବ, କୌର୍ମିକ, ମର୍କଟ, ସଂପୁଟବନ୍ଧ, ଧେନୁକ, ବୀଣାବନ୍ଧ, କୀର୍ତ୍ତିବନ୍ଧ, ହରିବିକ୍ରମ ଇତ୍ୟାଦି ବନ୍ଧମାନ ଆଚରଣ କଲେ ଜରାୟୁକୁ ଲିଙ୍ଗ ସ୍ପର୍ଶ କରେ ନାହିଁ । ଏ ଗୁଡ଼ିକର କ୍ରିୟାବଳୀ ଅଷ୍ଟମ ଅଧିକରଣରେ ଦ୍ରଷ୍ଟବ୍ୟ ।

କିନ୍ତୁ ଏ ସବୁ ସଂପୂର୍ଣ୍ଣ ଅବୈଜ୍ଞାନିକ ପ୍ରଥା । ଜରାୟୁ ପୁରୁଷାଙ୍ଗ ସହିତ ମିଳିତ ହେଲେ ବା ଜରାୟୁର ବସ୍ତାବୃତ ଓଷ୍ଠ ଲିଙ୍ଗାଗ୍ରଭାଗକୁ





ଢାମୁଡ଼ ଧରଲେ ସେହି ସମୟରେ ଯଦି ପୁରୁଷର ଶୁକ୍ରପାତ ହୁଏ ତାହା ହେଲେ ଶୁକ୍ରକୀଟ ସଙ୍ଗେ ସଙ୍ଗେ ଡିମ୍ବକୋଷରେ ପ୍ରବେଶ କରେ ଏବଂ ସ୍ତ୍ରୀ ସଙ୍ଗେ ସଙ୍ଗେ ଗର୍ଭ ଗ୍ରହଣ କରେ, ଏକଥା ସତ୍ୟ । ଆଉ ଗୋଟିଏ କଥା ମନେ ରଖିବାକୁ ହେବ ଉପରୋକ୍ତ ଏହି ବନ୍ଧଗୁଡ଼ିକ ଦ୍ୱାରା ନାରୀ ନିଜର ପରିପୂର୍ଣ୍ଣ ଯୌନକ୍ଷୁଧା ମେଣ୍ଟାଇ ପାରେ ନାହିଁ । ଏଣୁ ତାହାର ମନରେ ଅଶାନ୍ତି ଜନ୍ମେ । ଆମ ଦେଶରେ ବେଶ୍ୟା ଓ ଅର୍ଦ୍ଧ ବେଶ୍ୟାମାନେ ଏପରି ବନ୍ଧ ଆଚରଣ କରି ଗର୍ଭନିରୋଧ କରିଥାନ୍ତି, କିନ୍ତୁ ବିବାହିତା ସ୍ୱାମୀ ସ୍ତ୍ରୀଙ୍କର ମାନସିକ ଶାନ୍ତି ପକ୍ଷରେ ଏ ବନ୍ଧ କରଣୀୟ ନୁହେଁ ।

○——ଠିକ୍ ସ୍ୱାମୀ ସହବାସର ଅବ୍ୟବହିତ ପରେ ସ୍ତ୍ରୀ କ'ଣ କଲେ ଶୁକ୍ରକୀଟ ଜରାୟୁ ମଧ୍ୟରେ ପ୍ରବେଶ କରି ଗର୍ଭୋତ୍ପତ୍ତି ହୁଏ ନାହିଁ, ତାହା ନିମ୍ନରେ ଦିଆଗଲା ।

(କ) ପୁରୁଷର ବୀର୍ଯ୍ୟସ୍ଖଳନ ସଙ୍ଗେ ସଙ୍ଗେ ନାରୀ ଶଯ୍ୟା ଉପରେ ଉଠି ବସିବ ଏବଂ ୨।୩ ମିନିଟ ପର୍ଯ୍ୟନ୍ତ ସେହିପରି ଅବସ୍ଥାରେ ରହିବ ।

(ଖ) ଖଟ ପଲଙ୍କ ଉପରେ ଯଦି ଯୌନସମ୍ଭୋଗ କିମ୍ବା ସଙ୍ଗମ ହୁଏ ତେବେ ରମଣ କାର୍ଯ୍ୟ ଶେଷ ହେବା ମାତ୍ରେହିଁ ରମଣୀ ଖଟ ବା ପଲଙ୍କ ଉପରୁ ତଳକୁ ଡେଇଁ ପଡ଼ିବ ଏବଂ କେତେ ଥର ଗଡ଼ାପଡ଼ା ହେବ ।

(ଗ) ୮।୧୦ ଥର ଉଠ୍ ବସ ବୈଠକ କରି ଦୀର୍ଘ ନିଶ୍ୱାସ ସହିତ କେତେବାର ପେଟର ପେଶିଗୁଡ଼ିକୁ ସଙ୍କୋଚନ ଓ ପ୍ରସାରଣ କରିବ ।



( ଘ ) ନାଶ ବା ଲୁଗାକାନ ନାକରେ ପୂରାଇ କୌଣସି ପ୍ରକାରେ ୫।୬ ଥର ଛିଙ୍କିବ କିମ୍ବା ଖୁବ୍ ଜୋରରେ କେତେ ଥର କାଶିବ ।

( ଙ ) ଖୁବ୍ ଜୋରରେ ଜଳ ଖାଇଲା ପରେ କୁନ୍ଥାଇବ କିମ୍ବା ସଙ୍ଗେ ସଙ୍ଗେ ପାଇଖାନା ଯାଇ ମଳ ସାଫ୍ କରିବ ।

( ଚ ) ଅର୍ଦ୍ଧଶାୟିତ ଭାବରେ ଅଞ୍ଜଳି ବା ଗଡ଼ୁ କିମ୍ବା ଅନ୍ୟ କୌଣସି ପାତ୍ର ଦ୍ୱାରା ଯୋନି ମଧ୍ୟରେ ଥଣ୍ଡାପାଣି ପୂରାଇ ତାହା ଭଲ ଭାବରେ ପରିଷ୍କାର କରିନେବ । ଡୁସ୍ ଦ୍ୱାରା ଥଣ୍ଡାପାଣି ଯୋନି ନାଳୀ ଭିତରକୁ ଦେଇ ଧୋଇଦେବା ସବୁଠାରୁ ହେଉଛି ଉତ୍ତମ ଉପାୟ । ଥଣ୍ଡାପାଣି ସମ୍ପର୍କରେ ଆସିଲେ ୨।୩ ମିନିଟରେ ଶୁକ୍ରକୀଟ ମରିଯାନ୍ତି ।

( ଛ ) ସହବାସରୁ ଉଠିଲା ମାତ୍ରେ ଉପରୋକ୍ତ କାର୍ଯ୍ୟ କରିସାରିଲା ପରେ ଥଣ୍ଡା ପାଣି ଟିକିଏ ପିଇଦେଇ ଖୋଲା ପବନରେ ବୁଲି ଆସିବ ।

( ଜ ) ସଙ୍ଗେ ସଙ୍ଗେ ଉଠି ଚକି ପେଷିବା, ଢିଙ୍କି କୁଟିବା ଅଥବା ଅନ୍ୟ କୌଣସି ପ୍ରକାର ଶାରୀରିକ ପରିଶ୍ରମ କରିବା ଇତ୍ୟାଦି ସଂସାରିକ କାମଧନ୍ଦା କରିବ ।

( ଝ ) ସ୍ୱାମୀ ସହବାସ ପରେ ପୁଣି ପ୍ରବୃତ୍ତ ଖେଳ ଓ ନୃତ୍ୟାଦି କଲେ ଶୁକ୍ରକୀଟ ଉପରକୁ ଉଠିପାରେ ନାହିଁ ।

ବହୁ ପୂର୍ବକାଳରୁ ଉପର ଲିଖିତ ପ୍ରକ୍ରିୟା ଗୁଡ଼ିକ ନାନା ଦେଶରେ ଅଭିଜ୍ଞ ସମାଜରେ ପ୍ରଚଳିତ ହୋଇ ଆସୁଅଛି । ଇଟାଲୀରେ





ଦରିଦ୍ର ପରିବାରର ସ୍ତ୍ରୀଲୋକମାନେ ଗର୍ଭାଶଙ୍କାରେ ଠିକ୍ ଯୌନ ସମ୍ଭୋଗର ପରେ ବିଛଣାରେ ଉଠିବସି କାଶନ୍ତି ଓ ପେଟର ପେଶୀ ଗୁଡ଼ିକ ଉପରେ ଚାପଦେଇ ଶରୀରରୁ ଶୁକ୍ରକୀଟମାନଙ୍କୁ ନିଷ୍କାସିତ କରି ଦିଅନ୍ତି । ଉତ୍ତର ଅଷ୍ଟ୍ରେଲିଆର ଆଦିମ ଅଧିବାସୀ ମାନଙ୍କର ରମଣୀମାନେ କୌଣସି ଶ୍ୱେତକାୟ ପୁରୁଷ ସଙ୍ଗେ ଯୌନ ସମ୍ଭୋଗ କଲେ କାଳେ ଅନଭିପ୍ରେତ ଜାରଜ ସନ୍ତାନ ଜନ୍ମହୋଇ ସମାଜରେ ସେମାନଙ୍କର ନିନ୍ଦାର କାରଣ ହେବ, ତେଣୁ ଠିକ୍ ଯୌନ ସମ୍ଭୋଗ ପରେ ସେମାନେ କାୟିକ ପରିଶ୍ରମ ଦ୍ୱାରା ଗର୍ଭାଧାନ ସମ୍ଭାବନାକୁ ନଷ୍ଟ କରି ଦିଅନ୍ତି ।

୪—ଆଉ ଗୋଟିଏ ଧାରଣା ମଧ୍ୟ ଦେଶରେ ଚଳିଲ ଯେ, ବହୁଦିନ ବ୍ୟାପି ନିଜସ୍ୱ ସନ୍ତାନକୁ ସ୍ତନ୍ୟ ଦାନ ଦେଲେ ଗର୍ଭ ନିରୋଧ ଘଟେ । ଏହା କେତେକାଂଶରେ ସତ୍ୟ । କେତେକ ସ୍ତ୍ରୀଲୋକ ସନ୍ତାନ ଜନ୍ମ ପରେ ବହୁମାସ ଧରି ଋତୁମତୀ ହୁଅନ୍ତି ନାହିଁ । କିନ୍ତୁ ଋତୁମତୀ ହେଲେ ପୁଣି ଗର୍ଭ ଗ୍ରହଣ କରିବାର ଦେଖାଯାଏ । ଅଥଚ ଗର୍ଭ ଗ୍ରହଣ କଲେ ମଧ୍ୟ ଏଣେ ସନ୍ତାନକୁ ସ୍ତନ୍ୟଦାନ କରୁଥାନ୍ତି । କେତେକ ସ୍ତ୍ରୀଲୋକ ମଧ୍ୟ ଅଛନ୍ତି ସ୍ତନ-ଶୋଭା ନଷ୍ଟ ହୋଇଯିବା ଆଶଙ୍କାରେ ସନ୍ତାନକୁ ସ୍ତନ୍ୟଦାନରୁ ବଞ୍ଚିତ କରନ୍ତି । ଏପରି ରମଣୀ ବେଶୀ ଦେଖାଯାନ୍ତି ପାଶ୍ଚାତ୍ୟ ଦେଶରେ । ଆଜିକାଲି ମଧ୍ୟ ଏହି କୁଅଭ୍ୟାସ ଆମ ଦେଶର ଧନିକ ରମଣୀ-ମହଲରେ ସଂକ୍ରମିତ ହେଲାଣି ।





# ପୁରୁଷଙ୍କ ଦ୍ୱାରା କରଣୀୟ ଜନ୍ମନିୟନ୍ତ୍ରଣ

ପୁରୁଷ ମଧ୍ୟ ନିହିତଯୌନ-ସମ୍ଭୋଗ କରି ଜନ୍ମ ନିୟନ୍ତ୍ରଣ କରିଥାଏ। ଏ ରୀତିର ବହୁଳ ପ୍ରଚଳନ ପାଶ୍ଚାତ୍ୟ ଦେଶରେ ଅଛି। ପୁରୁଷାଙ୍ଗକୁ ଯୋନି ଭିତରେ ଆଦୌ ଅନ୍ତଃପ୍ରବିଷ୍ଟ ନ କରାଇ ଯୋନିର ଦୁଇ ପାଖରେ କିମ୍ବା ଉପରେ କୁ, ଭଗାଙ୍କୁର ଦେହରେ ତା ଉତ୍ତୋଷ୍ଣ ହୃଦୟରେ ଘର୍ଷଣ କରି ବୀର୍ଯ୍ୟପାତ କରାଇ ଥାନ୍ତି। ଏହା ଦ୍ୱାରା ଶୁକ୍ରକୀଟ ଜରାୟୁ ମଧ୍ୟରେ ପ୍ରବେଶ କରି ପାରେ ନାହିଁ। ହେଲେ ହେଁ ଏହା ଏ ପ୍ରଥା ସ୍ୱାମୀ ସ୍ତ୍ରୀ ମଧ୍ୟରେ ବହୁଦିନ ଚାଲିଲେ ସ୍ତ୍ରୀ ମନରେ ଅଶାନ୍ତି ଜନ୍ମେ। ତା'ର ସୁଖାନୁଭୂତି ସନ୍ତୁଷ୍ଟ ହୁଏ ନାହିଁ।

ଉପରୋକ୍ତ ପ୍ରକ୍ରିୟାରେ ଗର୍ଭାଧାନର ଆଶଙ୍କା କମ୍ ହୋଇ ପାରେ, କିନ୍ତୁ ମୋଟେ ନ ହେବ ବୋଲି ଏହାର ସଠିକ ପ୍ରମାଣ ନାହିଁ। ଦୁଇପାର୍ଶ୍ୱ ଭଗାଧାର ଓ ଭଗପକ୍ଷ ଆଦି ଯୋନିର ବାହାର ଅଂଶରେ ବୀର୍ଯ୍ୟପାତ ଘଟିଲେ ବି ସୁସ୍ଥ ଓ ସଚଳ ଯୁବକର ଶୁକ୍ର କୀଟ କୃମି ଗତି ଦ୍ୱାରା ଯୋନି ଗହ୍ୱରରେ ପ୍ରବେଶ କରି ଜରାୟୁର ଅଭ୍ୟନ୍ତରକୁ ଚାଲି ଯାଇ ପାରେ। ବିଶେଷଜ୍ଞଙ୍କ ମତରେ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ଓ ଯୌନ ଆନନ୍ଦ ଦୃଷ୍ଟିକୋଣରୁ ଏପରି ବିକୃତ ଓ ଅସ୍ୱାଭାବିକ ଯୌନ ସମ୍ଭୋଗ ନ କରିବା ହିଁ ଉଚିତ।

## ଅପସାରଣ ବିଧି ( WITHDRAWAL SYSTEM )

ଏହି ପ୍ରକ୍ରିୟାରେ ସ୍ତ୍ରୀ ସହିତ ଯୌନ ସମ୍ଭୋଗ କଲା ବେଳେ ଲିଙ୍ଗକୁ ଅନ୍ତଃ-ପ୍ରବିଷ୍ଟ କରାଇ ମଧ୍ୟ ଠିକ ଚରମୋନନ୍ଦ ସମୟରେ





ଅର୍ଥାତ୍ ରେତଃପାତ ସମୟରେ ଲିଙ୍ଗକୁ ବାହାର କରି ଆଣି ଯୋନିର ବହିର୍ଦେଶରେ ଶୁକ୍ର କ୍ଷରଣ କରାଇବା । ଏ ବିଷୟରେ ବିବାହ ବିଜ୍ଞାନ ପୁସ୍ତକର ପୃ ୧୬୮ ଦ୍ରଷ୍ଟବ୍ୟ ।



## ଧାରକ ଯୌନ ସମ୍ଭୋଗ

ଏହି ପ୍ରକ୍ରିୟାରେ ଯୌନ ସମ୍ଭୋଗ ବେଳେ ଲିଙ୍ଗକୁ ସ୍ୱାଭାବିକ ଭାବରେ ଯୋନିରେ ପ୍ରବିଷ୍ଟ କରାଇବାକୁ ହୁଏ । କିନ୍ତୁ ପୁରୁଷଙ୍କୁ ଏପରି ଭାବରେ ସଂଯତ ହେବାକୁ ପଡ଼ିବ ଯେ, ଯେପରି ଆଦୌ ବୀର୍ଯ୍ୟପାତ ନ ଘଟେ । ଧାରକ ଯୌନ ସମ୍ଭୋଗରେ ପ୍ରାୟ ଅଧ-ଘଣ୍ଟାରୁ ଦୁଇଘଣ୍ଟା ଯାଏ ପୁରୁଷାଙ୍ଗକୁ ଉତ୍ଥିତ ଅବସ୍ଥାରେ ରହିବାକୁ ହୁଏ । ସହବାସ ବେଳେ ଯୋନି ମଧ୍ୟରେ ପୁରୁଷାଙ୍ଗକୁ ପ୍ରବେଶ କରାଇ ଅଙ୍ଗାଦି କିଛି ସଂଚାଳନ ନ କରି ଚୁପ୍ ହୋଇ ପଡ଼ି ରହିବାକୁ ହୁଏ । ଏହାଦ୍ୱାରା ବହୁକ୍ଷଣ ଯାଏ ଯୌନପ୍ରକ୍ରିୟା ବିଳମ୍ବ ଘଟିଥାଏ । ଜାଭା, ବାଲି, ମାଳୟ, ଜାପାନ, ପାଲେଷ୍ଟାଇନ, ତୁର୍କିସ୍ଥାନ ଓ ଭାରତବର୍ଷ ପ୍ରଭୃତି ପ୍ରାଚ୍ୟ ଦେଶମାନଙ୍କରେ "ଧାରକ ଯୌନ ସମ୍ଭୋଗ" ପ୍ରଥା ପୂର୍ବେ ଅନୁସୃତ ହେଉଥିଲା ଓ ବର୍ତ୍ତମାନ ମଧ୍ୟ ହେଉଅଛି ।

ମାତ୍ର ଏ ପ୍ରକାର ଯୌନସମ୍ଭୋଗ ସ୍ତ୍ରୀ ଓ ପୁରୁଷ ପକ୍ଷରେ ହିତକର ନୁହେଁ । ଏହା ଦ୍ୱାରା ଉଭୟେ ଚରମାନନ୍ଦରୁ ବଞ୍ଚିତ ହୁଅନ୍ତି । ନାରୀ ଓ ପୁରୁଷ ଉଭୟଙ୍କର ଶୁକ୍ର କ୍ଷରଣ ହେଉଛି ଚରମାନନ୍ଦର ଶେଷ ପରିଣତି । ତାହା ନ ଘଟିଲେ ଉଭୟଙ୍କର ମନରେ ଲାଗିରହିବ ଅତୃପ୍ତି ବାସନା ଜାଗି ଉଠେ । ଏପରି ବୀର୍ଯ୍ୟପାତକୁ



ନିବାରଣ କରିବା ସଙ୍ଗେ ସଙ୍ଗେ ଉଭୟେ ସ୍ୱାମୀ ସ୍ତ୍ରୀ ସହବାସ ବେଳେ ନାନାଦି ଅସାରକ ବିଷୟ ଚିନ୍ତାରେ ନିବିଷ୍ଟ ରହି ଅପୂର୍ଣ୍ଣ ନିର୍ଲିପ୍ତ ରହିବାକୁ ହୁଏ । ଏହା ଏକ ଆତ୍ମପ୍ରବଞ୍ଚନା ଓ ମାନସିକ ଶକ୍ତି ଛଡ଼ା ଅନ୍ୟ କିଛି ନୁହେଁ ।

ଯୌନ କ୍ରୀଡ଼ାରେ ରମଣୀ ୮।୧୦ ମିନିଟ ପର୍ଯ୍ୟନ୍ତ ପୁରୁଷର ସକ୍ରୀୟ ଯୌନ ସମ୍ଭୋଗ ପାଇଲେ ତା'ର ଚରମାନନ୍ଦ ଅସିଯାଏ । କିନ୍ତୁ ଏଥିରୁ ଅଧିକ ବିଳମ୍ବ ଘଟିଲେ ସେ ମନେ ମନେ ଅସ୍ୱସ୍ତି ବୋଧ କରେ ଏବଂ ଶ୍ରାନ୍ତ ଓ ବିରକ୍ତ ହୋଇ ରମଣ କାର୍ଯ୍ୟ ଶେଷ କରିବାକୁ ସ୍ୱାମୀକୁ ଅନୁରୋଧ କରେ । କେତେକ ଲୋକଙ୍କର ଧାରଣା ଅଛି ଯେ ନାରୀକୁ ବହୁବେଳ ଯାଏ ଯୌନସମ୍ଭୋଗ କଲେ ସେ ଖୁସି ହୁଏ, ମାତ୍ର ସେ ଧାରଣା ସମ୍ପୂର୍ଣ୍ଣ ଭୁଲ୍ । ବରଂ ଏଥିରେ କୌଣସି କୌଣସି କ୍ଷେତ୍ରରେ ପୁରୁଷ ଅପେକ୍ଷା ନାରୀର ଅଧିକ ଦେହ ମନ କ୍ଷତଗ୍ରସ୍ତ ହୁଏ । କିମ୍ବା ସେପରି ବିଳମ୍ବିତ ଯୌନ-ସମ୍ଭୋଗ କାରୀ ସ୍ୱାମୀ ପ୍ରତି ତା'ର ବିତୃଷ୍ଣା ଜନ୍ମିବାର ଅସମ୍ଭବ ନୁହେଁ ।

ପୂର୍ବେ ରାଜା ମହାରାଜାମାନେ ହୁଏତ ଏହି ଦୃଢ-ବୀର୍ଯ୍ୟ ମୈଥୁନ ପ୍ରଣାଳୀ ଦ୍ୱାରା ଏକାଦିକ୍ରମେ ବହୁଦାର ରମଣ କରି ପାରୁଥିଲେ । କିପରି ବିନା ଶୁକ୍ର କ୍ଷୟରେ ସ୍ତ୍ରୀ ସମ୍ଭୋଗକାର୍ଯ୍ୟ ହେବ ତାହା ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ତାଙ୍କର "ଜ୍ଞାନୀଗୁରୁ" ଓ "ବ୍ରହ୍ମଚର୍ଯ୍ୟ ସାଧନା" ପୁସ୍ତକରେ ଉଲ୍ଲେଖ କରିଛନ୍ତି । ତାହା ନିମ୍ନରେ ପ୍ରଦତ୍ତ ହେଲା ।

ସିଦ୍ଧାସନ ସାଧନା କଲେ ପୁରୁଷର ଦୃଢ-ବସ୍ତୁତ୍ୱ ଦୂରହୋଇ ଧାରଣାଶକ୍ତି ବଢ଼େ । ଏହା ଏ ପୁସ୍ତକର ଆସନ ଅଧିକରଣରେ ଦ୍ରଷ୍ଟବ୍ୟ ।





ତେଉ ହୋଇ ସେଇ ଦୁଇ ଗୋଡ଼କୁ ଦୁଇପାଖକୁ ଖୁବ୍ ମେଲାଇ ଦିଅନ୍ତୁ । ଏହି ଅବସ୍ଥାରେ ଗୁହ୍ୟ ମଳଦ୍ୱାରକୁ ବାରମ୍ବାର ଆକୁଞ୍ଚନ ଓ ପ୍ରସାରଣ କରନ୍ତୁ । ଏହାପରେ ପ୍ରାୟ ଅଧଘଣ୍ଟା ଲେଖାଏ ଦିନକୁ ତିନିଥର କରନ୍ତୁ ।

ସର୍ବଦା ପ୍ରସ୍ରାବ କରିବା ସମୟରେ ଏକଦମ୍ ଅଖଣ୍ଡଧାରରେ ପ୍ରସ୍ରାବ ନ କରି ମୂତକୁ ରଖି ରଖି ଛାଡ଼ନ୍ତୁ । ଅବଶ୍ୟ ପ୍ରଥମାବସ୍ଥାରେ ଏପରି କରିବାକୁ ଟିକିଏ କଷ୍ଟ ହେବ । କିନ୍ତୁ ପରେ ଅଭ୍ୟାସ ହୋଇଗଲେ ତାହା ଅତି ସହଜ ହୋଇଯିବ ।

ଉକ୍ତ ପ୍ରକାରରେ ପୁରୁଷ ଏବର୍ଷ ସାଧନା କଲେ ଶୁକ୍ର ଉପରେ ପୂର୍ଣ୍ଣ ନିୟନ୍ତ୍ରଣଶକ୍ତି ହାସଲ ହେବ ଓ ଶୁକ୍ରପାତ ସମ୍ପୂର୍ଣ୍ଣ ଇଚ୍ଛାଧୀନ ହୋଇଯିବ । ଅନ୍ତତଃ ଛମାସ ଅଭ୍ୟାସ କଲେ ଫଳ ବେଶ୍ ଅନୁଭବ କରି ହେବ । ଏକ୍ତ ସାଧନାକୁ ନିର୍ଦ୍ଦିଷ୍ଟ ସମୟ ଦେଇ ପୂର୍ଣ୍ଣଭାବେ ଅଭ୍ୟାସ ନ ପାଇଲେ ମଧ୍ୟ ଟେକେଟେକାଂଶରେ ଅଭ୍ୟାସ କରିବା ଫଳରେ ସ୍ୱପ୍ନଦୋଷ ଆଦି ସମ୍ପୂର୍ଣ୍ଣ ବନ୍ଦ ହୋଇ ଯାଇ ଥିବାର ଉଦାହରଣ ଦେଖା ଯାଏ ।

ଏହି ସାଧନା କିଛୁକାଳ ଅଭ୍ୟାସ କରିବା ପରେ ସହବାସ ସମୟରେ ମଝିରେ ମଝିରେ ଟିକିଏ ସ୍ଥିର ରହି ମଳଦ୍ୱାର ଆକୁଞ୍ଚନ ପ୍ରସାରଣ କ୍ରିୟା କିଛି ସମୟ କରି ନେଉଥିଲେ ଦୀର୍ଘ ସମୟ ବୀର୍ଯ୍ୟ ଧାରଣ କରି ହେବ । ଫଳରେ ସହବାସ ଦୀର୍ଘକାଳ ସ୍ଥାୟୀ ହୋଇ ପାରିବ, ଯେତେବେଳେ ଇଚ୍ଛାନୁସାରେ ବୀର୍ଯ୍ୟପାତ କରାଯାଇ ପାରେ ବା ନ ପାରେ ।

—○—



## ରୁଦ୍ଧବୀର୍ଯ୍ୟ ମୈଥୁନ ( Coitus Obstructus )

ସହବାସ ସମୟରେ ଠିକ୍ ବୀର୍ଯ୍ୟପାତ ହେଲାବେଳକୁ ଲିଙ୍ଗ ମୂଳକୁ ଅଙ୍ଗୁଠି ଦ୍ୱାରା ଚିପି ରଖିବାକୁ ହୁଏ । ଫଳରେ ଯୋନି ଭିତରେ ବୀର୍ଯ୍ୟପାତ ନ ହୋଇ ତାହା ମୂତ୍ରାଶୟର ମୂତ୍ରାଶୟକୁ ଫେରି ଯାଏ ଏବଂ ପରେ ପ୍ରସ୍ରାବ ସମୟରେ ତାହା ମୂତ୍ର ସହିତ ମିଶି ବାହାରି ଯାଏ ।

ଏ ପ୍ରଣାଳୀର ସୁବିଧା ଓ ଅସୁବିଧା ସବୁ ପୂର୍ବୋକ୍ତ ପ୍ରଣାଳୀ ପରି ।

---

## ନିରାପଦ କାଳ

ନାରୀର ଋତୁ ହେଲା ଦିନଠାରୁ ଷୋଡ଼ଶ ଦିନଯାଏ ଜରାୟୁ ଗର୍ଭଗ୍ରହଣ କରିବାର ଉପଯୁକ୍ତ ସମୟ । ତତ୍ପରେ ଯେତେ ସହବାସ କଲେ ମଧ୍ୟ ଆଉ ଗର୍ଭ ହେବାର ସମ୍ଭାବନା ନ ଥାଏ । ପୁଣି ଋତୁ ହେବାର ୨।୩ ଦିନ ପୂର୍ବ ସମୟଟି ଗର୍ଭ ଗ୍ରହଣ କରିବାର ଉପଯୁକ୍ତ ସମୟ । ମଧ୍ୟରେ ଯେ କେତେ ଦିନ ସମୟ ରହିଲା ତାହା ହେଉଛି ଯୌନ ସମ୍ଭୋଗର ନିରାପଦ ସମୟ । କିନ୍ତୁ ଏ କଥା ମଧ୍ୟ ପାଶ୍ଚାତ୍ୟ ଦେଶର ଶରୀର ବୈଜ୍ଞାନିକମାନେ ଅସ୍ୱୀକାର କରୁଅଛନ୍ତି । ସେମାନେ କହନ୍ତି, 'ନିରାପଦ ସମୟ ବୋଲି ନାରୀର କୌଣସି ଦିନ ନାହିଁ । କାମୁକ ଶ୍ରମଶୀଳା ନାରୀମାନଙ୍କର ନିରାପଦ ସମୟ ଆଦୌ ନାହିଁ ବୋଲି କହିଲେ ଚଳେ । ସେମାନଙ୍କୁ ଯେ କୌଣସି ଦିନ ସହବାସ କରି ଗର୍ଭ ଗ୍ରହଣ କରାଯାଇ ଥିବାର ପ୍ରମାଣ ମିଳିଅଛି । ସୁତରାଂ ଏପରି ପନ୍ଥା ଉପରେ ନିର୍ଭର କରିବା କୌଣସି ଦମ୍ପତିଙ୍କର ଠିକ୍ ନୁହେଁ ।







## ବ୍ରହ୍ମଚର୍ଯ୍ୟ ଦ୍ୱାରା ନିୟନ୍ତ୍ରଣ

ମୌଡବାଗୀଶମାନେ କହନ୍ତି ଯେ ଆକାଂକ୍ଷିତ ସନ୍ତାନ ଲାଭ ପରେ କୌଣସି ପ୍ରକାର କୃତ୍ରିମ ଉପାୟ ବା ଔଷଧାଦି ଜନ୍ମଘାତ ବ୍ୟବହାର ନ କରି ସ୍ୱାମୀ ସ୍ତ୍ରୀ ଉଭୟ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ ଦ୍ୱାରା ଜନ୍ମନିୟନ୍ତ୍ରଣ କରିବା ଉଚିତ । କିନ୍ତୁ ସ୍ୱାଭାବିକ ସମ୍ଭୋଗ ଶକ୍ତି ଓ କାମ ବାସନା ଥାଇ ଏକାଦିକ୍ରମେ ୨୦।୨୫ ବର୍ଷକାଳ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ରହି ପାରିବେ, ଏପରି ସୁସ୍ଥ ସବଳ ବ୍ୟକ୍ତି ପୃଥିବୀରେ ଅତି ଅଳ୍ପ ।

ବର୍ଷ ବର୍ଷ ବ୍ୟାପି କଠୋର ତପସ୍ୟାରେ ରତ ଥାଇ ହୃଦୟର କାମବାସନା ଓ ଷଡ଼ରିପୁଙ୍କୁ ଆୟତ୍ତ କରି ମଧ୍ୟ ପୂର୍ବ କାଳର ମୁନି ଋଷିମାନେ ନାରୀର ମୋହିନୀ ମୂର୍ତ୍ତି ଦର୍ଶନରେ ବିହ୍ୱଳ ହୋଇ ପଡ଼ିଛନ୍ତି । ପୁଣି ସେମାନଙ୍କର ଶୁଷ୍କ ପ୍ରାୟ ପ୍ରବୃତ୍ତି ଜାଗି ଉଠି ଉଦ୍ଦାମ୍ୟ କାମ-ଉତ୍ତେଜନାରେ ସେମାନେ ମାତିଉଠି ସ୍ତ୍ରୀ ସମ୍ଭୋଗ କରିଛନ୍ତି । ବିଶ୍ୱାମିତ୍ର ଓ ପରାଶରାଦି ଋଷିମାନେ ଏହାର ଜ୍ୱଳନ୍ତ ଉଦାହରଣ ।

ଯେ ପୁରୁଷ ହେଉ ବା ନାରୀ ହେଉ ଯୌନ ସମ୍ଭୋଗର ଆସ୍ୱାଦ ପାଇ ନଥିବା ପର୍ଯ୍ୟନ୍ତ ସେ ବ୍ରହ୍ମଚର୍ଯ୍ୟ ରକ୍ଷିବାକୁ ସକ୍ଷମ ହୋଇପାରେ । କିନ୍ତୁ ଥରେ ଏହା ପାଇଲେ ସେ ଆଉ ବ୍ରହ୍ମଚାରୀ ବା ବ୍ରହ୍ମଚାରିଣୀ ହୋଇ ରହିବା ସହଜସାଧ୍ୟ ନୁହେଁ । ପ୍ରକୃତରେ କହିବାକୁ ଗଲେ ଯେଉଁ ସବୁ ମୌଡବାଗୀଶମାନେ ବୃଦ୍ଧ ବୟସରେ ଏ ସବୁ ଉପଦେଶ ଦିଅନ୍ତି ସେମାନଙ୍କ ଭିତରୁ ଅଧିକାଂଶ ଯୁବାକାଳରେ ଯୌନସୁଖ ଭୋଗର ଶେଷ ସୀମାକୁ ଯାଇ ଅଛନ୍ତି । ସେମାନେ ଯୌବନ କାଳରେ ନିଜର ପାଶବିକ ଯୌନ ପ୍ରବୃତ୍ତିକୁ



ଏପରି ଭାବରେ ଚିନ୍ତା କରନ୍ତି ଯେ, ଶେଷ ବୟସରେ ସେଥି ପ୍ରତି ସେମାନଙ୍କ ବିତୃଷ୍ଣା ଆସି ଯାଇଛି ଏବଂ ଅତିରିକ୍ତ ଯୌନ ସମ୍ଭୋଗର ବିଷମୟ ପ୍ରତିକ୍ରିୟା ସେମାନଙ୍କୁ ବାଧ୍ୟ କରାଇ ବ୍ରହ୍ମଚର୍ଯ୍ୟ କରାଇ ଅଛି । ଯେପରି ପ୍ରଥମ ବୟସରେ ଅତିରିକ୍ତ ମାଛ ମାଂସ ଖାଇଲେ ଶେଷ ବୟସରେ ସେଥିପ୍ରତି ସେମାନଙ୍କର ବିତୃଷ୍ଣା ଆସେ । ସେହିମାନେ ହରିନାମର ଟିକା କାଟି, ତୁଳସିମାଳ ବେକରେ ଲମ୍ବାଇ 'ବଗଡ଼ ବୈଷ୍ଣବ' ସାଜନ୍ତି ।

ବିବାହିତ ଜୀବନରେ ଅଧିକ ଦିନ କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କଲେ କ୍ଷତି ଛଡ଼ା ଲାଭ ହୁଏ ନାହିଁ । ପ୍ରଥମରେ ଦୀର୍ଘକାଳ ସମ୍ଭୋଗରୁ ବିରତ ହେବା ଫଳରୁ କ୍ରମଶଃ ସମ୍ଭୋଗ କ୍ଷମତା ହ୍ରାସ ପାଇବାକୁ ଲାଗେ । କ୍ରମଗତ ସ୍ୱପ୍ନଦୋଷ ଘଟି ଧାତୁ ଦୌର୍ବଲ୍ୟ ମଧ୍ୟ ଦେଖାଯାଏ । ତତ୍ପରେ ତାହା ସ୍ଥାୟୀ ଧ୍ୱଜଭଙ୍ଗରେ ପରିଣତ ହୁଏ । ଫଳରେ ଏମାନେ ଆଳସ୍ୟ ପରାୟଣ ଓ ଅକର୍ମଣ୍ୟ ହୋଇଯାନ୍ତି । ସେମାନଙ୍କର ମୁଖ ଲାବଣ୍ୟହୀନ; ଖିଟିଖିଟିଆ ମିଜାଜ, ଛାତି ଧଡ଼ପଡ଼ ( Palpitation of heart ); ଅତିରିକ୍ତ ନିର୍ଜନ ପ୍ରିୟତା, ଅସମ୍ଭବ କଳ୍ପନା-ବିଳାସୀ, ଏକଜିଦିଆ ଅଭ୍ୟାସ ହୋଇଯାଏ ।

ସ୍ୱାସ୍ଥ୍ୟବତୀ ଯୁବତୀ ବା ପୌଢ଼ା ସ୍ତ୍ରୀମାନେ ସେମାନଙ୍କର ସ୍ୱାମୀର ଏପରି ସ୍ୱେଚ୍ଛାକୃତ ବ୍ରତାଚାର ଦେଖି, ମୁହଁରେ କିଛି ନ କହିଲେ ସୁଦ୍ଧା, ମନେ ମନେ ଅସନ୍ତୁଷ୍ଟା ହୋଇ ଉଠନ୍ତି । କେହି ମଧ୍ୟ ସ୍ପଷ୍ଟଭାବରେ ବିଦ୍ରୋହ ଘୋଷଣା କରନ୍ତି । ଏହା ଦ୍ୱାରା ସ୍ତ୍ରୀଲୋକମାନଙ୍କର ମନରେ ଶାନ୍ତି ନଷ୍ଟ ହୁଏ । ଫଳ ସ୍ୱରୂପ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଅଶାନ୍ତି ଉପୁଜେ । ଘରକରଣାରେ ବଡ଼ ବାଧା ଘଟେ ।





ଏକାଦକ୍ରମେ ବହୁଦନ ସ୍ତ୍ରୀ ସଙ୍ଗମ ନ କଲେ ପୁରୁଷର ଏକପ୍ରକାର ଯୌନ ଶିଥିଳତା ଘଟେ । କେଳ୍ ତା ସ୍ୱଳ୍ପ ହେବରୁ ଫେର ଅନେକ ସୁସ୍ଥ ଓ ସବଳ ପୁରୁଷ ପ୍ରଥମ-ସ୍ତ୍ରୀ-ସମ୍ଭୋଗକରିବାକୁ ଅସମର୍ଥ ହୁଅନ୍ତି ଏବଂ ଶତଚେଷ୍ଟା କରି ମଧ ଇନ୍ଦ୍ରିୟ ଶକ୍ତିକୁ ଜାଗ୍ରତ କରି ପାରନ୍ତି ନାହିଁ । ଅଧିକର ମଧ ମନର ଜାଗ୍ରତ କାମଭାବକୁ ଗୁପ୍ତ ରଖି ବହୁତ ଦନ ସ୍ତ୍ରୀ ସଙ୍ଗମରୁ ବିରତ ହେଲେ ଅନେକ ଲୋକଙ୍କର ସଂସାର ପ୍ରତି ଉଦାସୀନତା ବା ବିତୃଷ୍ଣା, ଅନିଦ୍ରା, ମୂର୍ଚ୍ଛା,ଶିରରୋଗ, ମୂତ୍ରରୋଗ, ହଜମ ଶକ୍ତିର ଅଭାବ, ମେଦବୃଦ୍ଧି, ବୁଦ୍ଧିବୃତ୍ତିର ଜଡ଼ତା, କୌଣସି ବିଷୟ ଭାବିବାକୁ ଅକ୍ଷମତା ପ୍ରଭୃତି ଦୁରାରୋଗ୍ୟ ବ୍ୟାଧି ସ୍ତ୍ରୀ ପୁରୁଷ ଉଭୟଙ୍କ ଠାରେ ଦେଖା ଯାଇଥାଏ ।



## ଗର୍ଭ ନିୟନ୍ତ୍ରଣର ଦେଶୀୟ ପ୍ରକ୍ରିୟାବଳି

ପୂର୍ବକାଳରେ ଜନସଂଖ୍ୟା ବୃଦ୍ଧିର ପ୍ରଶ୍ନ ଉଠି ନଥିବାରୁ ଗର୍ଭ ନିରୋଧର କୌଣସି ଅଗ୍ରହ ବା ଆବଶ୍ୟକତା ନ ଥିଲା । ତଥାପି ନର୍ତ୍ତକୀ, ବିଧବା, ଅବିବାହିତା ଯୁବତୀ, ବେଶ୍ୟା, ଦୁଷ୍ଟରୋଗା ରମଣୀ, ଏବଂ ଉଚ୍ଚ ଶ୍ରେଣୀର ବିଳାସିନୀମାନଙ୍କ ଭିତରେ ଏ ପ୍ରଥା ଅଳ୍ପାଧିକ ଭାବରେ ପ୍ରଚଳିତ ଥିଲା । କନ୍ଦରେ କେତେକ ଶାସ୍ତ୍ରାନୁମୋଦିତ ଦ୍ରବ୍ୟ-ଗୁଣର ବିଧି ବ୍ୟବସ୍ଥା ଶ୍ଳୋକାକାରରେ ଦିଆଗଲା । ଏଥିମଧ୍ୟରୁ କେତେ ସ୍ଥାୟୀ ଓ କେତେକ ଅସ୍ଥାୟୀ ଗର୍ଭନିରୋଧକ ଅଟେ ।

( ୧ ) ହାରିଦ୍ରାଗ୍ରନ୍ଥି ମେତକିଂ ପ୍ରତ୍ୟେହଂ ଉପଯୋଦ ଯଦ ।
ରଜୋଧର୍ମସମାଯୁକ୍ତା ବନ୍ଧ୍ୟା ଷଡ଼ଭିଧନୈରବେତ୍ ॥



ସରଳାର୍ଥ—ଋତୁର ଛଅଦିନ ଗଣ୍ଠି ହଳଦ ଗୋଟିଏ ଗଣ୍ଠି ବାଟିକରି ଧାରବାହିକ ଭାବରେ ଖାଇଲେ ସ୍ତ୍ରୀ ବନ୍ଧ୍ୟା ହୋଇଥାଏ ।

(୨) ସେହୁଣ୍ଡ଼କଂ ସମାଦାୟ ଗ୍ଲପ୍ୟା ଶୁଷ୍କଂ ତୁ କାରୟେତ୍ ।
ପ୍ରଦାହ୍ୟ ବହ୍ନୌ ନା ତଂ ଚ କଣ୍ଟମାଷଂ ଚ ନିତ୍ୟଶଃ ।
ଏକବିଂଶତ୍ୟହାନ୍ୟେତଦ୍ ଭକ୍ଷୟେତ୍ ନୂତନା ସହ ।
ଅଜନ୍ମ ବନ୍ଧ୍ୟା ଭବତି ରୋଗକ୍ଲେଶ ବିବର୍ଜିତା

ଅର୍ଥାତ୍—ମନସା ଡାଳ ଶ୍ରେଷ୍ଠ ଶ୍ରେଷ୍ଠ ଖଣ୍ଡ କରି ଗ୍ଲପ୍ୟାରେ ଶୁଖାଇ ନିଆଁରେ ପୋଡ଼ାଇ ନେଇ ଚୂର୍ଣ୍ଣ କରିବ । ଏହି ଚୂର୍ଣ୍ଣକୁ ଏକଅଣାଠାରୁ ଦୁଇଅଣା ସହ ଶାଠିଏଠାରୁ ଶହେ କୋଡ଼ିଏ ବିନ୍ଦୁ ମହୁ ସହିତ ୨୧ ଦିନ ସେବନ କଲେ ନାରୀର ଗର୍ଭ ନିରୋଧ ଅର୍ଥାତ୍ ବନ୍ଧ୍ୟା ହୁଏ ଏବଂ କୌଣସି ପ୍ରକାର ରୋଗ ତାକୁ ଭୋଗ କରିବାକୁ ପଡ଼େ ନାହିଁ ।

(୩) ସିଦ୍ଧାର୍ଥ ମୂଳଂ ଶିଅସି ବଦ୍ଧ୍ୱା କାନ୍ତାଂ ରମେତ୍ ଯା ।
ନ ଗର୍ଭଃ ଧାରୟେତ୍ ସା ସ୍ତ୍ରୀ ମୁକ୍ତେନ ଲଭତେ ପୁନଃ ।

ଅର୍ଥାତ୍—ଶ୍ୱେତ ଶୋରିଷର ମୂଳ ମୁଣ୍ଡର ବାଳ ସହିତ ବାନ୍ଧି, ଯେଉଁ ସ୍ତ୍ରୀକୁ ରମଣ କରାଯାଏ ସେ ସ୍ତ୍ରୀର ଗର୍ଭ ହୁଏ ନାହିଁ, କିନ୍ତୁ ସେହି ମୂଳ ମୁଣ୍ଡରୁ କାଢ଼ି ରମଣ କଲେ ଗର୍ଭବତୀ ହୁଏ ।

(୪) ପିପ୍ପଳୀ ବିଡଙ୍ଗ-ଟଙ୍କଣ ସମଚୂର୍ଣ୍ଣଂ ଯା ପିବେତ୍ ପୟସା ।
ଋତୁ କାଲେ ନହି ତସ୍ୟା ଗର୍ଭ ସଂଜାୟତେ କ୍ୱାପି ।

ଅର୍ଥାତ୍—ଶ୍ରେଷ୍ଠ ପିପ୍ପଳୀ ଓ ଟାଙ୍କଣାର ଖଇ ପ୍ରତ୍ୟେକ ଏକଅଣା ମାତ୍ରାରେ ସମ ପରିମାଣ ଦୁଧ ସହିତ ବାଟି ପିଇବାକ





ଷୋଳଦିନ ପର୍ଯ୍ୟନ୍ତ ପାନକଲେ ସେ ସ୍ତ୍ରୀର ଗର୍ଭ ନିଯ୍ଯନ୍ତ୍ରଣ ହୋଇଥାଏ ।

(୫) ହସ୍ତେ ଚଷୃାକଲଂ ଗ୍ରାହ୍ୟଂ କର୍ଷମାନଂ ପ୍ରମାଣତଃ ।
ଦିନାନ୍ନି ସପ୍ତ ମଧୁନା ପିବେତ୍ ବନ୍ଧ୍ୟାତ୍ୱ ସିଦ୍ଧୟେ ॥

ଶୁକ୍ଳ ଅଶ୍ୱିନୀ ନକ୍ଷତ୍ରର ଜଳ ହସ୍ତୀ ନକ୍ଷତ୍ରରୁ ସଂଗ୍ରହକରି ସେଥିରେ ସମାନ ପରିମାଣରେ ମହୁ ମିଶ୍ରିତ କରି ଋତୁ ସମୟରେ ସାତ ଦିନ ସେବନ କଲେ ସ୍ତ୍ରୀର ବନ୍ଧ୍ୟାତ୍ୱ ଜନ୍ମିଥାଏ ।

(୬) ଅରନାଳଂ ପରିପେଷିତ ବ୍ୟହଂ ।
ଯା ଜପ୍ୟା କୁସୁମଞ୍ଚ ପୁଷ୍ପିଣୀ ॥
ସଞ୍ଚ ପୁରାଣ ଗୁଡ଼ମୁଷ୍ଟି ସେବନ୍ତ ।
ସଲଧାତ ନହି ଗର୍ଭମଙ୍ଗନା ॥

ଋତୁମତୀ ନାରୀକୁ ଜପ୍ୟା ଫୁଲକୁ କାଞ୍ଜି ପାଣିରେ ବାଟି ପୁରୁଣା ଗୁଡ଼ ସହ ସମଗ୍ର ଦ୍ରବ୍ୟ ତିନିତୋଳା ମାତ୍ରାରେ ସେବନ କରାଇଲେ ସେ ସ୍ତ୍ରୀର ଗର୍ଭସଂଚାର ହେବାର ସମ୍ଭାବନା ରହେ ନାହିଁ ।

(୭) ଗ୍ରାହ୍ୟଂ କୃଷ୍ଣଚତୁର୍ଦ୍ଦଶ୍ୟାଂ ଧୁସ୍ତୁରସ୍ୟ ତୁ ମୂଳକଂ ।
କଟ୍ୟାଂ ବଦ୍ଧ୍ୟା ରମେତ୍ କାନ୍ତାଂ ନ ଗର୍ଭଂ ଧାରୟେତ୍ କ୍ୱଚିତ୍ ॥
ମୁକ୍ତେନ ଲଭତେ ଗର୍ଭଂ ଦୂରି ନାଗାର୍ଜ୍ଜୁନୋଦିତଂ ।
ତନ୍ମୂଳ ଚୂର୍ଣ୍ଣଂ ଯୋନିସ୍ଥଂ ନ ଗର୍ଭଂ ଧାରୟେତ୍ କ୍ୱଚିତ୍ ।

ଅର୍ଥାତ୍—ଯେଉଁ ପୁରୁଷ ଦୁତୁରା ମୂଳକୁ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିରେ ସଂଗ୍ରହ କରି, ଅଣ୍ଟାରେ ବାନ୍ଧି ସ୍ତ୍ରୀ ରମଣ କରେ ସେ ସ୍ତ୍ରୀର ଗର୍ଭ ହୁଏ ନାହିଁ ଏବଂ ତାହା ପରିତ୍ୟାଗ କରି ରମଣକଲେ ଗର୍ଭସଂଚାର



ହୁଏ । ଅତ୍ଯନ୍ତ ମଧ୍ୟ ଧୂତୁରା ମୂଳକୁ ଚୂର୍ଣ୍ଣକରି ଯୋନି ମଧ୍ୟରେ ସ୍ଥାପନ କରି ରମଣ କଲେ ସେ ଗର୍ଭବତୀ ହେବ ନାହିଁ ।

(୮) ତୃଷତୋୟେନ ସଂଭାଷ୍ୟ ମଲ୍ଲମଗ୍ନିଜରୁଦ୍ଭବମ୍ ।
ପୁଷ୍ପାବସାନେ ତ୍ରିଦିନ ପୀତ୍ୱା ବନ୍ଧ୍ୟାଭିଜାୟତେ ॥

ଋତୁସ୍ରାବ ବନ୍ଦ ହେବାର ୩ଦିନ ଲଗେ ଲଗେ ଚକ୍ରଚତା ମୂଳ ତୃଷଧୂଅ ପାଣିରେ 'ଭଲ୍ଲରଙ୍କମ ବାଟି ପାନକଲେ ସେ ସ୍ତ୍ରୀ ବନ୍ଧ୍ୟାତ୍ୱ ଲାଭ କରିଥାଏ ।

(୯) ରତ୍ୟାରମ୍ଭେ ରତାନ୍ତେ ପୁଂସା ସୁରତାନ୍ତେ ସୁଧାକରଃ ।
ଅନେନ କ୍ରମଯୋଗେନ ନାଦତ୍ତେ ଦେବ ଦଣ୍ଡକ ॥

ଅର୍ଥାତ୍—ସ୍ତ୍ରୀରମଣ ଆରମ୍ଭରେ ପୁରୁଷର ଦକ୍ଷିଣ ନାସାରେ ଏବଂ ରମଣ କାର୍ଯ୍ୟ ଶେଷରେ ବାମ ନାସାରେ ଶ୍ୱାସ ବହନ ହୁଏ ଏବଂ ତାହା ଯଦି ଋତୁକାଳୀନ ( ଋତୁରକ୍ଷା ) ସହକାରେ ହୋଇଥାଏ ତେବେ ସେ ଋତୁରେ ସ୍ତ୍ରୀର ଗର୍ଭସଞ୍ଚାର ହୁଏ ନାହିଁ ।

(୧୦) ଗୁଡ଼ଂ ଜୈର୍ଣ୍ଣାଧ୍ୟୁନଂ ଖାଦେତ୍ ପଲମାତ୍ରନ୍ତୁ ନିତ୍ୟଶଃ ।
ମାସାର୍ଦ୍ଧଂ ସା ଭବେଦ୍‌ବନ୍ଧ୍ୟା ଯାବଦାୟୁର୍ନ ସଂଶୟଃ ॥

ଦୁଇରୁ ଗୁଡ଼ ତୋଳା ପରମାଣରେ ୩ ବର୍ଷର ପୁରୁଣା ଗୁଡ଼ ଋତୁ ଆରମ୍ଭ ଦିନଠାରୁ ୧୫ ଦିନ ପର୍ଯ୍ୟନ୍ତ ଯଦି ଖିଆଯାଏ ତେବେ, ରମଣୀର ସବୁ ଦିନପାଇଁ ଗର୍ଭ ନିରୋଧ ହୋଇଥାଏ ।

(୧୧) ଚନ୍ଦନଂ ସର୍ଜ୍ଜପଞ୍ଚୈବ ଶର୍କରା ସମଭାଗତଃ ।
ପୀତ୍ୱା ତଣ୍ଡୁଲତୋୟେନ ଗମାରକ୍ତଂ ବିନଶ୍ୟତି ॥

ଚୋରକ୍ଷି ସହିତ ଚନ୍ଦନ, ଯୋବକ୍ଷ ଓ ଚିନି ପ୍ରତ୍ୟେକର ଏକ ଅଂଶ ଓଜନରେ ମିଶାଇ ଖାଇଲେ ସ୍ତ୍ରୀମାନଙ୍କର ଶୋଣିତ ନଷ୍ଟ ହୋଇଥାଏ ।

( ୧୨ ) ଏରଣ୍ଡବୀଜଂ ଋତ୍ୱନ୍ତେ ଭୁକ୍ତଂ ସ୍ତମ୍ଭନ ଗର୍ଭକମ୍ ।
ଧୂସ୍ତୁରମୂଳଂ କଟ୍ୟାଂ ବଦ୍ଧ୍ୱା ଗର୍ଭ ସ୍ତମ୍ଭକଂ ପରମ୍ ॥
ଧୂସ୍ତୁରମୂଳଚୂର୍ଣ୍ଣେନ ଯୋନିସ୍ଥଂ ଗର୍ଭସ୍ତମ୍ଭକମ୍ ।
ତଣ୍ଡୁଲୀ ମୂଳ ତୋୟେନ ଦେୟଂ ତଣ୍ଡୁଳ ବାବଣୀଂ ॥
ଧୂପତୋ ଯୋନିରନ୍ଧ୍ରେ ତୁ ନିମ୍ବ କାଷ୍ଠେନ ଯୁକ୍ତିତଃ ।
ଋତ୍ୱନ୍ତେ ଦୀୟତେ ତସ୍ୟ ଗର୍ଭଦୁଃଖ ବବର୍ଜ୍ଜିତଂ ॥

ଅର୍ଥ ମନ୍ତ୍ରଃ ।—ଓଁ ଗର୍ଭଂ ସ୍ତମ୍ଭୟ ସମ୍ଭୟ ସ୍ୱାହା । ଅଷ୍ଟୋତ୍ତର ଶତ ଜପେନ ସିଦ୍ଧଃ ।

ସରଳାର୍ଥ—ଋତୁସ୍ନାନ ପରେ ଗଇମଞ୍ଜି ଖାଇଲେ, ଧୂତୁରା ମୂଳ କଟିରେ ଧାରଣ କଲେ, ଧୂତୁରାମୂଳ ଚୂର୍ଣ୍ଣକରି ଯୋନି ଦେଶରେ ସନ୍ନିବେଶ କଲେ, ଚମ୍ପାନେଉଟିଆ ମୂଳର ରସ ସହିତ ଗୁଡ଼ଳଧୂଆ ପାଣି ମିଶାଇ ଯୋନି ଗହ୍ୱର ଧୌତ କଲେ ଏବଂ ଯୋନିରନ୍ଧ୍ରରେ ନିମ୍ବ କାଠର ଧୂପ ଦେଲେ ସେ ସ୍ତ୍ରୀର ଗର୍ଭ ହୁଏ ନାହିଁ । ଆଉ ମଧ୍ୟ ଉପରୋକ୍ତ ମନ୍ତ୍ରଟି ୧୦୮ ଥର ଜପିଲେ ଗର୍ଭନିରୋଧ ହୋଇଥାଏ ।

( ୧୩ ) ଋତୁସ୍ନାନ ପରେ ଶୋଧିତ ହେଙ୍ଗୁ ୪।୬ ଗ୍ରେନ୍ ମାତ୍ରାରେ ପାଚିଲା କଦଳୀ ଭିତରେ ପୁରାଇ ତିନି ଦିନ ପର୍ଯ୍ୟନ୍ତ ଖାଇଲେ ସେ ସ୍ତ୍ରୀର ଗର୍ଭସଞ୍ଚାର ହେବାର ଆଉ ସମ୍ଭାବନା ନଥାଏ ।

(୧୪) ଗୁଡ଼ଅଣ ଓଜନ ପନ ଗଛର ମୂଳ କମ୍ବା ଏକଇଞ୍ଚ ନମ୍ବର ମୂଳ ସହିତ ଅଳ୍ପେକଟା ଗୋଲମରିଚ ପେଷଣ କରି ଋତୁସ୍ନାନ ପରେ



ଦ ଓ ନ ସେବନ କଲେ ଆଉ ଗର୍ଭ ହୁଏ ନାହିଁ । ଏହି ପ୍ରକ୍ରିୟା ପର ପର ଛଅଗୋଟି ଋତୁ ସମୟରେ ବ୍ୟବହାର କରିବା କର୍ତ୍ତବ୍ୟ ।

—*—

## ଡାକ୍ତର ମତରେ ଗର୍ଭ ନିୟନ୍ତ୍ରଣର ଔଷଧାବଳୀ

ଆଜକାଲି ଡାକ୍ତରୀ ମତରେ କେତେକ ଔଷଧ ବାହାରିଛି । ଯାହାକି ସ୍ୱାମୀ ସଙ୍ଗମର ପୂର୍ବରୁ ବା ପରେ ଯୋନି ଭିତରେ କିମ୍ବା ଜରାୟୁ ମୁଖରେ ପ୍ରୟୋଗ କଲେ ଶୁକ୍ରକୀଟ ଗୁଡ଼ିକ ଦୁର୍ବଳ ହୋଇ ମରିଯାନ୍ତି । ତାହା ନିମ୍ନରେ ଦିଆଗଲା । କିନ୍ତୁ ଏଗୁଡ଼ିକ ବ୍ୟବହାର କରିବା ପୂର୍ବରୁ ଡାକ୍ତରଙ୍କ ପରାମର୍ଶ ନେବା ଉଚିତ, ନଚେତ୍ ଭଲ କରୁ କରୁ ଭେଲ ହୁଏ ।

( ୧ ) କୁଇନାଇନ୍ ଗୋଟିଏ ଶକ୍ତିଶାଳୀ ଶୁକ୍ରକୀଟ ନାଶକ ଔଷଧ ବୋଲି ଡାକ୍ତରମାନଙ୍କର ମତ । ଇଂଲଣ୍ଡ ଓ ଆମେରିକାର ଗର୍ଭ-ନିରୋଧ ପାଇଁ ଯେଉଁ ସବୁ ଔଷଧମାନ ବିକ୍ରୀ ହୁଏ ତହିଁର ଅଧିକାଂଶ ଭାଗ କୁଇନାଇନ କମ୍ପାଉଣ୍ଡ ମିଶ୍ରିତ ।

( ୨ ) କୁଇନାଇନ ମଲମ—ଭେସିଲିନ ବା କୌଣସି ପ୍ରକାର ତୈଳାକ୍ତ ପଦାର୍ଥ ସହିତ ମଲମ ପ୍ରସ୍ତୁତକରି ବ୍ୟବହାର କରାଯାଇ ପାରେ । ଏହି ମଲମକୁ ପେସାରି ( Pessary ), ଅର୍ଥାତ୍ ଜରାୟୁ-ଦୋଟି ଦେହରେ ବୋଲି ଗର୍ଭ ନିରୋଧ କରାଯାଇ ପାରେ । ମଲମ ପ୍ରସ୍ତୁତ ପ୍ରଣାଳୀ ନିମ୍ନରେ ଦିଆଗଲା ।

| | |
|---|---|
| କୁଇନାଇନ୍ ହାଇଡ୍ରୋକ୍ଲୋର ବା ହାଇପୋକ୍ଲୋର | ୧ ଡ୍ରାମ |
| ଲେନୋଲିନ | ୧ ,, |
| ସାଦା ଭେସଲିନ | ୧ ଆଉନ୍ସ |





ଚନ୍ଦନ, ହେନା, ଗୋଲାପ ପ୍ରଭୃତ ଯେ କୌଣସି ଅତର ୫ ବନ୍ଦୁ ଉପରୋକ୍ତ ପଦାର୍ଥ ଗୁଡ଼ିକ ଏକତ୍ର ମିଳାଇ ନେଇ ୪୦।୫୦ ଥର ବ୍ୟବହାର କରାଯାଇ ପାରେ ।

( ୩ ) ଗୁଣ୍ଡ କୁଇନାଇନ୍—କେତେକ ସ୍ତ୍ରୀ ଏହା ଗୁଣ୍ଡ କୁଇନାଇନକୁ ପାଣିରେ ମିଶାଇ ସ୍ୱାମୀ ସହବାସର ଠିକ୍ ପୂର୍ବରୁ ଯୋନି ଗହ୍ୱରକୁ ଧୋଇ ଦିଅନ୍ତି । କିନ୍ତୁ ଏହାର ପ୍ରକୃତ ଭାଗ ହେଉଛି ୯ ଆଉନ୍ସ ପାଣି ସହିତ ୧୫ ବା ୨୦ ଗ୍ରେନ୍ କୁଇନାଇନ ମିଶାଇ ବ୍ୟବହାର କରିବାକୁ ହୁଏ ।

( ୪ ) କୁଇନାଇନ ବଟିକା ବା ବଲତା—ଏହା ଦେଖିବାକୁ ପାଣି ଫଳପର ଚେପ୍ଟା ବଟିକା ବା ପେନ୍‌ସିଲ ଅଗପରି ସରୁ ଖଣ୍ଡମାନ । ପ୍ରତଥର ସ୍ୱାମୀର ସହବାସର ୧.୫ ମିନିଟ ଆଗରୁ ଗୋଟିଏ ନେଇ ଯୋନି ଗହ୍ୱରରେ ପ୍ରବେଶ କରାଇ ଦେଲେ କିଛିକ୍ଷଣ ପରେ ଏହା ଫେନିଳପିଚ୍ଛିଳ ତରଳ ପଦାର୍ଥରେ ପରିଣତ ହୋଇଯାଏ । ଶୁକ୍ର କୀଟକୁ ଧ୍ୱଂସ କରିବାକୁ ୧୦।୧୨ ମିନିଟ୍ ଲାଗେ । କିନ୍ତୁ ମନେ ରଖିବାକୁ ହେବ ଯେ କୁଇନାଇନର ପରିମାଣ କମିଗଲେ ଉଦ୍ଦେଶ୍ୟ ସଫଳ ହୁଏ ନାହିଁ କିମ୍ବା ଅଧିକ ହେଲେ ଯୋନିପ୍ରଣାଳୀ ଭିତରେ ଯନ୍ତ୍ରଣା ଅନୁଭୂତ ହୁଏ ।

ଯେ ଯାହାହେଉ, ନବବିବାହିତା ଯୁବକ ଯୁବତୀମାନଙ୍କର ପୁରୁଷାଙ୍ଗ ଓ ଯୋନି ପ୍ରଣାଳୀ ଅତ୍ୟନ୍ତ କୋମଳ । ସେମାନଙ୍କ ପକ୍ଷରେ କୁଇନାଇନ ଭଳି ଝାଳାକ୍ତ ପଦାର୍ଥ ବ୍ୟବହାର କରିବା ଆଦୌ ଉଚିତ ନୁହେଁ ।



(୪) ଜରାୟୁ ଦେହରେ ଗ୍ଲିସେରିନ୍ ବା ଆଇଓଡ଼ିନ୍ ପ୍ରୟୋଗ—ଏହାର ପ୍ରଚଳନ ଋଷିଆ ଓ ଜର୍ମାନୀରେ ବହୁଳ ଦେଖାଯାଏ । ଖଣ୍ଡିଏ କାଠି ଅଗରେ ସଫା ତୁଳା ବା କନା ଗୁଡ଼ାଇ ସେଥିରେ ଗ୍ଲିସେରିନ୍ ବା ଆଇଓଡ଼ିନ୍ ଲଗାଇ ଦିଆଯାଏ । ପ୍ରତି ଋତୁସ୍ରାବ ପରେ ଯୋନି ଭିତରେ ଏହାକୁ ଲଗାଇ ଦିଆଯାଏ । ସେ ମାସରେ ଆଉ ଗର୍ଭଧାରଣାର ସମ୍ଭାବନା ରହେ ନାହିଁ । କିନ୍ତୁ ଏ ପ୍ରଥା ନିରାପଦ ନୁହେଁ, ବରଂ ବିପଦଜନକ ।

(୫) ଫଟିକିରିର ଶୁକ୍ରକୀଟ ନାଶ କରିବାରେ ଯଥେଷ୍ଟ ଶକ୍ତି ରହିଛି । ଏହାକୁ ଭଲକରି ଚୂର୍ଣ୍ଣକରି କପଡ଼ାଛଣା କରି ନେଇ ଗ୍ରୁ ଗ୍ରାମଟରେ ଦୁଇଗ୍ରାମର ଚୂର୍ଣ୍ଣରେ ୩ ଡ୍ରାମ ବୋରିକ୍‌ପାଉଡ଼ର ଅଳ୍ପ ଗରମ ପାଣିରେ ମିଶାଇବ । ତାହା ଥଣ୍ଡା ହୋଇଗଲେ ଠିକ୍ ସ୍ୱାମୀ ସହବାସ ପରେ ଏନିମା ସାହାଯ୍ୟରେ ଯୋନିଗହ୍ୱରକୁ ଧୋଇଦେବ । କିନ୍ତୁ ଏହି ପାଣି ୩।୪ ମିନିଟ୍ କାଳ ଯୋନି ମଧ୍ୟରେ ରହିବା ଦରକାର । ଫଟିକିରି ଯୋନିରେ କଣ୍ଡୁୟନ ଦୂରକରେ । ଅତ୍ୟଧିକ ସହବାସ ଫଳରୁ ବା ବହୁ ସନ୍ତାନ ପ୍ରସବ ଫଳରୁ ଯେଉଁ ସ୍ତ୍ରୀଲୋକମାନଙ୍କର ଯୋନିନାଳି ଢିଲା ହୋଇ ଯାଇଅଛି, ସେମାନେ ଫଟିକିରିର ସୂକ୍ଷ୍ମ ଚୂର୍ଣ୍ଣ ଯୋନିନାଳୀରେ ପ୍ରୟୋଗ କଲେ କିମ୍ବା ଫଟିକିରି ଓ ବୋରିକ ମିଶ୍ରିତ ଜଳରେ ଡୁସ୍ ନେଲେ ଅଳ୍ପ ଦିନ ଭିତରେ ଯୋନିନାଳି ସଙ୍କୀର୍ଣ୍ଣ ହୋଇ ଆସେ । ଏକଥା ମନେ ରଖିବାକୁ ହେବ ସେ ଫଟିକିରିକୁ ସୂକ୍ଷ୍ମ ଭାବରେ ଚୂର୍ଣ୍ଣ ନ କରି ଖଣ୍ଡ ଖଣ୍ଡ ଅବସ୍ଥାରେ ବ୍ୟବହାର କଲେ ଯୋନିପଥ ଛିନ୍ନ ଓ ବ୍ୟଥିତ ହୋଇପାରେ ଓ ଯୋନି ପ୍ରଦେଶରେ ମସୃଣତା କମିଯାଇ ତାହା କଠିନ ହୋଇଯାଏ ।

(୬) ସ୍ୱାମୀ ସହବାସର ଠିକ୍ ଅବ୍ୟବହିତ ପରେ ବଣୁଲି ଅଣ୍ଡା





ପାଣିଦ୍ୱାରା ଯୋନି ଅଭ୍ୟନ୍ତର ଧୋଇଦେଲେ ଶୁକ୍ରକୀଟଗୁଡ଼ିକ ଅକର୍ମଣ୍ୟ ହୋଇ ପଡ଼ନ୍ତି । କେତେକ ବିଶେଷଜ୍ଞ ପରୀକ୍ଷା କରି ଦେଖିଛନ୍ତି ଯେ ଶୁକ୍ରକୀଟ ଉପରେ ଥଣ୍ଡାପାଣି ପଡ଼ିଲେ ସେମାନେ ମିନିଟକ ଭିତରେ ମରିଯାଆନ୍ତି ।

(୮) ସାବୁନ୍ ଫେଣ ପାଣି ମଧ୍ୟ ଉତ୍କୃଷ୍ଟ ଶକ୍ତିଶାଳୀ ଶୁକ୍ରକୀଟ ନାଶକ । ସ୍ୱାମୀ ସମ୍ଭୋଗରୁ ଉଠି ସଙ୍ଗେ ସଙ୍ଗେ ଡୁସ୍ ବା ଏନିମା ସାହାଯ୍ୟରେ ଯୋନି ଭିତରେ ଏହି ପାଣି ପ୍ରବେଶ କରିବାକୁ ହୁଏ ।
(୯) ଅଉନ୍ସ ପାଣିରେ ୭|୦ ଗ୍ରୁ ଗୁମତ ଲେମ୍ବୁରସ ମିଶାଇ ଯୋନି ଭିତରେ ଡୁସ୍ ନେଲେ ମଧ୍ୟ ଭଲ ଉପକାର ମିଳେ । ମାସାଧିକ୍ୟରେ କୌଣସି ଅନିଷ୍ଟ ଘଟିବା ଆଶଙ୍କା ନ ଥାଏ । ତେନ୍ତୁଳି ପାଣି ମଧ୍ୟ ସମାନ କାର୍ଯ୍ୟକାରୀ ଅଟେ । ଏ ଦୁଇଟି ପଦାର୍ଥ ଯେପରି ଶସ୍ତା ଓ ସେହିପରି ସହଜପ୍ରାପ୍ୟ । ସୁତରାଂ ଏହାକୁ ଦରିଦ୍ର ଓ ମଧ୍ୟବିତ୍ତ ଲୋକମାନେ ବ୍ୟବହାର କରି ପାରନ୍ତି ।



## ଜନ୍ମ ନିୟନ୍ତ୍ରଣ ପାଇଁ ପୁରୁଷର ବ୍ୟବହାର୍ଯ୍ୟ ଯନ୍ତ୍ରପାତି

ଫ୍ରେଞ୍ଚକ୍ୟାପ୍ ( French cap ) ବା ଫରାସି ଟୋପି ନାମକ ଏକ ପ୍ରକାର ଇନ୍ଦ୍ରିୟ ଅଚ୍ଛାଦନ ବଜାରରେ କିଣିବାକୁ ମିଳେ । ଏହା ଗଟାପାର୍ଚ୍ଚା, ରବର, ବା କୌଣସି ଜନ୍ତୁର ନରମ ଚର୍ମରେ ନିର୍ମିତ ହୋଇଥାଏ । ଏହାର ଲମ୍ବ ୫ ଇଞ୍ଚରୁ ୭ଇଞ୍ଚ ପର୍ଯ୍ୟନ୍ତ ଏବଂ ଏହାର ଆକାର ଏକ ନଳାକାର ଥଳି ବିଶେଷ । ପୁରୁଷାଙ୍ଗର ଉତ୍ତେଜିତ ଅବସ୍ଥାରେ ଏହାକୁ ମୋଜା ପିନ୍ଧିଲାପରି ପୁରୁଷାଙ୍ଗରେ ପିନ୍ଧାଇଦେଇ



ସ୍ତ୍ରୀ ସଙ୍ଗମ କରିବାକୁ ହୁଏ । ଏହା ଫଳରେ ଶୁକ୍ରପାତ ଯୋନି ନାଳି ମଧ୍ୟରେ ନ ହୋଇ ଏହି ଥଳି ମଧ୍ୟରେ ପଡ଼େ । ଏହା ନାନା ପ୍ରକାର ଅଛି ।

ଗୁଡ଼ା   ଯାଉଥିବା ପ୍ରେଞ୍ଚ କ୍ୟାପ୍          ଖୋଲ ପ୍ରେଞ୍ଚ କ୍ୟାପ୍





କେତେକ ଟୁର୍ ପତଳା, ତାକୁ ଥରେ ବ୍ୟବହାର କରି ଫିଙ୍ଗାଇ ଦେବାକୁ ହୁଏ । ଅନ୍ୟ କେତେକ ଏକାଧିକ ବାର ବ୍ୟବହାର କରାଯାଇ ପାରେ । ସାଧାରଣତଃ ରବର କ୍ୟାପର ବ୍ୟବହାର ବେଶୀ ଓ ତାହା ମଧ୍ୟ ଶସ୍ତା ।

କେତେକ କ୍ୟାପର ଅଗ୍ରଭାଗରେ ଚେଗଚିଆ ହୋଇ ମୁଣ୍ଡି ଥାଏ । ପତିତ ବୀର୍ଯ୍ୟ ତାହାର ଭିତରେ ରହିଯାଏ । ଏଗୁଡ଼ିକ ଅପେକ୍ଷାକୃତ ଭଲ କ୍ୟାପ । ମୁଣ୍ଡି ନଥିବା କ୍ୟାପରେ ବୀର୍ଯ୍ୟ ଜମି ରହିବାକୁ ସ୍ଥାନ ନ ଥିବାରୁ ତାହା ବେଳେ ବେଳେ ଫାଟିଯାଇ ଉଦ୍ଦେଶ୍ୟ ସାଧନରେ ବାଧା ପଡ଼େ ।



## ଫରାସୀ ଟୋପି ବ୍ୟବହାର ବିଧି

କ୍ୟାପ୍ ଖୋଲିଥିଲେ ପ୍ରଥମେ ତାକୁ ଗୁଡ଼ାଇ ନେବାକୁ ହେବ ଓ ମୁଣ୍ଡିକୁ ଚିପି ଭିତରୁ ପବନ କାଢ଼ି ଦେବାକୁ ହେବ ତାପରେ ଲିଙ୍ଗ ଅଗ୍ରଭାଗରେ କୌଣସି ଚିକ୍କଣ ଦ୍ରବ୍ୟ ଯଥା—





ଭେସଲିନ, କ୍ରିମ ବା କୁଣ୍ଡକୀଟ ନାଶକ ଜେଲିବୋଲିଦେଇ କ୍ୟାପକୁ ଲିଙ୍ଗର ଅଗ୍ର ଭାଗରେ ଦେଇ ମୂଳ ଅଡ଼କୁ ଧୀରେ ଧୀରେ ଖୋଲି ଅଣିବାକୁ ହେବ । ଯଦି ସେ କ୍ୟାପରେ ମୁଣ୍ଡି ନ ଥାଏ ତେବେ ଲିଙ୍ଗ ଅଗ୍ରଭାଗରେ ସେ କ୍ୟାପର ପ୍ରାୟ ଅଧଇଞ୍ଚ ଢ଼ିଲକା ରଖିବାକୁ ହେବ । ନଚେତ୍ ବୀର୍ଯ୍ୟପାତ ସମୟରେ କ୍ୟାପ ଫାଟି ଯାଇପାରେ । କ୍ୟାପ ଲଗାଇସାରି ମଧ୍ୟ ଲିଙ୍ଗ ଉପରେ ଶୀର୍ଷ ଲିପିତ ଶବଣ ପଦାର୍ଥକୁ କିଛି ଲଗାଇ ଦେବାକୁ ହେବ । କୁଣ୍ଡକୀଟ ନାଶକ ଜେଲି ଲଗାଇଲେ ସବୁଠାରୁ ଭଲ ।

ପୁରୁଷାଙ୍ଗ କଠିଣ ଓ ଦୃଢ଼ ହେଲେ ତେବେ ଯାଇଁ ଏ ଟୋପି ଦିଆଯାଇ ପାରେ । ସମ୍ଭୋଗେଚ୍ଛା ଜାଗ୍ରତ ହେବା ସଙ୍ଗେ ସଙ୍ଗେ ଏହା ହାତପାଖରେ ପ୍ରସ୍ତୁତ କରି ରଖିବା ଉଚିତ । ଯେଉଁମାନଙ୍କର ସ୍ତ୍ରୀମାନେ ଠିକେ ଶିକ୍ଷିତା ଓ ବିବେଚନାଶୀଳା, ଏ ଟୋପି ସେମାନେ ସ୍ୱାମୀକୁ ଦିଆଇ ଦେଇପାରନ୍ତି । ଏହା ଦ୍ୱାରା ଉଭୟଙ୍କର ଗୋଟିଏ ନୂଆ ଧରଣର ରମଣୋପଭୋଗ ଲାଭ ହୁଏ । ଯୋନି ପ୍ରଣାଳୀ ରସ-ସିକ୍ତ ଓ ଢିଲା ନ ହେବା ପର୍ଯ୍ୟନ୍ତ, ପ୍ରେଞ୍ଚକ୍ୟାପ ପରିହିତ ଲିଙ୍ଗକୁ ଯୋନି ମଧ୍ୟରେ ପ୍ରବେଶ କରାଇବା ଉଚିତ ନୁହେଁ ।

ପତଳା ଶସ୍ତା ଟୋପି ଦୁଇ ବେଶୀ ହେଲେ ୨।୩ ଥର ଓ ଭଲ ଦାମୀ ଟୋପି ଖୁବ୍ ବେଶୀରେ ୮।୧୦ ଥରରୁ ଅଧିକ ବ୍ୟବହାର କରିବା ଅନୁଚିତ ।

ଏହା ବ୍ୟବହାର କରିବା ପୂର୍ବରୁ ପାଣି ଭରାଇ ବା ଫୁଙ୍କି ପବନ ଭରାଇ ଦେଖି ନେବାକୁ ହେବ ଯେ ଏଥିରେ ଛିଦ୍ର ଅଛି କି ନାହିଁ । ଛିଦ୍ର ଥିଲେ ତାହା ବ୍ୟବହାରର ଅନୁପଯୋଗୀ ହୁଏ । ଥରେ ବ୍ୟବହାର ପରେ ଅନ୍ୟଥର ପାଇଁ ସାଇତି ରଖିବାକୁ ହେଲେ



ଏହାକୁ ଗୁଡ଼ାଇ ଚିନାମାଟି ବା କାଚ ପାତ୍ରରେ ପାଣିରେ ଭିଜାଇ ରଖିବ । ତହିଁ ପରଦିନ ସକାଳୁ ପୁଣି ସାବୁନ ପାଣିରେ ଭଲକରି ଧୋଇ ପରିଷ୍କାର ଶୁଖିଲା କନାରେ ପୋଛି ଟିକିଏ ପାଉଡ଼ର ବା ଫ୍ରେଂଚ ଚକ୍ ବୋଳିଦେଇ ରଖିବାକୁ ହୁଏ ।



## ଫରାସୀ ଟୋପି ବ୍ୟବହାରରେ ସୁଫଳ ଓ କୁଫଳ

(୧) ଯୋନି ପ୍ରଣାଳୀ ଓ ପୁରୁଷର ଲିଙ୍ଗ ମୁଣ୍ଡର ଶ୍ଳୈଷ୍ମିକ ଝିଲି, ଏ ଉଭୟ ପରସ୍ପର ସଂଘର୍ଷ ହେଲେ ଯୌନ ସମ୍ଭୋଗ ସୁଖକର ହୋଇଥାଏ । କିନ୍ତୁ ଏହି ଟୋପି ବ୍ୟବହାର କରିବା ଦ୍ୱାରା ଚରମ ଆନନ୍ଦର ଅନୁଭୂତି ପୂର୍ଣ୍ଣ ମାତ୍ରାରେ ମିଳେ ନାହିଁ ।

(୨) ସ୍ତ୍ରୀଯୋନି ମଧ୍ୟରେ ବା ଜରାୟୁ ମୁଖରେ ପୁରୁଷର ରେତଃପାତ ସମୟରେ ନାରୀ ଏକ ଅପୂର୍ବ ଶିହରଣ ଅନୁଭବ କରେ, କିନ୍ତୁ ଏ ଟୋପି ବ୍ୟବହାର କଲେ ସେ ସୁଖରୁ ବଞ୍ଚିତ ହେବାକୁ ହୁଏ ।

(୩)—ପୁରୁଷର ରେତଃ ସ୍ତ୍ରୀ ଯୋନିରେ ପତିତ ହୋଇ ତହିଁରୁ କେତେକ ସୂକ୍ଷ୍ମ ଅଂଶ ସ୍ତ୍ରୀ ଦେହରେ ଅନୁପ୍ରବିଷ୍ଟ ହୁଏ । ପୁରୁଷ ମଧ୍ୟ ନାରୀର ରଜ [illegible] ଯୋନି ମଧ୍ୟରୁ କେତେକ ସୂକ୍ଷ୍ମ ଅଂଶ ଲିଙ୍ଗ ଦ୍ୱାରା ନିଜ ଶରୀରରେ ଅନୁପ୍ରବିଷ୍ଟ କରାଏ । ଏହା ଉଭୟଙ୍କ ସ୍ୱାସ୍ଥ୍ୟ ପକ୍ଷରେ ବିଶେଷ ଉପକାରୀ । କିନ୍ତୁ ଟୋପି ବ୍ୟବହାର ଦ୍ୱାରା ଏହା ଘଟିପାରେ ନାହିଁ ।

(୪)—ହଠାତ୍ ରମଣେଚ୍ଛା ଜାଗ୍ରତ ହେଲେ ବାକ୍ସ ଟ୍ରଙ୍କ୍ ବା ଆଲମାରୀ ଫିଟାଇ ଏହାକୁ ଆଣି ପିନ୍ଧୁ ପିନ୍ଧୁ ହଠାତ୍ ଜାଗ୍ରତ କାମେଚ୍ଛା ଶିଥିଳ ହୋଇ ଯାଇପାରେ ।





(୫)—ଦରିଦ୍ର ବା ନିମ୍ନ ମଧ୍ୟବିତ୍ତ ଗୃହସ୍ଥଙ୍କ ପକ୍ଷରେ ଏହାକୁ ସବୁବେଳେ ହାତପାଖରେ ରଖିବା ସମ୍ଭବ ନୁହେଁ । ଅନେକ ସମୟରେ ଛୋଟଅ ପିଲା ବା ବଡ଼ଣା ପିଲା, ଅଲମାରି ବା ବାକ୍ସ ପେଟି ଇତ୍ୟାଦିରୁ ସେଗୁଡ଼ିକୁ ଏହାକୁ ବାହାର କରି ଆଣି ବାପା ମାଙ୍କୁ କୌତୁହଳରେ "ଏଟା କ'ଣ" ବୋଲି ପଚାରନ୍ତି । ଏହାଛଡ଼ା ଗୁରୁ ବା ଗୁରୁଜନମାନଙ୍କ ଦୃଷ୍ଟିରେ ଏହା ପଡ଼ିଲେ ବଡ଼ ଲଜ୍ଜା ବୋଧ ହେବାର କଥା ।

(୬)—୧୦।୧୨ ବର୍ଷ କ୍ରମାଗତ ଏହାକୁ ବ୍ୟବହାର କଲେ କାହାର କାହାର ପୁରୁଷାଙ୍ଗ ଶିଥିଳ ହେବାର ଦେଖାଯାଏ ।

(୭)—ଅତି କାମାତୁର, ଯୌନାନୁଭୂତି-ଚପଳା, ଗାଢ଼-ରତି ପ୍ରାର୍ଥିନୀ ଓ ମାର୍ଜିତ ରୁଚିର ନାରୀମାନେ ଏହି ଟୋପି ସହଯୋଗରେ ସମ୍ଭୋଗ କରିବାକୁ ପସନ୍ଦ କରନ୍ତି ନାହିଁ । ଏହାଦ୍ୱାରା ସେମାନଙ୍କର ଚରମ ତୃପ୍ତି ନ ଘଟିବାରୁ ନାନା ପ୍ରକାର ବ୍ୟାଧି ଜନ୍ମ ପାରେ ।

(୮)—ମୋଟା ଚମଡ଼ାର ଟୋପିରେ ଯେପରି ଉଭୟଙ୍କର ସୁଖାନୁଭୂତି କମ୍ ହୁଏ, ପତଳା ଟୋପି ମଧ୍ୟ ଶୀଘ୍ର ଛିଣ୍ଡି ଯିବାର ସମ୍ଭାବନା ଥାଏ । ଏଣୁ ବ୍ୟବହାର ପୂର୍ବରୁ ଭଲକରି ଦେଖି ନେବା ଉଚିତ ।

(୯)—ଜନ୍ମନିରୋଧ ଦୃଷ୍ଟିରେ ଟୋପିର ବ୍ୟବହାର ବେଶୀ ନିର୍ଭର ଯୋଗ୍ୟ । ଏହା ବ୍ୟବହାର ଦ୍ୱାରା ଗର୍ଭ ସଞ୍ଚାରର ଅଳ୍ପ ଭୟ ରହେ ନାହିଁ ।

(୧୦)—କୌଣସି ସ୍ତ୍ରୀଠାରେ ମେହ ବା ଉପଦଂଶ ଆଦି ଧାତୁରୋଗ ଥିଲେ, ଉକ୍ତ ଟୋପି ବ୍ୟବହାର ଦ୍ୱାରା ତାହା ଅଳ୍ପ ପୁରୁଷାଙ୍ଗକୁ ସଂକ୍ରମିତ ହୋଇ ପାରେ ନାହିଁ ।



(୧୧) ଯେଉଁ ସବୁ ପୁରୁଷମାନଙ୍କର ଶୀଘ୍ର ରେତଃପାତ ଘଟି ନାରୀର ଚରମ ତୃପ୍ତି ଅଣି ପାରେ ନାହିଁ, ସେ ପୁରୁଷମାନେ ଏ ଟୋପି ବ୍ୟବହାର କରିବା ଉଚିତ । କାରଣ ଏହାର ବ୍ୟବହାର ଫଳରେ ସହବାସ ଅପେକ୍ଷାକୃତ ବେଶୀ ସମୟ ଚାଲିଥାଏ । ଅଧିକ ସମୟ ଯୋନି ଘର୍ଷଣ ଯୋଗୁ ନାରୀ ମଧ୍ୟ ଶାନ୍ତି ପାଏ ।



## ଆମେରିକାନ୍ ଟିପ୍ ( American Tip )

ଏହା ଫରାସି ଟୋପି ( French cap ) ଠାରୁ ଆକାରରେ ଶ୍ରେଷ୍ଠ । ଏହା ଲିଙ୍ଗକୁ ସମ୍ପୂର୍ଣ୍ଣ ଭାବରେ ଆଚ୍ଛାଦନ କରେ ନାହିଁ, କେବଳ ଲିଙ୍ଗ ମୁଣ୍ଡିକୁ ଆଚ୍ଛାଦନ କରେ । ତେଣୁ ଏହାକୁ ବ୍ୟବହାର କଲେ ସ୍ତ୍ରୀ ସମ୍ଭୋଗ ସମୟରେ ଲିଙ୍ଗ ଯୋନିର ଘର୍ଷଣରେ ବେଶୀ ଅସୁବିଧା ହୁଏ ନାହିଁ । ମାତ୍ର ଏହା ସହବାସ ସମୟରେ ଖସି ଯିବାର ସମ୍ଭାବନା ଥାଏ ବୋଲି ଲୋକେ ଏହାକୁ ବେଶୀ ଆଦର କରନ୍ତି ନାହିଁ ।



## ନାରୀ ଦ୍ୱାରା ବ୍ୟବହାର୍ଯ୍ୟ ଯନ୍ତ୍ରାବଳୀ

ଜରାୟୁ ମୁଖଦେଇ ଶୁକ୍ରକୀଟ ପ୍ରବେଶ କରି ଡିମ୍ବକୋଷ ସହ ମିଳିତ ହେଲେ ଗର୍ଭ ସଞ୍ଚାର ହୋଇ ଥାଏ, ଏହା ସମସ୍ତଙ୍କୁ ଜଣା ଅଛି । ସହବାସ ବେଳେ, ଯେତେବେଳେ ଯନ୍ତ୍ର ଅଛି ତାହା ଜରାୟୁ ମୁଖରେ ଦେଇ ଦେଲେ ଆଉ ଶୁକ୍ରକୀଟ ଭିତରକୁ ଯାଇ ପାରିବ ନାହିଁ ।




ସ୍ପଞ୍ଜ—ଭାରତରେ ଏହାର ବ୍ୟବହାର ପୂର୍ବରୁ ଥିଲା ବୋଲି ଜଣାଯାଏ । କାରଣ ମୋଗଲ ରାଜତ୍ୱରେ ବେଗମ ମହଲରେ ଏହାର ବ୍ୟବହାର ଥିଲା ବୋଲି ଶୁଣାଯାଏ । ଏହା ଦୁଇ ପ୍ରକାର । ରବର ସ୍ପଞ୍ଜ ଓ ସାମୁଦ୍ରିକ ସ୍ପଞ୍ଜ । ଏଥିଭିତରୁ ରବର ସ୍ପଞ୍ଜ ବେଶୀ ନରମ ଓ ଶସ୍ତା । ଏହାର ଆକାର ଚତୁଷ୍କୋଣିଆ ବା ଗୋଲ । ଲମ୍ବ ଓ ଓସାର ୨ ଇଞ୍ଚରୁ ୩ ଇଞ୍ଚ ପର୍ଯ୍ୟନ୍ତ ଓ ମୋଟା ଅର୍ଦ୍ଧ ଇଞ୍ଚରୁ ୩/୪ ଇଞ୍ଚ ପର୍ଯ୍ୟନ୍ତ । ବଡ଼ ସ୍ପଞ୍ଜ ବ୍ୟବହାର ପକ୍ଷରେ ଉପଯୋଗୀ । ସ୍ତ୍ରୀ ଜନନେନ୍ଦ୍ରିୟ ଭିତରୁ ବାହାର କରି ଆଣିବାକୁ ଏଥିରେ ଗୋଟିଏ ସୂତା ଲାଗିଥାଏ ।

ବ୍ୟବହାର ବିଧି—ରବର ସ୍ପଞ୍ଜକୁ ଗରମ ପାଣିରେ ଶୋଧିତ କରିନେବା ଉଚିତ । ଶୋଧିତ ସ୍ପଞ୍ଜ ବଜାରରେ ମଧ୍ୟ ମିଳେ । ତାକୁ ପାଣିରେ ବୁଡ଼ାଇ ଅଟେସ୍ତ ଚପୁଡ଼ି ଦେଇ ତା'ର ଫେଣ ପାଉଡର ( Foan Powder ବଜାରରେ ମଧ୍ୟ ମିଳେ ) କିଛି ପକାଇ ହାତରେ ଘଷିଲେ ଫେଣ ବାହାରେ । ସେହି ଅବସ୍ଥାରେ ବା ତାକୁ ୨।୩ ଭାଗ କରି ଯୋନି ଭିତରେ ସହବାସ ପୂର୍ବରୁ ପୂରାଇ ନେବା ଦରକାର । କେତେକ ଏହା ବ୍ୟବହାର କଲେ ଠିକାଏ କଷ୍ଟ ହୁଏ ବୋଲି କହନ୍ତି କିନ୍ତୁ ତାହା ବଡ଼ କ୍ୱଚିତ । ଏହାର ଅବସ୍ଥିତ ଯୋନି



ଭିତରେ ଅଦୌ ଅନୁଭୂତ ହୁଏନାହିଁ । ସହବାସ ବେଳେ ପୁରୁଷର ଲିଙ୍ଗମୁଣ୍ଡ ସ୍ପଞ୍ଜ ଦେହରେ ଘଷି ହେବାରୁ ଅଧିକ ଫେଣ ବାହାରେ । ପୁରୁଷର ଶୁକ୍ରକୁ ଏହି ସ୍ପଞ୍ଜ୍ ଶୋଷିନିଏ ଓ ଫେଣ ସଂସ୍ପର୍ଶରେ ଅସି ଶୁକ୍ରକୀଟ ଗୁଡ଼ିକ ମରିଯାନ୍ତି ।

ସହବାସ କାର୍ଯ୍ୟ ସାରିଲା ପରେ ସ୍ପଞ୍ଜକୁ ନ ବାହାର କରି ପରଦିନ ସକାଳେ ଗାଧୋଇଲା ବେଳେ ତାହା ବାହାର କରିବ ଓ ଯୋନିନାଳୀକୁ ପରିଷ୍କାର ଭାବେ ଧୋଇଦେବ । ସହବାସର ପରେ ପରେ ଯଦି କାଢ଼ିବାକୁ ହୁଏ ତେବେ କାଢ଼ିନେଇ ଯୋନି ପ୍ରଣାଳୀକୁ ଉଲ୍ଲିଖିତରେ ଶୋଧନ କରି ନେବ ଏବଂ ସ୍ପଞ୍ଜକୁ ଗରମ ପାଣିରେ ପରିଷ୍କାର ଭାବରେ ଧୋଇ ଶୁଖାଇ ଡବାରେ ସାଇତି ରଖିବ । ଯତ୍ନର ସହିତ ଏହାର ବ୍ୟବହାର କଲେ ପ୍ରାୟ ୧୦୦ ଥର ବ୍ୟବହାର କରାଯାଇ ପାରେ ।

ଡାକ୍ତରଙ୍କ ମତରେ—ତିନିକୋଡ଼ିଏ ଭାଗ ପାଣିରେ ଭାଗେ ବୋରିକ ପାଉଡ଼ର ମିଶ୍ରିତ ପାଣିରେ ସମ୍ଭୋଗ ଶେଷରେ ସ୍ପଞ୍ଜକୁ ବୁଡ଼ାଇ ରଖିବା ଉଚିତ ।



## ଗର୍ଭସ୍ତ୍ରାଣ ( check pessary )

ଲିଙ୍ଗ ଦେହରେ ଯେପରି ଫ୍ରେଞ୍ଚକ୍ୟାପ୍ ଦିଆଯାଏ, ସ୍ତ୍ରୀ ଯୋନିରେ ଦେବାକୁ ସେହିପରି ଏକ ଖୋପ ବା ଖୋଳ ମିଳେ । ତାହାକୁ ଫିମେଲ୍‌ସିଥ୍ କୁହାଯାଏ । ଫ୍ରେଞ୍ଚ୍‌କ୍ୟାପ ପରି ଏହାର ମଧ୍ୟ ଭିତରେ ଓ ବାହାରେ ଭେସ୍‌ଲିନ୍, ଶୁକ୍ରକୀଟ ନାଶକ ଜେଲ୍ ଅଥବା କୌଣସି ତୈଳାକ୍ତ ପଦାର୍ଥ ମାତ୍ର ( ତେଲ୍ ଘିଅ ନୁହେଁ ) ଅଙ୍ଗୁଳି





ସାହାଯ୍ୟରେ ଯୋନି ଭିତରକୁ ଦେବାକୁ ହୁଏ । ସହବାସ ପରେ ପେଶରିକ୍ୟାପ ପରି ଏହାର ଯତ୍ନ ନେବାକୁ ହୁଏ । ପେଶରିକ୍ୟାପ୍ ବ୍ୟବହାରରେ ଯେଉଁ ସବୁ ସୁବିଧା ଅସୁବିଧା ହୁଏ । ଏହାର ବ୍ୟବହାର ଦ୍ୱାରା ମଧ୍ୟ ସେହିସବୁ ସୁବିଧା ଓ ଅସୁବିଧା ହୁଏ ।

**ଚେକ୍ ପେସାରି ବା ସର୍ଭିକାଲ କ୍ୟାପ**—ଏହାର ଅନ୍ୟ ଅନେକ ପ୍ରକାର ନାମ ଅଛି । ଏହା ଗୋଟିଏ ରବର ଗିନା ପରି । ଏହାର ଧାରଭାଗ ବା ଫନ୍ଦ ମୋଟା ଓ କଡ଼ା ରବରରେ ନିର୍ମିତ । କେତେକ ପେସାରିର ଫନ୍ଦରେ ମଧ୍ୟ ସ୍ପ୍ରିଙ୍ଗ୍ ଥାଏ । ଏହି ସ୍ପ୍ରିଙ୍ଗର ଫନ୍ଦ ଥିବା ପେସାରି ଅପେକ୍ଷା ରବର ଫନ୍ଦ ଥିବା ପେସାରି ଭଲ । ଏହାକୁ ଯୋନି ଭିତରେ ଭର୍ତ୍ତି କରି ଜରାୟୁ ଗ୍ରୀବାର ମୁଖରେ ଦେବାକୁ ହୁଏ । ଏହି ପେସାରିର ଫନ୍ଦରେ ମୋଟା ଓ ଶକ୍ତ ରବର ଥିବା ହେତୁ ଏହା ଜରାୟୁ ମୁଖକୁ ଚାପି ରଖେ । ତଦ୍ୱାରା ଜରାୟୁମୁଖ ସମ୍ପୂର୍ଣ୍ଣ ବନ୍ଦ ହୋଇ ଯିବାରୁ ଶୁକ୍ରକୀଟ ଆଉ ଜରାୟୁ ଭିତରେ ପଶି ପାରେ ନାହିଁ ।

ଏହି ପେସାରି ବିଭିନ୍ନ ମାପର ମିଳେ । କେଉଁ ସ୍ତ୍ରୀ ପାଇଁ କେଉଁ ମାପର ପେସାରି ଦରକାର ତାହା ଜରାୟୁ ମୁଖକୁ ମାପି ଠିକ୍ କରିବାକୁ ହୁଏ । ଏହି ମାପିବା କାମ ଡାକ୍ତରଙ୍କ ବିନା ସାହାଯ୍ୟରେ ହୋଇ ନ ପାରେ ବୋଲି ଏହାର ପ୍ରଚଳନ ସେତେ ବେଶୀ ନାହିଁ । କାରଣ ଯଦି ଠିକ ମାପର ନ ହୋଇ ଛୋଟ ବଡ଼ ହୁଏ ତେବେ ତଦ୍ୱାରା ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ଅବଶ୍ୟ ଡାକ୍ତର ବିନା ସାହାଯ୍ୟରେ ଯେ ଏହା ବ୍ୟବହାର କରହେବ ନାହିଁ ଏପରି ନୁହେଁ । ସାଧାରଣତଃ ମୋଟେ ସନ୍ତାନ ନ ହୋଇ



ଥିବା ସ୍ତ୍ରୀ ପକ୍ଷେ ସାନ, ଗୋଟିଏ ଦୁଇଗୋଟି ସନ୍ତାନର ଜନନୀ ହୋଇଥିବା ସ୍ତ୍ରୀମାନଙ୍କ ପକ୍ଷେ ମଧ୍ୟମ ଓ ତାଠାରୁ ବେଶୀ ସନ୍ତାନର ଜନନୀ ହୋଇଥିବା ସ୍ତ୍ରୀ ପକ୍ଷେ ବଡ଼ ସାଇଜର କ୍ୟାପ୍ ଦରକାର। କ୍ୟାପ୍ ଲଗାଇ ସାରିଲେ ଫିଟ୍ ହେଲା କି ନାହିଁ ତାହା ନିଜର ଅଙ୍ଗୁଳି ସାହାଯ୍ୟରେ ଜାଣିହୁଏ। ସୁବିଧା ଥିଲେ ଡାକ୍ତରଙ୍କ ସାହାଯ୍ୟ ନେବା ଦରକାର।

ଏହାକୁ ବ୍ୟବହାର କରିବା ପୂର୍ବରୁ ଭଲ ରକମ ପରୀକ୍ଷା କରି ନେବା ଉଚିତ। ଦେଖିବ ସେଥିରେ ଛିଦ୍ର ବା ଦାଗ ଅଛି କି ନାହିଁ, ଫନ୍ଦ ଖୁବ ଶକ୍ତ ଥିବା ଦରକାର ଓ ବେଶୀ ନରମ ହୋଇ ନ ଥିବ। ବେଶୀ ଗନ୍ଧହୀନ କ୍ୟାପ୍ ଗୁଡ଼ିକ ସବୁଠାରୁ ଭଲ।

**ବ୍ୟବହାର ବିଧି:—**

ଏହି ପେସାରିର ବ୍ୟବହାର ପ୍ରଣାଳୀ ଟିକେ ଜଟିଳ। କିନ୍ତୁ ଥରେ ଦୁଇଥର ବ୍ୟବହାର କଲେ ତେଣିକି ସହଜ ହୋଇଯାଏ।

ପ୍ରଥମେ ସ୍ତ୍ରୀ ପରିଷ୍କାର କରି ମୂତ୍ରାଶୟକୁ ଖାଲି କରି ନେବେ। ତାପରେ ନିଜର ଗୋଇଠି ଉପରେ ବସି ଦୁଇ ଜଙ୍ଘକୁ ପ୍ରସାରିତ କରିବେ ଓ ଆଗକୁ ଟିକେ ଝୁଙ୍କି ପଡ଼ିବେ କିମ୍ବା ଚିତ୍ହୋଇ ଶେଯରେ ଶୋଇ ଦୁଇ ଜଙ୍ଘକୁ ପ୍ରସାରିତ କରି ଆଣ୍ଠୁକୁ ଭାଙ୍ଗି ଦୁଇ ଗୋଡ଼କୁ ଟାଣି ଆଣିବେ। ଏହା ଫଳରେ ଯୋନି ଭିତରର ମାଂସ ପେଶୀ ପ୍ରସାରିତ ଓ ଢିଲା ହୋଇଯିବ। ତେଣୁ ପେସାରିକୁ ଭିତରେ ପୂରାଇବାକୁ ସୁବିଧା ହେବ। ଏହା ଛଡ଼ା ଅନ୍ୟ ଯେ କୌଣସି ପ୍ରକାରରେ ମଧ୍ୟ ଏହାକୁ ବ୍ୟବହାର କରାଯାଇ ପାରେ। ପ୍ରଥମେ ଏହି ପେସାରି ଫନ୍ଦକୁ ବୁଢ଼ା ଅଙ୍ଗୁଳି ବା ମଝି ଅଙ୍ଗୁଳିରେ





ଯୋଡ଼ ଚିପି ଧରି ତାକୁ ଅଳ୍ପ ବାଗରେ ଯୋନିରେ ପ୍ରବେଶ କରାଇ ଜରାୟୁ ଗ୍ରୀବାରେ ମୁଖରେ ଦେଇ କରି ତାକୁ ଗୃହ ଅନ୍ତ ଚିପି ଦେବାକୁ ହେବ । ଗୃହ ଫଳରେ ହେଉ ତା ଉତ୍ତେଜନା ବଶତଃ ହେଉ, ଜରାୟୁର ଗ୍ରୀବା ଫୁଲି ଯିବା ଦ୍ୱାରା ପେସାରିର ଫାନ୍ଦ ତାକୁ ଚିପି ରଖେ । ଏହି କ୍ୟାପ୍ ବା ପେସାରି ଲଗାଇ ସାରିବା ପରେ ଅଙ୍ଗୁଠି ସାହାଯ୍ୟରେ ଦେଖି ନେବାକୁ ହେବ, ତାହା ଠିକ୍ ସ୍ଥାନରେ ଲାଗିଲା କି ନାହିଁ । କିନ୍ତୁ ଯେଉଁମାନଙ୍କର ଯୋନି ନାଳୀ ବେଶୀ ଗଭୀର କିମ୍ବା ଅଙ୍ଗୁଳି ଛୋଟ, ସେମାନଙ୍କ ପକ୍ଷରେ ପେସରି ଲଗାଇବା ପାଇଁ ସହଜସାଧ୍ୟ ହୁଏ ନାହିଁ ।

ସ୍ତ୍ରୀ ତାଙ୍କର ସୁବିଧା ସମୟ ଦେଖି ଏହା ବ୍ୟବହାର କରି ପାରନ୍ତି । ତେବେ ତାହା ସହବାସର ଅବ୍ୟବହିତ ପୂର୍ବରୁ ନ କରି ଏକ ଘଣ୍ଟା ଆଗରୁ କରିଯିବା ଉଚିତ । ସ୍ୱାମୀଙ୍କର ଅଜ୍ଞାତରେ ଏହା କରିବା ଭଲ । କାରଣ ସ୍ୱାମୀ ମନରେ କିଛି ଅପ୍ରାକୃତିକତା ଆଣି ପାରନ୍ତି । ନବ ବିବାହିତା ସ୍ତ୍ରୀ ପକ୍ଷେ ପେସାରି ବ୍ୟବହାର କରିବା ସହଜ ନୁହେ । ସେପରି କ୍ଷେତ୍ରରେ ସ୍ୱାମୀଙ୍କ ପ୍ରେଞ୍ଚକ୍ୟାପ୍ ବ୍ୟବହାର କରିବେ ।

ଚେକ୍ ପେସାରି ଖୁବ୍ ହୁସିଆର ଭାବରେ ବାହାର କରିବା ଦରକାର । ତାହା ସହବାସର ୧୨ ଘଣ୍ଟା ପରେ ବାହାର କରିବା ଆବଶ୍ୟକ । କାରଣ ଶୀଘ୍ର ବାହାର କରି ନେଲେ ଯୋନି ଭିତରେ ବଞ୍ଚି ରହିଥିବା ଶୁକ୍ରକୀଟ ଜରାୟୁ ଭିତରକୁ ଯାଇ ପାରନ୍ତି । ତେବେ ଯୋନି ଭିତରର ଅମ୍ଳଗୁଣ ଦ୍ୱାରା ସେମାନେ ଶୀଘ୍ର ମରିଯିବା ମଧ୍ୟ ସମ୍ଭବ । ତେଣୁ ସହବାସର ୫ଘଣ୍ଟା ପରେ କାଢ଼ି ନେଲେ ବି ଚଳିବ । କିନ୍ତୁ ତା ପୂର୍ବରୁ ନୁହେଁ । ବାହାର କରିବା ପୂର୍ବରୁ ଓ



ପରେ ଯୋନି ଭିତର ଥଣ୍ଡା ପାଣି ବା ସାବୁନ ପାଣି ଦ୍ୱାରା ଧୋଇ ଦେବାକୁ ହେବ । ଏସବୁ କାମ ସରିଲେ ସ୍ତ୍ରୀ ଫେରି ଯିବାବେଳେ ବା ଗାଧୋଇବା ବେଳେ କରି ନେବା ଭଲ ।

କେତେକ ପେସରୀର ଟାଣି ବାହାର କରିବା ପାଇଁ ସୂତା ଲାଗିଥାଏ ଓ ସେହି ସୂତା ଯୋନି ବାହାରକୁ ଲମ୍ବିଥାଏ ।

୭—ଜରାୟୁ ମୁଖରେ ଚେକ୍ ପେସାରି




ମାତ୍ର ଏହି ପେସାରିକୁ ଲାଗିଥିବା ସୂତା ଧରି ଟାଣି ବାହାର କରିବା ବଡ଼ ବିପଦଜନକ । କାରଣ ଏଥିରେ ଜରାୟୁ ସ୍ଥାନଚ୍ୟୁତ ହେବାର ସମ୍ଭାବନା । ତେଣୁ ସୂତା ଧରି ନ ଟାଣି ଯୋନି ଭିତରେ ଅଙ୍ଗୁଳି ପୂରାଇ ପେସାରିକୁ ଜରାୟୁ ମୁଖରୁ ଅସ୍ତେ ଅସ୍ତେ ବାହାର କରିବା ଉଚିତ । ଅତ୍ର ମଧ୍ୟ ପେସାରିରେ ଲାଗିଥିବା ସୂତାକୁ କାଟି ଦେବାହିଁ ଭଲ । ଏ ଥିଲେ ସହବାସ ସୁଖରେ ଏକ ପ୍ରକାର ପ୍ରତିବନ୍ଧକ ହୋଇଥାଏ ।

ଏହି ପେସାରି ଯୋନି ମଧ୍ୟରେ ୧୨ ଘଣ୍ଟା ୧୮ ଘଣ୍ଟାରୁ ବେଶୀ ରଖିବ ନାହିଁ । ଏଥିରୁ ବେଶୀ ସମୟ ରଖିଲେ ଯୋନିର

ଅମ୍ଳଗଣ ବଳରେ ରବରଖରାପ ହୋଇ ଯିବ ଏବଂ ଦୁର୍ଗନ୍ଧ ହେବ । ଅଜ୍ ମଧ୍ୟ ଋତୁସ୍ରାବ ହେଲେ ଏହା କଦାପି ବ୍ୟବହାର କରଯାଏ ନାହିଁ ।

ଯଦି ଠିକ୍ ମାପ ଅନୁସାରେ ଏହି ପେସାରି ବ୍ୟବହାର କରାଯାଏ ତେବେ ସହବାସରେ ଯୌନ ପ୍ରକୃତିକ ସୁଖ ଥାଏ ସେଥିରେ କୌଣସି ପ୍ରତିବନ୍ଧକ ଅସେ ନାହିଁ କିମ୍ବା ଯୋନି ଭିତରେ ରୋହିଏ କିଛି ଅଛି ବୋଲି ସ୍ୱାମୀ ବା ସ୍ତ୍ରୀ କେହି ଅନୁଭବ କରି ପାରନ୍ତି ନାହିଁ । ଯଦି ଏହା ଲଗାଇବା ଦ୍ୱାରା କୌଣସି ପ୍ରକାର ଅସୁଖ ଲାଗେ ତେବେ ବୁଝିବାକୁ ହେବ ଯେ ତାହା ଠିକ୍ ମାପର ନୁହେଁ । ଡକ୍ଟର ମେରି ଷ୍ଟୋପସ (Dr. Marie Stopes) ଙ୍କ ମତରେ "ଏହା ପ୍ରାକୃତିକ ଯୌନ ସୁଖ ଭୋଗରେ କୌଣସି ବ୍ୟାଘାତ ଜନ୍ମାଏ ନାହିଁ କିମ୍ବା ଯୋନି ଭିତରେ ଏହାର ଅବସ୍ଥିତି ମନୁଷ୍ୟ ଅନୁଭବ କରି ପାରେ ନାହିଁ ।

ବ୍ୟବହାର କରି ସାରିବା ପରେ ଏହି ପେସାରିର ଯତ୍ନ ନେବାକୁ ହେବ । ଏହାକୁ ଯଦି ଯତ୍ନ ସହିତ ବ୍ୟବହାର କରାଯାଏ ତେବେ ଏହା ବର୍ଷେକରୁ ବେଶୀ ସମୟ ବ୍ୟବହାର କରିହେବ । ଏହି ପେସାରିର ଦାମ ଗୋଟାକୁ ପ୍ରାୟ ୫୨ଟଙ୍କା ।

ଏହି ପେସାରି ଭିତରେ ଦ୍ରବଂରୁ ବର୍ଣ୍ଣିତ ହୋଇ ଥିବା ଜନ୍ମ ନିରୋଧ ମଲମ ପୂରାଇ ବ୍ୟବହାର କଲେ ତାହା ମଧ୍ୟ ବର୍ଭର ଯୋଗ୍ୟ ।

ଡଚ୍‌କ୍ୟାପ ବା Diaphragm Pessary :—

ଏହା ରେଚ୍ ପେସାରି ଠାରୁ ବଡ଼ । ଏହାର ଆକାର ଫାଳେ ରବର ପେଣ୍ଡୁ ପରି । ଫନ୍ଦରେ ମଧ୍ୟ ସ୍ପ୍ରିଙ୍ଗ୍ ଅଛି । ଏହା ନରମ



ରବରରେ ତିଆରି । ଏହା ଫାନ୍ଦରେ ଥିବା ସ୍ପ୍ରିଙ୍ଗ ଦ୍ୱାରା ଯୋନି ଛୁଲୀକୁ ଚାପି ଧରେ ।

## ଜରାୟୁ ମୁଖରେ ଡର୍‌କ୍ୟାପ




ପୂର୍ବୋକ୍ତ ପେସାରି ପରି ଏହା ବ୍ୟବହାର କରାଯାଏ । ପାର୍ଥକ୍ୟ ଏତିକି ଯେ—ଉକ୍ତ ପେସାରି କେବଳ ଜରାୟୁ ଗ୍ରୀବାକୁ ଘୋଡ଼ାଇ ରଖେ ଏବଂ ବାରମ୍ବାର ଲଗାଇବା ଓ କାଢ଼ିବା ଦ୍ୱାରା ଜରାୟୁ ଗ୍ରୀବା ସମୟ ବେଳେ ଖଣ୍ଡିଆ ହୋଇ ଯାଇପାରେ । କିନ୍ତୁ ଏହି ପ୍ରକାରର କ୍ୟାପ୍ ବା ପେସାରି ଯୋନି ଭିତରର ସମସ୍ତ ଅଂଶ ଆବୃତ୍ତ କରି ରଖେ । ତେଣୁ ତାହା ଦ୍ୱାରା ଜରାୟୁ ଗ୍ରୀବା କ୍ଷତ ହେବାର ଆଶଙ୍କା ନ ଥାଏ । ଅତ ମଧ୍ୟ ଯେଉଁ ସ୍ତ୍ରୀଲୋକମାନେ ଖୁବ୍ ମୋଟା, ଜରାୟୁଗ୍ରୀବା ସ୍ଥାନଚ୍ୟୁତ କିମ୍ବା ଯେଉଁମାନଙ୍କର ଅଙ୍ଗୁଳି ଛୋଟ, ସେମାନଙ୍କ ପକ୍ଷେ ଏହି ଡର୍‌କ୍ୟାପ୍ ଟିକିଏ ସୁବିଧା ଜନକ । କିନ୍ତୁ ଏଥିରେ ଏତିକି ଦୋଷ ଅଛି ଯେ, ଏହାକୁ ବେଶୀ ଦିନ ବ୍ୟବହାର କଲେ ଯୋନି ନାଳୀ ଅତ୍ୟନ୍ତ ପ୍ରସାରିତ କିମ୍ବା ଢିଲା ହୋଇଯାଏ ।





ପେସାରି ବ୍ୟବହାର ଯଦି ସ୍ତ୍ରୀ ନିଜେ ଶିଖାଇ ନ ପାରନ୍ତି ତେବେ ତାହା ନିଜର ସ୍ୱାମୀଙ୍କ ଦ୍ୱାରା କରାଇ ନିଆଯାଇ ପାରେ ।

ପାଶ୍ଚାତ୍ୟ ବିଜ୍ଞାନ ଏ ପର୍ଯ୍ୟନ୍ତ ଏପରି କୌଣସି ଔଷଧ ପ୍ରସ୍ତୁତ କରି ପାରି ନାହିଁ, ଯାହା ଖାଇଲେ ସ୍ତ୍ରୀ ଏକ ନିର୍ଦ୍ଦିଷ୍ଟ ସମୟ ବା ସାରା ଜୀବନବ୍ୟାପୀ ବନ୍ଧ୍ୟା ହୋଇଯିବ । କିନ୍ତୁ ଆମର ପ୍ରାଚ୍ୟ ଚିକିତ୍ସା ବିଜ୍ଞାନ ଆୟୁର୍ବେଦରେ ଗର୍ଭ ନିୟନ୍ତ୍ରଣ ପାଇଁ କେତେକ ଔଷଧ ବିଷୟରେ ବର୍ଣ୍ଣିତ ଅଛି । ସେଗୁଡ଼ିକ ବୋଧହୁଏ ଉତ୍ତାପିତ ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ତାହା ବ୍ୟବହାର ଫଳରେ ବୋଧହୁଏ ଡିମ୍ବବାହୀ ନାଳ ଭିତରେ କୌଣସି ପ୍ରକାର ବ୍ରଣର ଉଦ୍‌ଗମ ହୋଇ ଡିମ୍ବାଣୁର ଗତି ରୋଧ ହୋଇ ଯାଏ । ଫଳରେ ଗର୍ଭସଞ୍ଚାର ହୋଇ ପାରେ ନାହିଁ । ତହିଁରୁ କେତୋଟି ନିମ୍ନରେ ଦିଆଗଲା—

ମୁକ୍ତାଗୁଣ୍ଡ ଗ୍ରେନ୍, ସ୍ୱର୍ଣ୍ଣଭସ୍ମ ଗ୍ରେ ୧ ନ, ଗେରୁ ଗ୍ରେ ୨ନ ତେଜପତ୍ର ଗ୍ରେ ½ ନ ଏବଂ ତାଳିଶପତ୍ର ଗୁଣ୍ଡ ଗ୍ରେ ୧ ନ, ଏ ସମସ୍ତ ଏକାଠି କରି ଋତୁ ସମୟରେ ପ୍ରତି ଘଣ୍ଟାରେ ଏକପାନ ଲେଖାଏ ମୋଟ ପା ୯ ନ ଖାଇଲେ ଆଉ ଗର୍ଭ ସଞ୍ଚାର ହୁଏ ନାହିଁ ।



## ଜନ୍ମ ନିରୋଧ ନିମନ୍ତେ ଅସ୍ତ୍ରୋପଚାର

ଆଜିକାଲି ବୈଜ୍ଞାନିକ ପ୍ରଣାଳୀରେ ଅସ୍ତ୍ରୋପଚାର ଦ୍ୱାରା ପୁରୁଷର କେବଳ ଶୁକ୍ରନଳୀ କାଟି ଦିଆ ଯାଉଅଛି ଏବଂ ନାରୀର ଡିମ୍ବକୋଷ କାଢ଼ି ନିଆ ଯାଉଅଛି । ଏପରି କଲେ ପୁରୁଷର ଓ ସ୍ତ୍ରୀଙ୍କର ସ୍ଥାୟୀ ଜନ୍ମ-ନିୟନ୍ତ୍ରଣ ଘଟେ । ଏହା କଲେ ସ୍ତ୍ରୀ ଓ ପୁରୁଷର ପ୍ରାକୃତିକ କାମୋତ୍ତେଜନା, ଲିଙ୍ଗର ଦୃଢ଼ତା, ରଜବୀର୍ଯ୍ୟ କ୍ଷରଣ



ବା ସହବାସ ଜନୀତ ପ୍ରାକୃତିକ ସୁଖ ଇତ୍ୟାଦିରେ କୌଣସି ପ୍ରକାର ଅନ୍ତ ଅସେ ନାହିଁ । ସେ ସମସ୍ତ ପୂର୍ବବତ୍ ଅତୁଳ ରହେ । କେବଳ ପୁରୁଷର ବୀର୍ଯ୍ୟରେ ଅଜ୍ଞ ଶୁକ୍ରକୀଟ ଦେଖାଯାଏ ନାହିଁ କିମ୍ବା ସ୍ତ୍ରୀର ଡିମ୍ବକୋଷରୁ ପରିପକ୍ୱ ଡିମ୍ବାଣୁ ଗର୍ଭାଶୟକୁ ଆସିବା ପାଇଁ ଅଜ୍ଞ ବାଟ ରହେ ନାହିଁ ।

ପୁରୁଷ ପକ୍ଷରେ ଉକ୍ତ ଅସ୍ତ୍ରୋପଚାର ବଡ଼ ସହଜ । ଏଥିପାଇଁ ତାକୁ ଗୋଟିଏ ଦିନ ମଧ୍ୟ ଶଯ୍ୟାଶାୟୀ ହେବାକୁ ପଡିବ ନାହିଁ । ମାତ୍ର ସ୍ତ୍ରୀ ପକ୍ଷରେ ଏହା ଟିକିଏ କଠିନ ଓ ସମୟ ସାପେକ୍ଷ ।

ଅଜ୍ଞ ଗୋଟିଏ କଥା ଏଠାରେ ମନେ ରଖିବାକୁ ହେବ ଯେ ଏପରି ଅସ୍ତ୍ରୋପଚାର ଅନୁଭୂତି ସମ୍ପନ୍ନ ବିଶେଷଜ୍ଞମାନଙ୍କ ଦ୍ୱାରାହିଁ କରାଯିବା ଉଚିତ । କାରଣ ପୁରୁଷର ଶୁକ୍ରନାଳୀ ପରିବର୍ତ୍ତେ ଭୁଲ-ବଶତଃ ଯଦି ଅଣ୍ଡକୋଷ ଧମନୀ କାଟି ଦିଆଯାଏ ତେବେ ପୁରୁଷ ସମ୍ପୂର୍ଣ୍ଣ କ୍ଲୀବ ହୋଇଯିବ । ଆଉ ଗୋଟିଏ ବିଷୟ ମଧ୍ୟ ଭାବିବାର କଥା । ଏପରି ଅସ୍ତ୍ରୋପଚାର ଦ୍ୱାରା ସ୍ଥାୟୀ ଭାବରେ ପ୍ରଜନନ ଶକ୍ତି ଲୋପପାଏ । ପରେ ଅଜ୍ଞ ଚାହିଁଲେ ତାହା ଫେରିଆସିବା ଅସମ୍ଭବ । ତେଣୁ ବହୁ ଭାବିଚିନ୍ତି ସ୍ତ୍ରୀ ପୁରୁଷ ଉଭୟେ ଏ ପ୍ରକାର ସିଦ୍ଧାନ୍ତଗ୍ରହଣ କରିବା ଉଚିତ । ଉତ୍ତେଜନାର ବଶବର୍ତ୍ତୀ ହୋଇ ହଠାତ ଏପରି କାର୍ଯ୍ୟ କରି ପକାଇଲେ ଯାବଜ୍ଜୀବନ ଉଭୟଙ୍କର ଅନୁତାପ ଭୋଗ କରିବାକୁ ପଡ଼ିବ । ଅଜ୍ଞ କେତେକ ଡାକ୍ତରଙ୍କ ମତରେ ଅସ୍ତ୍ର ଉପ-ଚାର ଦ୍ୱାରା ସ୍ତ୍ରୀର ଡିମ୍ବକୋଷ କାଟି ନିଆଗଲେ ତାର ପ୍ରାକୃତିକ କାମୋତ୍ତେଜନା ପ୍ରତିହତ ହୋଇପାରେ, କାହାର କାହାର ମଧ୍ୟ ଯୌବନ ଶ୍ରୀ ନଷ୍ଟ ହୋଇଯାଏ । ଅଜ୍ଞ ମଧ୍ୟ କେହି କେହି ସ୍ତ୍ରୀଲୋକ ଖୁବ୍ ମୋଟା ହୋଇ ଯାଆନ୍ତି ଏବଂ କାହାର କାହାର ପୁରୁଷଙ୍କ ପରି

ନିଶ ଦାଢ଼ି ଗଜୁରିପାରେ । ତେଣୁ ଅସ୍ତ୍ରୋପଚାରରେ ଜନ୍ମନିୟନ୍ତ୍ରଣ ବିଧିସଙ୍ଗତ ନୁହେ । ଯଦି କୌଣସି କାରଣରୁ ଡିମ୍ବକୋଷ ରୁଗ୍ଣ ହୋଇଯାଏ ତେବେ ଏହା କାଟି କାଢ଼ି ଦିଆ ଯାଇପାରେ ।



## ଜରାୟୁ ଅପସାରଣ

ଅସ୍ତ୍ରୋପଚାର ଦ୍ୱାରା ଜରାୟୁ ମଧ୍ୟ କାଢ଼ି ନିଆ ଯାଇପାରେ । କିନ୍ତୁ ଜନ୍ମନିୟନ୍ତ୍ରଣ ପାଇଁ ଏତେ ବଡ଼ ଅପକର୍ମ କରିବା ଉଚିତ ନୁହେଁ । କେବଳ ଅକର୍ମଣ୍ୟ ଓ ରୁଗ୍ଣ ଜରାୟୁ ପକ୍ଷେ ଏହା କରା ଯାଇପାରେ ।



## ଜନ୍ମ ନିରୋଧ ଇଂଜେକସନ୍

ବେଶ୍ୟା ଇତ୍ୟାଦି ଯେଉଁ ସ୍ତ୍ରୀଲୋକମାନେ ବିଭିନ୍ନ ପ୍ରକାର ବ୍ୟକ୍ତିଙ୍କ ସହ ଅତିରିକ୍ତ ସହବାସ କରନ୍ତି ସେମାନଙ୍କର ପ୍ରଜନନ ଶକ୍ତି ହ୍ରାସ ପାଏ । କାରଣ ବହୁ ଗୁଣବିଶିଷ୍ଟ ବହୁ ପରିମାଣ ଶୁକ୍ର ଗ୍ରହଣ କରିବା ହେତୁ ସେମାନଙ୍କ ରକ୍ତରେ ଏକପ୍ରକାର ବିଷ ଜାତ ହୁଏ । ଯାହାକି ଶୁକ୍ରକୀଟକୁ ଦେହରେ ଅକର୍ମୀ କରିଦିଏ । ଏହି ତତ୍ତ୍ୱ ଉପରେ ନିର୍ଭର କରି ସ୍ୱାମୀର କିମ୍ବା ଅନ୍ୟ କୌଣସି ଅଣ୍ଡିରା ପଶୁର ଶୁକ୍ରକୀଟକୁ ସ୍ତ୍ରୀ ଦେହରେ ଇଂଜେକ୍ସନ୍ ଆକାରରେ ଦିଆଯାଏ । ଫଳ ସ୍ୱରୂପ ସ୍ତ୍ରୀର ପ୍ରଜନନ ଶକ୍ତି ରହେ ନାହିଁ । ମାସକରେ ଦଶଟି ଇଂଜେକ୍ସନ୍ ସ୍ତ୍ରୀ ପିଗୃରେ ଦିଆଗଲେ ବର୍ଷେ ପର୍ଯ୍ୟନ୍ତ ଜନ୍ମନିରୋଧ ହୁଏ । ଅଧିକା ଦଶଟି ଦେଲେ ଅଧିକ ଦଶବର୍ଷ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହୁଏ, ଡାକ୍ତରଙ୍କ ପରାମର୍ଶ ନେବା ଆବଶ୍ୟକ ।





## ଏକ୍ସରେ ବା ରଞ୍ଜନରଶ୍ମିଦ୍ୱାରା ଜନ୍ମନିୟନ୍ତ୍ରଣ

ପୁରୁଷର ଅଣ୍ଡକୋଷରେ ଓ ସ୍ତ୍ରୀର ଡିମ୍ବକୋଷରେ ଏକ୍ସରେ ପକାଇବା ଫଳରେ ଡିମ୍ବାଣୁ ଓ ଶୁକ୍ରକୀଟ ପରିପକ୍ୱ ହୋଇପାରେ ନାହିଁ । ଫଳରେ ଗର୍ଭସଞ୍ଚାର ହୋଇପାରେ ନାହିଁ କିନ୍ତୁ କେତେ ସମୟ ପର୍ଯ୍ୟନ୍ତ କେଉଁ ପରିମାଣରେ ରଞ୍ଜନରଶ୍ମି ପକାଇଲେ କେତେ କାଳ ପର୍ଯ୍ୟନ୍ତ ଗର୍ଭ ନିୟନ୍ତ୍ରଣ ହେବ ତାହା ଏ ପର୍ଯ୍ୟନ୍ତ ଠିକ୍ ହୋଇ ନାହିଁ । ଶରୀର ଉପରେ ମଧ୍ୟ ଏହାର ବିପରୀତ ପ୍ରତିକ୍ରିୟା ହୋଇପାରେ । କମ୍ ବେଶୀ ହେଲେ ଏହାର ଫଳାଫଳ ଅନିଶ୍ଚିତ ହୋଇପାରେ । ତେଣୁ ଏ ପ୍ରଣାଳୀ ଠିକ୍ ନୁହେଁ ।

ଗରିବ ଓ ନିମ୍ନମଧ୍ୟବିତ୍ତ ଶ୍ରେଣୀର ଜନ ସାଧାରଣଙ୍କର ପକ୍ଷରେ "ନିରାପଦକାଳ" ଅର୍ଥାତ୍ ଋତୁର ଷୋଡ଼ଶଦିନ ଓ ଋତୁ ହେବାର ଦଶ ଦିନ ଥାଇ, ଏହି ସମୟ ବାଦ୍ ଦେଇ ସହବାସ କରିବା ବିଧେୟ । ଅଧିକ ମଧ୍ୟ କେତେକ ସହଜ ଓ ବିନା ଅର୍ଥବ୍ୟୟରେ କରଣୀୟ ଉପାୟମାନ ଅବଲମ୍ବନ କରାଯାଇ ପାରିବ । ଯାହା କି ପୂର୍ବରେ ବର୍ଣ୍ଣନା କରାଯାଇ ଅଛି । ଆଉ ମଧ୍ୟ କିଛି ଖର୍ଚ୍ଚ କରି ସ୍ପଞ୍ଜ, କ୍ୟାପ୍, ଜେଲି ବା ଯୋନି ଶୋଧନ ପ୍ରଣାଳୀ ମଧ୍ୟ ଗ୍ରହଣୀୟ । କିନ୍ତୁ ଲଗାପୁ ଦେହରେ ପରିଧାନ କରିବା ପେସାରୀ ବା କ୍ୟାପ୍ ବିପଜ୍ଜନକ ।



## ସୁନ୍ଦର ସନ୍ତାନ ହେବାର ଉପାୟ

ସୁନ୍ଦର ସନ୍ତାନ ଯଦି ଗୃହାନ୍ତି ତେବେ ଗର୍ଭିଣୀର କଦାକାର ରୂପ ବା ଦୃଶ୍ୟ ଦେଖିବା ଆଦୌ ଉଚିତ ନୁହେଁ । ଶୟନ କକ୍ଷରେ

ସୁନ୍ଦର ନାରୀ ପୁରୁଷ, ସୁନ୍ଦର ଶିଶୁ ଆଦିଙ୍କ ଛବି ଟାଙ୍ଗିବା ଦରକାର । ସବୁବେଳେ ମନରେ ସଚ୍ଚିନ୍ତା କରି ଦେବଦେବୀଙ୍କ ପାଖେ ଉପାସନାରେ ରତ ନିବିଷ୍ଟ କରିବା ଆବଶ୍ୟକ । କୌଣସି ସମୟରେ ଅସ୍ୱାଭାବିକ ଅବ-ସ୍ଥାରେ ରହିବ ନାହିଁ । ଦୁଧ, ଲହୁଣୀ ଆଦି ଯଥେଷ୍ଟ ଖାଇବ । ଅଙ୍କୁର ମଧ୍ୟ ଚୂନ ( Calcium ) ଓ ଅଳ୍ପ ଲୌହ ( Iron ) ମିଶ୍ରିତ ଖାଦ୍ୟ ଖାଇବ । ଏହା ଦ୍ୱାରା ଗର୍ଭସ୍ଥ ସନ୍ତାନ ନିଶ୍ଚୟ ସୁନ୍ଦର ଓ ସୁସ୍ଥ ସବଳ ହେବ ।



## କ'ଣ କଲେ ପୁତ୍ର ସନ୍ତାନ ଲାଭ ହେବ

ଯଦି ଗୋଟିଏ ପୁଅ ହେବା ଆବଶ୍ୟକ ମନେ କରନ୍ତି, ତେବେ ସହବାସ ପରେ ସ୍ତ୍ରୀ ତାହାଙ୍କ ଡାହାଣ ପଟେ ମୁହଁ କରି ଶୋଇବ ଏବଂ ନଡ଼ିଆ, ବାଦାମ, ଖଣ୍ଡିଆ ବାଛୁରୀ ଥିବା ଗାଈର ଦୁଧ ଖାଇବ । ମୁକ୍ତାଗୁଣ୍ଡ ୧ଗ୍ରେନ୍, ମୟୂରପୁଚ୍ଛ ଭସ୍ମ ଗ୍ରେନ୍, ସ୍ୱର୍ଣ୍ଣମାକ୍ଷିକ ଭସ୍ମ ୨ଗ୍ରେନ୍ ସ୍ୱର୍ଣ୍ଣଭସ୍ମ ଅର୍ଦ୍ଧଗ୍ରେନ୍ ଏ ସମସ୍ତ ମିଶାଇ ନଅ ପାନ କରି ଗର୍ଭର ୨ୟ ବା ୩ୟ ମାସରେ ତିନିଦିନ ପର୍ଯ୍ୟନ୍ତ ଖାଇଲେ ପୁତ୍ର ସନ୍ତାନ ହୁଏ । ( Dr. Satyavati's Family Planning )





# ଅଷ୍ଟମ ଅଧିକରଣ

## ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା

ଅପରିଣତ ବୟସରେ ସନ୍ତାନ ଗର୍ଭରେ ଧାରଣ ଓ ସନ୍ତାନର ଜନ୍ମଦାନ ଯେପରି ନାରୀ ପକ୍ଷରେ କ୍ଷତିକର, ବିଗତଶକ୍ତି-ଜରାଜୀର୍ଣ୍ଣ ଦେହରେ ସନ୍ତାନୋତ୍ପାଦନ ମଧ୍ୟ ସେହିପରି କ୍ଷତିକର । ପ୍ରକୃତିର ବିଧାନ ଅନୁସାରେ ନାରୀମାନଙ୍କର ସନ୍ତାନ ଉତ୍ପାଦନର ବୟସ ପ୍ରାୟ ସୀମାବଦ୍ଧ ଅଛି । ସାଧାରଣତଃ ନାରୀ ୪୦।୪୫ ବର୍ଷ ବୟସ ପର୍ଯ୍ୟନ୍ତ ଗର୍ଭ ଗ୍ରହଣ କରିପାରେ କିନ୍ତୁ ଓ ୬୦।୭୦ ବର୍ଷର ବୃଦ୍ଧର ମଧ୍ୟ ଗର୍ଭଦାନ-ଶକ୍ତି ଥାଏ ଏବଂ ସେମାନଙ୍କର ଶୁକ୍ରକୀଟ କ୍ଷୀଣ ଓ ଦୁର୍ବଳ । ନିର୍ବାଣୋନ୍ମୁଖ ଦୀପ ଶିଖା ପରି ଏହି ୫୦।୬୦ ବର୍ଷ ବୟସର ବିଗତ ଯୌବନ ପୁରୁଷମାନଙ୍କର ଶକ୍ତିର ହ୍ରାସ ହୋଇଥିଲେ ସୁଦ୍ଧା ବାସନା ପ୍ରବଳ ହୋଇ ଉଠେ । ଏଣୁ ସ୍ତ୍ରୀର ମୃତ୍ୟୁପରେ ସେମାନେ ଗୋଟିଏ ନବୋଢ଼ା ବାଳିକା ବଧୂ ସନ୍ଧାନରେ ବୁଲନ୍ତି ଏବଂ ଅର୍ଥଲୋଭ ଦେଖାଇ ଦରିଦ୍ର ପିତା ମାତାମାନଙ୍କୁ ସ୍ୱବଶକୁ ଆଣି ତାଙ୍କର କନ୍ୟାର ପାଣି ଗ୍ରହଣ କରନ୍ତି ।

ଆମ ଦେଶରେ ବିଶେଷତଃ ଉଚ୍ଚବର୍ଣ୍ଣର ସମାଜରେ ଯଦି *ପୁନର୍ଭୂ କନ୍ୟାର ପୁନଃ ପତିଗ୍ରହଣ କରିବାର ଅଧିକାର ଆନ୍ତା ତେବେ ଆଜ କହିବାର କିଛି ନଥିଲା । ଏହି ପୁନର୍ଭୂ ଓ ବିଧବା

---

* କାମବିଜ୍ଞାନ ପ୍ରଥମ ଖଣ୍ଡ ୧୫୩ ଠାରୁ ୧୫୩ ପୃଷ୍ଠା ଦେଖ ।





ରମଣୀମାନେ ୫୦ । ୫୫ ବର୍ଷ ବୟସର ପ୍ରୌଢ଼ମାନଙ୍କୁ ପୁନର୍ବିବାହ କଲେ ବରଂ ଦେଶ ଓ ସମାଜର ଉପକାର ହୁଅନ୍ତା । କିନ୍ତୁ ୧୫ । ୧୬ ବା ୧୭ । ୧୮ ବର୍ଷ ବୟସର ତରୁଣୀ ୫୦ । ୫୫ ବର୍ଷର ବୃଦ୍ଧର ଗଳାରେ ଝୁଲିବା, ଏହି କଥାଟି ଚିନ୍ତା କରିବାହିଁ ବିସଦୃଶ ବୋଧହୁଏ । ଏହା କେବଳ ବୃଦ୍ଧମନୋବୃତ୍ତି ସମ୍ପନ୍ନ ନ ହେଲେ ଅନ୍ୟ କେହି ଅନୁମୋଦନ କରିବେ ନାହିଁ । ହୋଇପାରେ, ବୃଦ୍ଧ ପ୍ରଚୁର ଧନଶାଳୀ । ହୁଏତ, ପାତ୍ରୀ ନିତାନ୍ତ ଦରିଦ୍ର ମାତା ପିତାର ସନ୍ତାନ । ବୃଦ୍ଧବର ହୁଏତ ପାତ୍ରୀକୁ ଭୋଗ ବିଳାସରେ ବୁଡ଼ାଇ ରଖି ରାଜରାଣୀ କରି ପାରେ । କିନ୍ତୁ ଅର୍ଥ କ'ଣ ଜଗତରେ ଏକମାତ୍ର ଐଶ୍ୱର୍ଯ୍ୟ ? ମନୁଷ୍ୟ ଜୀବନରେ ଅର୍ଥ ସହିତ କାମର ମଧ୍ୟ ଯଥେଷ୍ଟ ପ୍ରୟୋଜନ ଅଛି । ଏହି କାମ ବୟସର ସାମ୍ୟ ବ୍ୟତୀତ କଦାପି ସହଜରେ ସାଧନ କରାଯାଇ ନ ପାରେ । ଯେଉଁ ଯୁବତୀର ସ୍ୱାମୀ ତା'ର ବାପ ଅଜାର ସମ ବୟସ୍କ ସେ ସତୀ, ସାଧ୍ୱୀ ପତିବ୍ରତା ହୋଇପାରେ, ସ୍ତ୍ରୀର ସମସ୍ତ ଦାୟିତ୍ୱ ପାଳନ କରିପାରେ, କିନ୍ତୁ ତା'ର ମନରେ ଗୋଟିଏ ବିକ୍ଷୁବ୍ଧ ଭାବ ନିଶ୍ଚୟ ରହିଥିବ ଓ ସେ ତା'ର ନିଗୂଢ଼ତମ ଅନ୍ତର ପ୍ରଦେଶରେ ନିଶ୍ଚୟ ଅସୁଖୀ ହେବ । ସ୍ୱାମୀ ତାହାର ଦେହ-ରାଜ୍ୟର ଅଧୀଶ୍ୱର ହୋଇପାରେ କିନ୍ତୁ ହୃଦ ରାଜ୍ୟର ଅର୍ଗଳ ସ୍ୱାମୀ ନିମିତ୍ତ ବନ୍ଦ ରହିଯାଏ । ଅବଶ୍ୟ ଏଥିପାଇଁ ସଂସାରରେ କିଛି ଅଚଳ ହୁଏ ନାହିଁ, କିନ୍ତୁ କେତେକ ବର୍ଷପରେ ବୃଦ୍ଧ ଯେତେବେଳେ ତରୁଣୀ ପତ୍ନୀକୁ ସେହି ପ୍ରଲୋଭନମୟ ଉପଭୋଗର ଅସଂଖ୍ୟ ସାମଗ୍ରୀ-ମଣ୍ଡିତ ସଂସାରରେ ଏକାକିନୀ କରି ମହାପ୍ରସ୍ଥାନ କରେ ସେତେବେଳେ ତାହାର ତରୁଣୀ ସ୍ତ୍ରୀ ବୁଝେ, ତାହାର ସ୍ୱାମୀ ଥିଲା ତାହାର ପରମ ଶତ୍ରୁ—, ସେ ତାହାକୁ ହତ୍ୟା



କଣରା ଅପେକ୍ଷା ଅଧିକ ନୃଶଂସ ଶତ୍ରୁତା କରି ଯାଉଅଛି—ତା'ର ଯୌବନକୁ ବୈଧବ୍ୟ-କାରାଗାରରେ ଅବଦ୍ଧକରି ଚିର ଦିନ ପାଇଁ ତାଙ୍କୁ ଜଳିପୋଡ଼ି ମାରିବାର ବାଟ ଉନ୍ମୁକ୍ତ କରିଦେଇ ଯାଉଅଛି । ପରିହାସ ସ୍ଥଳରେ ନିମ୍ନରେ କେତୋଟି ଶ୍ଳୋକ ଦେଲେ ତାହା ସୁଖପାଠ୍ୟ ହେବ ବୋଲି ଆଶାକରୁ ଯାଏ—

ପାଣୌ ଗୃହୀତାପି ପୁରସ୍କୃତାପି,
ସ୍ନେହେନ ନିତ୍ୟଂ ପରିରକ୍ଷିତାପି ।
ପରୋପକାରାୟ ଭବେନ୍ନବାନା,
ବୃଦ୍ଧସ୍ୟ ଭାର୍ଯ୍ୟା କରଦୀପିକେବ ।

ହସ୍ତେ ଧରି ରଖି ତାଙ୍କୁ ଦିଅ ଯେତେ ଧନ ।
ଯେତେ ପାର ମନ ପ୍ରାଣ କର ସମର୍ପଣ ।
ପରର ସୁବିଧା ହେତୁ ବୃଦ୍ଧର ଯୁବତୀ,
ହସ୍ତ ଧୃତ ଦୀପ ପରି ସଦା ଦିଏ ମତି ।

ଶଶିନୀବ ହିମାର୍ତ୍ତାନାଂ ଘର୍ମାର୍ତ୍ତାନାଂ ରବାବିବ,
ମନୋ ନ ରମତେ ସ୍ତ୍ରୀଣାଂ ସ୍ୱାମୀନ୍ୟତି ଜରାତୁରେ ।

ଚନ୍ଦ୍ର ଭଲ ନ ଲାଗଇ ଶୀତରେ କମ୍ପିଲେ
ସୂର୍ଯ୍ୟ ଭଲ ନ ଲାଗଇ ଝାଳ ବୋହୁଥିଲେ ।
ସେହିପରି ଜରାଜୀର୍ଣ୍ଣ ପତିର ଉପର
ଅନୁରାଗ ନ ବହଇ ଯୁବତୀ ପତ୍ନୀର ।







# ନାରୀ ପୁରୁଷର ପ୍ରକାର ଭେଦ

ଶାସ୍ତ୍ରରେ ଗ୍ରୂର ଜାତି ପୁରୁଷ ଏବଂ ଗ୍ରୂର ଜାତି ରମଣୀର ଚିହ୍ନ ଏବଂ ଲକ୍ଷଣ ଇତ୍ୟାଦି ବିଶେଷ ଭାବେ ବର୍ଣ୍ଣିତ ହୋଇଅଛି । ଉକ୍ତ ବିଷ୍ନାନ ପଞ୍ଚଦଶ ପରିଚ୍ଛେଦଟି ପଢ଼ିଲେ ପାଠକେ ତାହାର ବିସ୍ତୃତ ବର୍ଣ୍ଣନା ପାଇ ପାରିବେ । କିନ୍ତୁ ମହର୍ଷି ସିଦ୍ଧ ନାଗାର୍ଜ୍ଜୁନ କହି ଅଛନ୍ତି ଯେ ଏହା ଭିନ୍ନ ପ୍ରତ୍ୟେକ ଜାତିରେ ଆହୁରି ମଧ୍ୟ ଗ୍ରୂର ପ୍ରକାର ମିଶ୍ର ଜାତି ଅଛନ୍ତି ଅର୍ଥାତ୍ ଶଶ, ମୃଗ, ବୃଷ, ଓ ଅଶ୍ୱ, ଏହି ଗ୍ରୂର ଜାତି ନର ଏବଂ ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ ଓ ହସ୍ତିନୀ, ଏହି ଗ୍ରୂର ଜାତି ରମଣୀ ବ୍ୟତୀତ ଆହୁରି ଷୋଳ ପ୍ରକାର ମିଶ୍ରଜାତୀୟ ନର ଏବଂ ଷୋଳ ପ୍ରକାର ମିଶ୍ର ଜାତୀୟ ରମଣୀ ଅଛନ୍ତି । ଯଥା,—

(୧ମ) ପଦ୍ମିନୀ ପଦ୍ମିନୀ, ପଦ୍ମିନୀ ଚିତ୍ରିଣୀ, ପଦ୍ମିନୀ ଶଙ୍ଖିନୀ, ପଦ୍ମିନୀ ହସ୍ତିନୀ । ଅର୍ଥାତ୍,—ପଦ୍ମିନୀ ପଦ୍ମିନୀର ଲକ୍ଷଣ ହେଉଛି ଯେ, ପଦ୍ମିନୀ ଅପେକ୍ଷା ମଧ୍ୟ ରୂପରେ ଗୁଣରେ ଶ୍ରେଷ୍ଠ । ଯେଉଁ ରମଣୀଠାରେ ପଦ୍ମିନୀର ଚିହ୍ନ ଓ ଲକ୍ଷଣ ବେଶୀ ପରିମାଣରେ ଅଛି ଓ ସାମାନ୍ୟ ପରିମାଣରେ ଚିତ୍ରିଣୀର ଲକ୍ଷଣ ବିଦ୍ୟମାନ ତାହାକୁ ପଦ୍ମିନୀ ଚିତ୍ରିଣୀ ବୋଲାଯାଏ । ଏହିପରି ପଦ୍ମିନୀ ଶଙ୍ଖିନୀ ଇତ୍ୟାଦି ବୁଝିବାକୁ ହେବ ।

(୨ୟ) ଚିତ୍ରିଣୀ ପଦ୍ମିନୀ, ଚିତ୍ରିଣୀ ଚିତ୍ରିଣୀ, ଚିତ୍ରିଣୀ ଶଙ୍ଖିନୀ ଏବଂ ଚିତ୍ରିଣୀ ହସ୍ତିନୀ । ଅର୍ଥାତ୍—ଯାହାଠାରେ ଚିତ୍ରିଣୀର ଚିହ୍ନ ବହୁଳ ପରିମାଣରେ ଥାଇ ଓ ସାମାନ୍ୟ ପରିମାଣରେ ପଦ୍ମିନୀର ଚିହ୍ନ ବର୍ତ୍ତମାନ ତାହାକୁ ଚିତ୍ରିଣୀ ପଦ୍ମିନୀ ବୋଲଯାଏ । ଏହିରୂପେ ଅନ୍ୟାନ୍ୟ ଜାତି ବୁଝି ନେବାକୁ ହେବ ।



(୩ୟ) ଶଙ୍ଖିନୀ ପଦ୍ମିନୀ, ଶଙ୍ଖିନୀ ଚିତ୍ରିଣୀ, ଶଙ୍ଖିନୀ— ଶଙ୍ଖିନୀ ଓ ଶଙ୍ଖିନୀ ହସ୍ତିନୀ ।

(୪ର୍ଥ) ହସ୍ତିନୀ ପଦ୍ମିନୀ, ହସ୍ତିନୀ ଚିତ୍ରିଣୀ, ହସ୍ତିନୀ ଶଙ୍ଖିନୀ ଓ ହସ୍ତିନୀ ହସ୍ତିନୀ ।

ଏହି ଷୋଳ ପ୍ରକାର ମିଶ୍ର ଜାତୀୟ ନାରୀ ଏହିପରି ପୁରୁଷ ମଧ୍ୟରେ ଷୋଳ ପ୍ରକାର ମିଶ୍ର ଜାତୀୟ ପୁରୁଷ ଅଛନ୍ତି । ଯଥା—

(୧ମ) ଶଶଶଶ, ଶଶମୃଗ ଶଶବୃଷ ଓ ଶଶଅଶ୍ୱ ।
(୨ୟ) ମୃଗଶଶ, ମୃଗମୃଗ, ମୃଗବୃଷ, ଓ ମୃଗଅଶ୍ୱ ।
(୩ୟ) ବୃଷଶଶ, ବୃଷମୃଗ, ବୃଷବୃଷ ଓ ବୃଷଅଶ୍ୱ ।
(୪ର୍ଥ) ଅଶ୍ୱଶଶ, ଅଶ୍ୱମୃଗ, ଅଶ୍ୱବୃଷ, ଓ ଅଶ୍ୱଅଶ୍ୱ ।

ଏହି ଷୋଳ ପ୍ରକାର ମିଶ୍ର ଜାତୀୟ ପୁରୁଷ ଅଛନ୍ତି ।

ବିଶେଷ ଅନୁସନ୍ଧାନ ପୂର୍ବକ ଦେଖିଲେ ଜାଣି ପାରିବ ଯେ, ମହାତ୍ମା ସିଦ୍ଧ ନାଗାର୍ଜ୍ଜୁନଙ୍କ ବାକ୍ୟ ଯେ ସମ୍ପୂର୍ଣ୍ଣ ସତ୍ୟ, ଏଥିରେ ସନ୍ଦେହ ନାହିଁ । କାରଣ ଶୁଦ୍ଧଜାତ ପୁରୁଷ ଓ ଶୁଦ୍ଧ ଜାତ ରମଣୀର ବିଷୟ ଶାସ୍ତ୍ରରେ ଯାହା ଲକ୍ଷଣ ଅଛି, ପ୍ରକୃତ ସେହିପରି ପୁରୁଷ କିମ୍ବା ରମଣୀ ପ୍ରାୟ ଦେଖିବାକୁ ମିଳେ ନାହିଁ । ତଥାପି ସେପରି ପୁରୁଷ ବା ନାରୀ ପୃଥିବୀରେ ନ ଥିବେ ଏପରି ନୁହେଁ । କିନ୍ତୁ ସେମାନଙ୍କର ପରିମାଣ ଖୁବ୍ କମ୍ । ବର୍ତ୍ତମାନ ଉପରୋକ୍ତ ମିଶ୍ରଜାତୀୟ ନରନାରୀର ସଂଖ୍ୟା ଅଧିକ ଦେଖିବାକୁ ମିଳେ ।

ମହା ଋଷି ବାତ୍ସ୍ୟାୟନ ତାଙ୍କ କାମ ଶାସ୍ତ୍ରରେ ଲିଙ୍ଗ ଓ ଯୋନିର ପ୍ରମାଣାନୁସାରେ ନର ନାରୀଙ୍କୁ ବିଭାଗ କରି ଅଛନ୍ତି । ସେ





ଭଦ୍ରଚନ୍ଦ୍ର, ଶଶ, ବୃଷ, ଓ ଅଶ୍ୱ । ଏହି ତିନି ପ୍ରକାର ପୁରୁଷ ' ମୃଗୀ ବଡ଼ବା ଏବଂ ହସ୍ତିନୀ ଏହି ତିନି ପ୍ରକାର ନାରୀ ।

ଶଶ ପୁରୁଷର ଲିଙ୍ଗର ଦୈର୍ଘ୍ୟ ଛ' ଅଙ୍ଗୁଳ, ବୃଷ ପୁରୁଷର ନ' ଅଙ୍ଗୁଳ ଓ ଅଶ୍ୱ ପୁରୁଷର ଦ୍ୱାଦଶ ଅଙ୍ଗୁଳ ପରିମାଣ ଅଟେ । ତଦନୁସାରେ ଲିଙ୍ଗର ସ୍ଥୂଳତା ବା ଚୌଡ଼ା କମବେଶୀ ହୋଇ ଯାଏ । କାହାରି କାହାରି ଲିଙ୍ଗ କ୍ଷୁଦ୍ର ହେଲେ ମଧ୍ୟ ଅସ୍ୱାଭାବିକ ଭାବେ ମୋଟା ହୋଇଥାଏ ।

ସେହିପରି ମୃଗୀ ରମଣୀର ଯୋନିର ଗଭୀରତା ଛ'ଅଙ୍ଗୁଳ, ବଡ଼ବାର ନ'ଅଙ୍ଗୁଳ ଓ ହସ୍ତିନୀର ଦ୍ୱାଦଶଅଙ୍ଗୁଳ ପରିମାଣ ଅଟେ ।

ନାରୀ ପୁରୁଷର ଜାତି ବିଭାଗ ସମ୍ବନ୍ଧେ କାମବିଜ୍ଞାନ ପ୍ରଥମ ଖଣ୍ଡରେ ବିସ୍ତୃତଭାବେ ଆଲୋଚନା କରାଯାଇ ଅଛି । ସେ ପୁସ୍ତକର ଚତୁର୍ଦ୍ଦଶ ଅଧିକରଣରେ ତାହାର ବିସ୍ତୃତ ଆଲୋଚନା ପାଠକେ ପାଇ ପାରିବେ । କିନ୍ତୁରେ କାମକଳା ବା ରତିକ୍ରୀଡ଼ା ସମ୍ବନ୍ଧରେ କିଛି ଆଲୋଚନା କରିବାକୁ ଯାଉଥିବାରୁ ନର ନାରୀର ଜାତି ବିଭାଗ ନେଇ ଏଠାରେ ପୁନରାବୃତ୍ତି କରାଯାଇଅଛି ।



# ସୁରତଭେଦ ବା କାମକଳା

ସୃଷ୍ଟିର ଆଦି କାଳରୁ ନର ନାରୀର ସୃଜନ-ଶକ୍ତି ବଳରେ ଏ ନର ସୃଷ୍ଟି ଗଢ଼ି ଚାଲିଛି । କେଉଁ ଅନନ୍ତ କାଳରୁ ଏହି ଚାଲି ଆସୁଅଛି । କେଉଁ ଅନନ୍ତ କାଳଯାଏ ଏହା ଚାଲିଥିବ ତାହା କେହି କହି ପାରିବେ ନାହିଁ । କିନ୍ତୁ ପଶୁ-ପକ୍ଷୀ, କୀଟ, ପତଙ୍ଗ ଓ ମାନବ ଆଦି ସମସ୍ତେ ସ୍ତ୍ରୀ ସମ୍ଭୋଗ କରିବା ପାଇଁ ବ୍ୟାକୁଳ ।

କାମ-ବିଜ୍ଞାନ ୨ୟ



[ ନଂ: ୧୪ ]

ଶଯ୍ୟାବସ୍ଥାରେ ବାଷ୍ପସ୍ନାନର ଦୃଶ୍ୟ

( ୩୪୭ ପୃଷ୍ଠା ଦ୍ରଷ୍ଟବ୍ୟ )



[ ନଂ: ୨୫ ]

ବସିବ ବସ୍ଥାରେ ବାଷ୍ପସ୍ନାନ ଦୃଶ୍ୟ

( [illegible] ପୃଷ୍ଠା ଦ୍ରଷ୍ଟବ୍ୟ )



[ ନଂ: ୨୬ ]

ପେଡ଼ ସ୍ନାନ ( HIP BATHS )

( [illegible] ପୃଷ୍ଠା ଦ୍ରଷ୍ଟବ୍ୟ )



ମାନବ ମାତ୍ରେ ଯୌବନାବସ୍ଥାରେ ଯୌନ ସମ୍ଭୋଗ ପାଇଁ ଉଦଗ୍ରୀବ । କିନ୍ତୁ ତା'ର ବୁଝିବା ଉଚିତ ଯେ, ସ୍ତ୍ରୀ-ସାଧନ ବ୍ୟାପାର ଶତ୍ରୁ ରାଜ୍ୟ ଜୟ କରିବା ଅପେକ୍ଷା କୌଣସି ଅଂଶରେ ନ୍ୟୂନ ନୁହେ । ସୁତରାଂ ଯୌନଶାସ୍ତ୍ର-ଜ୍ଞାନ-ହୀନ ବ୍ୟକ୍ତି ପକ୍ଷରେ ସ୍ତ୍ରୀ ସାଧନ ନିତାନ୍ତ ଅସମ୍ଭବ ବ୍ୟାପାର ବୋଲି ମନେ ହୁଏ । ଏଣୁ ପ୍ରତ୍ୟେକ ପୁରୁଷ ସ୍ତ୍ରୀ ଠିକ୍ ବିବାହ ପୂର୍ବରୁ ଯୌନ ସମ୍ବନ୍ଧୀୟ ଜ୍ଞାନ ଅର୍ଜନ କରି ଏ ବାଟରେ ପାଦ ପକାଇବା ଉଚିତ । ତାହା ହେଲେ ସଂସାର ସୁଖମୟ ହୋଇ ଦମ୍ପତି ସ୍ୱର୍ଗୀୟ ଆନନ୍ଦ ପାଇ ପାରିବେ ।

କାମ ଶାସ୍ତ୍ରମାନଙ୍କରେ ଅନେକ ପ୍ରକାର ବନ୍ଧ ବା ଆସନ ସମ୍ବନ୍ଧରେ ବିସ୍ତୃତ ଆଲୋଚନା ହୋଇଅଛି । କାହାରି ମତରେ ଏହା ୬୪ ପ୍ରକାର ଅଟେ । ଏହାକୁ ପାଞ୍ଚାଳକୀ ଚତୁଃଷଷ୍ଟି କଳା ବୋଲି-ଯାଏ । କିନ୍ତୁ କାହାରି କାହାରି ମତରେ ଏହା ୮୪ ପ୍ରକାର । ପାଶ୍ଚାତ୍ୟ ଯୌନଶାସ୍ତ୍ରମାନଙ୍କରେ ଏହାର ପ୍ରକାରଭେଦ ଶତାଧିକ ବୋଲି ବର୍ଣ୍ଣନା କରାଯାଇ ଅଛି । ଏହି ବନ୍ଧ ବା ଆସନ ମଧ୍ୟରୁ ଅଧିକାଂଶ ସହବାସ ପ୍ରଣାଳୀରେ ସହବାସ କଲେ ଦମ୍ପତି ଚରମ ସୁଖ ପାଇ ପାରନ୍ତି ନାହିଁ । ଆଉ କେତେକ ବନ୍ଧ ଅଛି ସେ ବନ୍ଧରେ ସହବାସ କଲେ ସ୍ତ୍ରୀର ପ୍ରାୟ ଗର୍ଭସଞ୍ଚାର ହୋଇପାରେ ନା । ଆଉ କେତେକ ମଧ୍ୟ ଅଛି ସେଥିରେ ସ୍ତ୍ରୀର ଗର୍ଭସଞ୍ଚାର ହେବାର ସମ୍ଭାବନା ଥାଏ ।

ଏଣୁ ଏଠାରେ ଆମର ଆଲୋଚ୍ୟ ବିଷୟ, କେଉଁ ବନ୍ଧରେ ସହବାସ କଲେ ତାହା ଜନ୍ମନିୟନ୍ତ୍ରଣ ପକ୍ଷରେ ଦରକାରୀ ଏବଂ କେଉଁ ବନ୍ଧର ଆଶ୍ରୟ ନେଲେ ସନ୍ତାନକାମୀ ଦମ୍ପତି ସନ୍ତାନ ଲାଭ କରି ପାରିବେ । ଏଣୁ ସଂସ୍କୃତ କାମଶାସ୍ତ୍ର ଅନଙ୍ଗରଙ୍ଗର କେତେକ





ବଂର ପ୍ରତି ସୂଚକ ସ୍ୱାମୀ ସ୍ତ୍ରୀଙ୍କ ସୁବିଧାର୍ଥେ ଶ୍ଳୋକ ଓ ଅର୍ଥ ସହ ନିମ୍ନରେ ଦିଆଗଲା ।

କିନ୍ତୁ ମନେ ରଖିବାକୁ ହେବ ଗର୍ଭାଧାନ ହେବା ଦମ୍ପତିର ଭାଗ୍ୟ ଉପରେ ନିର୍ଭରକରେ ବୋଲି ସନ୍ଥଙ୍କର ବିଶ୍ୱାସ । ଏହା କାହାର କରାୟତ୍ତ ନୁହେଁ । ଅମୁକ ବନ୍ଧ ବା ଆସନରେ ସହବାସ କଲେ ଯେ ଗର୍ଭସ୍ଥାୟୀ ହେବ, ଏହା କହିବା ସହଜ ନୁହେଁ । ତଥାପି ଏହା ରାଅଙ୍କୁ .ବତା ମାସ ।

ସାମ୍ପ୍ରତଂ ନୁ ରୂପାନ ପ୍ରବିଧାୟ ପୂର୍ବ ବନ୍ଧଃ ପୁମାନ୍‌ବାହ୍ୟରତୋପସୃଷ୍ଟାନ
ବିଧିଶ୍ଳଥୀ ଭୂତବରାଙ୍ଗଦେଶାଂ ଭଜେତ କାନ୍ତାଂ ସ୍ମରକେଳିରଙ୍ଗେ ॥

ଦୃଢ଼ାପି ନାରୀ ଶ୍ଳଥତାମୁପୈତି ପ୍ରସାରଣା ଦୂରୁଯୁଗସ୍ୟ ସଦ୍ୟଃ
ଅପିଶ୍ଳଥା ସଂଯମିତୋରୁଯୁଗ୍ମା ଗଚ୍ଛେଦ୍‌ ଦୃଢ଼ତ୍ୱଂ ସୁରତପ୍ରୟୋଗେ ॥
ଉତ୍ତାନକଂ ତିର୍ଯ୍ୟଗଥୋପଥି ତାର୍ଯ୍ୟଂସ୍ଥିତଂ ତଥୈବାନତଂ ରତଜ୍ଞୈଃ
ପଞ୍ଚପ୍ରକାରଂ ସୁରତଂ ପ୍ରଦିଷ୍ଟଂ ତସ୍ୟ ପ୍ରଭେଦାନ୍‌କ୍ରମତୋ ବ୍ରବୀମି ॥

ଅର୍ଥ—ବିଜ୍ଞ ପୁରୁଷ ବାହ୍ୟରତି ଉପସୃଷ୍ଟ ଗୁଡ଼ିକ ବିଧାନାନୁସାରେ ଅଙ୍ଗ ଶ୍ଳଥ ହୋଇଥିବା ନାରୀକୁ ସ୍ମରକେଳୀ ରଙ୍ଗରେ ସେବା କରିବ । ନାରୀ ଯେତେ ଦୃଢ଼ହେଲେ ମଧ୍ୟ ଉରୁଦ୍ୱୟକୁ ପ୍ରସାରଣ କରିଦେଲେ ହଠାତ୍ ଶ୍ଳଥତାକୁ ପ୍ରାପ୍ତହୁଏ । ନାରୀ ଯଦି ଶ୍ଳଥ ହୋଇ ଥାଏ ତାହା ହେଲେ ସୁରତ ପ୍ରୟୋଗ ବେଳେ ଉରୁଦ୍ୱୟକୁ ସଂଯମିତ କରିଦେଲେ ଦୃଢ଼ତ୍ୱକୁ ପ୍ରାପ୍ତ ହୁଏ । ରତିଜ୍ଞମାନେ ଉତ୍ତାନକ, ତିର୍ଯ୍ୟକ, ଉପଥିତାଙ୍କ, ସ୍ଥିତ, ଅନତକ, ଏହିପରି ୫ପ୍ରକାର ସୁରତ ବର୍ଣ୍ଣନା କରିଅଛନ୍ତି । କ୍ରମ ଅନୁସାରେ ତା'ର ଭେଦ କହୁଅଛୁ



( ଜଗ୍ରାନତ—ଚଭୃତହୋଇ, ତୀର୍ଯ୍ୟକ୍—ବକ୍ରହୋଇ, ଉଦ୍ଧୃତାଷ—ଟେକି ହୋଇ, ସ୍ଥିତ—ବସି, ଅନତଭ—ନଇଁ )।

---

# ଉତ୍ତାନକ ( ଚିତ୍ ) ବନ୍ଧ

## ସମପାଦ

କାଧାସ୍ୱ ପାଦୌରମଣୀଂଯଯୋଷ୍ଟେଦୁତ୍ତାନସୁପ୍ତା ରମତେ ପୁରନ୍ଧ୍ରୀ।
ରତପ୍ରବନ୍ଧଂ ସମପାଦସଂଜ୍ଞଂ ପ୍ରୋଚୁସ୍ତଦା ଭୋଗବଧାନଦକ୍ଷାଃ।

ଅର୍ଥ—ଉତ୍ତାନସୁପ୍ତା ରମଣୀ ପାଦଦ୍ୱୟକୁ ସ୍ୱାମୀର ସ୍କନ୍ଧ ଉପରେ ରଖି ଯଦି ରମଣ କରାଏ, ତାହା ହେଲେ ସେହି ରତି-ପ୍ରବନ୍ଧକୁ ଭୋଗ ବିଳାସ-ଦକ୍ଷ ଲୋକମାନେ ସମପାଦ କହନ୍ତି।

ଏ ବନ୍ଧରେ ଯଦି ଶଶ ଜାତୀୟ ପୁରୁଷ ସହିତ ମୃଗୀ ଜାତୀୟା ରମଣୀ, ବୃଷ ସହିତ ବଡ଼ବା, ଓ ଅଶ୍ୱ ସହିତ ହସ୍ତିନୀର ସହବାସ ହୁଏ ତେବେ ଉଭୟେ ଚରମ ତୃପ୍ତି ପାଇଥାନ୍ତି। ସନ୍ତାନକାମୀ ଦମ୍ପତିର ଏହି ବନ୍ଧ ଆଚରଣ କରିବା।

---

## ନାଗର ବନ୍ଧ

ଉତ୍ତାନକାନ୍ତ୍ୟାଃ ସ୍ମରମନ୍ଦିରୋପସ୍ଥିତଦୃଢ଼ୋରୁଦ୍ୱୟମୂଦ୍ଧୃତାନ୍ତ୍ୟା।
ସଂସ୍ଥାପ୍ୟ ବାହ୍ୟଂ କଟିତୋ ରମେତ କାନ୍ତସ୍ତଦା ସ୍ୟାଦ୍ଭୁଜ ନାଗରାଖ୍ୟଃ।

ଅର୍ଥ—ଚିତହୋଇ ଶୟନ କରିଥିବା ସ୍ତ୍ରୀର ସ୍ମରସଦନ ନିକଟସ୍ଥ ଉରୁଦ୍ୱୟକୁ ଉଠାଇ ଦେଇ ନିଜ ଅଣ୍ଟାର ବାହାରେ ରଖି ଯଦି କାନ୍ତ ରମଣ କରେ, ତେବେ ତାହା ନାଗର ବନ୍ଧ ହୁଏ।





ସନ୍ତାନ କାମୀ ଦମ୍ପତ ପକ୍ଷେ ଏ ବନ୍ଧ କର୍ତ୍ତବ୍ୟ । କିନ୍ତୁ କ୍ଷୁଦ୍ର ଉପସ୍ଥ ବଶିଷ୍ଟ ପୁରୁଷ ବୃହତ-ଉଗବଶିଷ୍ଟା ନାରୀକୁ ଏ ବନ୍ଧରେ ଚରମ ତୃପ୍ତି ଦେଇପାରେ ନାହିଁ ।

---

## ତ୍ରିବକ୍ରମ

ସ୍ୱପ୍ରୋଙ୍‍ଘ୍ରିମେକଂ ବନିଧାପ୍ୟ ଭୂମା-ବନ୍ୟଂ ସ୍ୱମୌଲୌ
ନିଜପାଦଯୁଗ୍ମମ୍ ।
ପୃଥ୍ୟାଂ ସମାଧାପ୍ୟ ରମେତ ଭର୍ତ୍ତା ତ୍ରିବକ୍ରମାଖ୍ୟଂ କରଣଂତଦା ସ୍ୟାତ୍

ଅର୍ଥ—ସ୍ୱାମୀ ସ୍ତ୍ରୀର ଗୋଟିଏ ଗୋଡ଼କୁ ଭୂମି ଉପରେ ଏବଂ ଅନ୍ୟଟିକୁ ନିଜ ମୁଣ୍ଡ ଉପରେ, ନିଜ ପଦଦ୍ୱୟକୁ ଭୂମି ଉପରେ ରଖି ଯଦି ରମଣ କରେ ତେବେ ତାହା ତ୍ରିବକ୍ରମ ବନ୍ଧ ହୁଏ ।

ଏ ବନ୍ଧରେ ସନ୍ତାନ-ସମ୍ଭବ ହୋଇପାରେ ।

---

## ବ୍ୟୋମପଦ

ତଳ୍ପପ୍ରସୁପ୍ତା ନିଜପାଦଯୁଗ୍ମ ମୂର୍ଦ୍ଧ୍ନି ବଧତ୍ତେ ରମଣୀ କରାଭ୍ୟାମ୍ ।
ସ୍ତନୌ ଗୃହୀତ୍ୱାଥ ଭଜେତ କାନ୍ତୋ ବନ୍ଧସ୍ତଦା ବ୍ୟୋମପଦାଖ୍ୟ ଉକ୍ତଃ

ଅର୍ଥ—ଶଯ୍ୟାରେ ଶୋଇଥିବା ସ୍ତ୍ରୀ ନିଜର ପଦଦ୍ୱୟକୁ ହସ୍ତଦ୍ୱୟ ଦ୍ୱାରା ଉପରକୁ ଧରିବ । ଏହା ପରେ କାନ୍ତ ସ୍ତନଦ୍ୱୟକୁ ଧରି ଯଦି ରମଣ କରେ ତାହା ହେଲେ ସେତେବେଳେ ବ୍ୟୋମପଦ ବନ୍ଧ ହୁଏ ।

---



## ସ୍ମରଚକ୍ର

କାନ୍ତୋରୁଯୁଗ୍ମାନ୍ତରଗଃ ସ୍ୱହସ୍ତେ ନିଧାୟ ଭୂମୌ ରମତେ

ପତିଶ୍ଚେତ୍ ।

ବନ୍ଧସ୍ତଦୋକ୍ତଃ ସ୍ମରଚକ୍ରନାମା ପ୍ରେଷ୍ଠଃ ସଦା କାମିଜନସ୍ୟ ଲୋକେ॥

ଅର୍ଥ—ପତି ନିଜର ହସ୍ତଦ୍ୱୟକୁ କାନ୍ତାର ଉରୁଦ୍ୱୟ ମଧ୍ୟଗାମୀ କରି ଭୂମି ଉପରେ ରଖି ଯଦି ରମଣ କରେ ତାହା ହେଲେ ସେହି ବନ୍ଧ ସ୍ମରଚକ୍ର ନାମରେ ଅଭିହିତ ହୁଏ । ଏ ବନ୍ଧ ସବୁବେଳେ କାମୀ-ଲୋକମାନଙ୍କର ପ୍ରିୟ ଅଟେ ।

## ଅବଦାରିତ

ନାରୀ ସ୍ୱପାଦୌ ଦୟିତସ୍ୟ ବକ୍ଷସ୍ଥିତୌ ସମାଲିଙ୍ଗ୍ୟ କରଦ୍ୱୟେନ ।

କାନ୍ତଁନତୋରୁ ରମତେ ତଦାଽସୌ ପ୍ରୋକ୍ତା ମୁନିନ୍ଦ୍ରୈରବଦାରିତାକ୍ଷଃ

ଅର୍ଥ—ଉରୁକୁ ଅଳ୍ପ ନତକରି ନାରୀ ନିଜ ପଦଦ୍ୱୟକୁ ସ୍ୱାମୀ ବକ୍ଷ ଉପରେ ରଖି ହସ୍ତ ଦ୍ୱୟରେ ଅଲିଙ୍ଗନ କରି ରମଣ କରାଇଲେ ତାହା ଅବଦାରିତ ବନ୍ଧ ହୁଏ ବୋଲି ମୁନିମାନେ କହିଅଛନ୍ତି ।

## ସୌମ୍ୟ

ଉତ୍ତାନକୋରୁଦ୍ୱୟମଧ୍ୟଗାମି ଦୃଢ଼ଂ ସମାଲିଙ୍ଗ୍ୟ ଭଜେତ ଯଦି ।

କାନ୍ତୋ ବଳାସିପ୍ରିୟ ଏଷ ବନ୍ଧଃ ସୌମ୍ୟାକ୍ଷ୍ୟ ଉକ୍ତଃ କବିଭିଃପୁରାଣୈଃ

ଅର୍ଥ—ଚିତହୋଇ ଶୋଇଥିବା ସ୍ତ୍ରୀର ଉରୁଦ୍ୱୟର ମଧ୍ୟବର୍ତ୍ତି ହୋଇ ଦୃଢ଼ ଭାବରେ ଅଲିଙ୍ଗନ କରି ଯଦି ବିଳାସପ୍ରିୟ ପତି ରମଣକରେ ସେହି ବନ୍ଧକୁ ପୁରାତନ କବିମାନେ ସୌମ୍ୟ ବନ୍ଧ ବୋଲି କହି ଅଛନ୍ତି ।

ସମଜାତୀୟ ଦମ୍ପତି ପକ୍ଷରେ ଏ ବନ୍ଧ ଚରମତୃପ୍ତିଦାୟକ ଅଟେ ।





## ଜୃମ୍ଭିତ

ଊରୁଦ୍ୱୟଂ ଚକମୁନିଷ୍ଟିତଂ ଚ କୃତ୍ୱାମୁଖାଗ୍ରୀ ଭଜତେତ ପତିଂ ଚେତ୍ ।
ଆନନ୍ଦକର୍ତ୍ତ୍ରୀ ତରୁଣୀଜନାନାଂ ବଦନ୍ତ୍ୟାପ୍ତମୁକ୍ତ୍ୟଃ କିଲ ଜୃମ୍ଭିତାଖ୍ୟଃ ।
ଅର୍ଥ—ଊରୁଦ୍ୱୟ ଏବଂ ମୁଖକୁ ଉପରକୁ କୁଞ୍ଚନ କରି ସ୍ତ୍ରୀ ଯଦି ପତିକୁ ଭଜନ ( ରମଣ ) କରେ ତାହା ହେଲେ ତରୁଣୀ ଜନମାନଙ୍କର ଆନନ୍ଦକାରୀ ଏହି ବନ୍ଧ ଜୃମ୍ଭିତ ହୁଏ ।

## ବେଷ୍ଟିତ

କାନ୍ତୋରୁଯୁଗ୍ମଂ ପରିବର୍ତ୍ତିତଂ ଚେନିଷ୍ପୀଡ୍ୟ କାମାକୁଳଚିତ୍ତବୃତ୍ତଃ ।
ରମେତ ଭର୍ତ୍ତା ଯଦି ବେଷ୍ଟିତାଖ୍ୟଂ ତଦା ହି ବନ୍ଧଂ ମୁନୟୋ ବଦନ୍ତି ।
ଅର୍ଥ—କାନ୍ତାର ଊରୁଦ୍ୱୟକୁ ପରିବର୍ତ୍ତିତ କରି କାମାକୁଳିତ ଚିତ୍ତବୃତ୍ତି ପତି ଚାକିରଖି ଯଦି ରମଣ କରେ ତାହା ହେଲେ ସେତେବେଳେ ବେଷ୍ଟିତ ବନ୍ଧ ହୁଏ ବୋଲି ମୁନିମାନେ କହି ଅଛନ୍ତି ।

## ବେଣୁ ବିଦାରିତ

ସ୍କନ୍ଧପ୍ରଦେଶେ ବନିଧାୟ ଜଙ୍ଘାମେକାଂ ସ୍ତ୍ରିୟୋଽନ୍ୟାମଥ ସଂବିଦାର୍ଯ୍ୟ
ଅଧୋ ବନିଧାୟ ପ୍ରବଳଂ ରମେତ ଭର୍ତ୍ତା ତଦା ବେଣୁବିଦାରିତଂ ତତ୍ ॥
ଅର୍ଥ—ଭର୍ତ୍ତା କାନ୍ଧ ଉପରେ ସ୍ତ୍ରୀର ଗୋଟିଏ ଜଙ୍ଘକୁ ଫାଡ଼ି ଥୋଇ ଅନ୍ୟଟିକୁ ତଳେ ରଖି ଯଦି ପ୍ରବଳ ଭାବରେ ରମଣ କରେ ତାହା ହେଲେ ତାହା ବେଣୁବିଦାରିତ ବନ୍ଧ ହୁଏ ।

## ଉଦ୍ଭୁଗ୍ନକ

ଯଦା ସ୍ତ୍ରୀପୁଂସ ସଂହତମୂରୁଯୁଗ୍ମ କୃତ୍ୱୋର୍ଦ୍ଧ୍ୱମାଲିଙ୍ଗ୍ୟ ଭଜେତ ଭର୍ତ୍ତା
ଉଦ୍ଭୁଗ୍ନକଂ ସ୍ୟାତ୍ପ୍ରମଦାଙ୍ଘ୍ରି ଯୁଗ୍ମେ କାନ୍ତୋରସିଷ୍ଟେ ସ୍ତନପ୍ରଦେଶେ



ଅର୍ଥ—ଯେତେବେଳେ ସ୍ୱାମୀ ସ୍ତ୍ରୀର ଉଚ୍ଛଦ୍ୱୟକୁ ଯୋଡ଼ ଉପରକୁ ରଖି ତାକୁ ଆଲିଙ୍ଗନ କରେ ତାହା ହେଲେ ତାକୁ ଉଦ୍ଭୁଗ୍ନକ ବନ୍ଧ ବୋଲାଯାଏ । କିନ୍ତୁ ସ୍ତ୍ରୀର ପାଦଦ୍ୱୟ ଯଦି ସ୍ୱାମୀର ଛାତି ଉପରେ ରହେ ତା ହେଲେ ସ୍ଫୁଟନ ବନ୍ଧ ହୁଏ ।

---

# ତୀର୍ଯକ୍ ବନ୍ଧ

## ବାଣିକା

କାନ୍ତାଙ୍‌ଘ୍ରିମେକ ହୃଦୟେନ୍ଦ୍ରିକଯେନାଧାୟ ଭର୍ତ୍ତା ଶୟନେଦ୍ୱିତୀୟମ୍
କୁର୍ଯାଦ୍ରତଂ ତେଦତ ବାଣିକାଖ୍ୟଃ ପ୍ରୌଢ଼ାଙ୍ଗନାୟାଂ ପରିକଳ୍ପନୀୟଃ ।

ଅର୍ଥ—ଭର୍ତ୍ତା କାନ୍ତାର ଗୋଟିଏ ପାଦକୁ ନିଜର ହୃଦୟରେ ଏବଂ ଦ୍ୱିତୀୟ ପାଦଟିକୁ ଶଯ୍ୟା ଉପରେ ରଖି ଯଦି ରତିକରେ ପୌଢ଼ାଙ୍ଗନାଙ୍କର ପରିକଳ୍ପିତ ଏହା ବାଣିକା ବନ୍ଧ ହୁଏ ।

## ସମ୍ପୁଟ

ପାର୍ଶ୍ୱ ପ୍ରସୁପ୍ତାପ୍ରମଦୋପରିଷ୍ଟାଃ କାନ୍ତଃ ସମାଲିଙ୍ଗ୍ୟ ରତଂ କରୋତି
ଯତ୍ର ପ୍ରଦିଷ୍ଟୋ ମୁନିଭିଃ ପୁରାଣୈର୍ବନ୍ଧସ୍ତଦା ସମ୍ପୁଟନାମଧେୟଃ ॥

ଅର୍ଥ—କାନ୍ତ ପାଖରେ ଶୋଇଥିବା ସ୍ତ୍ରୀକୁ ଉଭୟଙ୍କର ଗୋଡ଼ ସିଧାଭାବରେ ରଖି ଆଲିଙ୍ଗନ କରି ଯଦି ରତିକରେ, ସେଠାରେ ତାକୁ ପୁରାତନ ମୁନିମାନେ ସମ୍ପୁଟ ବନ୍ଧ କହି ଅଛନ୍ତି ।

ଏ ବନ୍ଧରେ ସହବାସ କଲେ ଗର୍ଭାଧାନର ଆଶଙ୍କା ପ୍ରାୟ ରହେ ନାହିଁ । କାରଣ ପୁରୁଷାଙ୍ଗ ଜରାୟୁକୁ ସ୍ପର୍ଶକରି ନ ପାରି ଉପର ଅଙ୍ଗପଥରେ ବୀର୍ଯ୍ୟପାତ କରେ





## କର୍କଟ

ଯଦ୍ୟଙ୍ଗନାକୁଞ୍ଚିତପାଦଯୁଗ୍ମଂ ସ୍ୱନାଭିଦେଶେ ପରିକଳ୍ପ୍ୟ ଭର୍ତ୍ତା ।
ରତଂ ପ୍ରକୁର୍ଯ୍ୟାଦିତି କର୍କଟାଖ୍ୟଂ ତଦା କବୀନ୍ଦ୍ରୈଃ କରଣଂ ପ୍ରଦିଷ୍ଟମ୍ ।

ଅର୍ଥ—ଭର୍ତ୍ତା ଯଦି ସ୍ତ୍ରୀର କୁଞ୍ଚିତ ପଦ ଦ୍ୱୟକୁ ନିଜର ନାଭିଦେଶରେ ରଖି ରତି କରେ, ତାହା ହେଲେ ତାହାକୁ କର୍କଟ ବନ୍ଧ ବୋଲି କବିଶ୍ରେଷ୍ଠମାନେ କହି ଅଛନ୍ତି ।

ଏହା ମଧ୍ୟ ଜାନୁନିପୀଡ଼ନଂ ଶ୍ଳୋକରେ ଦରକାରୀ ବନ୍ଧ ଅଟେ ।

—※—

# ଉପବିଷ୍ଟ ବନ୍ଧ

## ପଦ୍ମାସନ

ପ୍ରେଙ୍ଖାବିଲାସଂ ପ୍ରସଭଂ ବଧ୍ନନ୍ତ୍ୟା ବିପର୍ଯ୍ୟସ୍ତାଙ୍ଘ୍ରିଯୁଗସ୍ୟ ନାର୍ଯ୍ୟାଃ ।
ପଦ୍ମାସନଂ ସ୍ୟାଦଥ ଚୈକଜଙ୍ଘାବିପର୍ଯ୍ୟୟାତ୍ ପଦ୍ମଂ ପ୍ରଦିଷ୍ଟମ ॥

ଅର୍ଥ—ନିଜର ରମଣଙ୍କୁ ଦେଖିବାକୁ ଇଚ୍ଛା କରୁଥିବା ନାୟିକା ପତିକୋଳରେ ବସି ଜଙ୍ଘକୁ ଓଲଟ ପାଲଟ କରି ରତିକ୍ରୀଡ଼ା କରିବା ଦ୍ୱାରା ପଦ୍ମାସନ ହୁଏ; କିନ୍ତୁ ଗୋଟିଏ ଜଙ୍ଘ ତଳେ ଓ ଗୋଟିଏ ପତିର ଜଙ୍ଘ ଉପରେ ରହିଲେ ତାହା ଉପପଦ୍ମ ବୋଲି କୁହାଯାଏ ।

## ବନ୍ଧୁରିତ

ସ୍ଫିକାନୁଯୁଗ୍ମାନ୍ତରନିର୍ଗତୌ ଚେତ୍ କୌସ୍ତୁଭକଣ୍ଠେ ବନସ୍ୟ ନୁ ଗାମୀ ।
କାନ୍ତୋପି କୃତ୍ୱେତି ବଧ୍ନଂ ପ୍ରଗଚ୍ଛେଦ୍ଦାବୁଦେବ ବନ୍ଧୁରିତାଖ୍ୟମୁକ୍ତଃ ।



ଅର୍ଥ—ମୃଗାକ୍ଷୀ ନିଜର ଜାନୁଦ୍ୱୟ ମଧ୍ୟରେ ବାହୁଦ୍ୱୟ ଦେଇ ନିଜର କଣ୍ଠକୁ ଛୁଇଁବ । କାନ୍ତ ମଧ୍ୟ ଏହା ଅଧିକରି ଯଦି ଗମନ କରେ ସେତେବେଳେ ପଣ୍ଡିତମାନେ ତାକୁ ବନ୍ଧୁରିତ କହନ୍ତି ।

## ଫଣୀପାଶ

ଉକ୍ତପ୍ରକାରୈର୍ଯଦି ଦକ୍ଷିତ ସ୍ତ୍ରୀଭୁଜୌ ତୁ କୃତ୍ୱା ମଣିକ୍ରପରସ୍ଥୌ ।
ସ୍ମେରଂ ରମେତେ କରଣଂ ପ୍ରଦକ୍ଷଂ ତଦା କବନ୍ଦ୍ରୈଃ ଫଣିପାଶସଂଜ୍ଞକମ୍

ଅର୍ଥ—ଦକ୍ଷିତ ବନ୍ଧୁରିତ ଭଳି କରି ନିଜ ଭୁଜ ଦ୍ୱୟକୁ ମଣି କୂର୍ପର ଉପରେ ରଖି ନିଜ ଇଚ୍ଛାନୁସାରେ ଯଦି ରମଣ କରନ୍ତି ତାହାହେଲେ ତାହା ଫଣୀପାଶ ବନ୍ଧ ହେବ ବୋଲି କବି ଶ୍ରେଷ୍ଠ ମାନେ କହି ଅଛନ୍ତି ।

## ସଙ୍କ୍ରମନ

ନିଧାୟ ଜଙ୍ଘାଯୁଗଳଂ ଯୁବତ୍ୟାଃ ସ୍ୱକୀୟୟୋଃ କୂର୍ପରୟୋସ୍ତଥାସ୍ୟାଃ ।
କଣ୍ଠେ ସ୍ୱବାହୁ ପରିଣୀୟ ଗଚ୍ଛେତ୍ପତିସ୍ତଦା ସଂଯମନାଖ୍ୟମେତତ୍ ।

ଅର୍ଥ—ପତି ନିଜର ବାହୁଦ୍ୱୟକୁ କଣ୍ଠରେ ରଖି ଯୁବତୀର ଜଙ୍ଘଦ୍ୱୟକୁ ନିଜର କହୁଣୀରେ ରଖି ଯଦି ଗମନ କରେ ତାହାହେଲେ ତାହାକୁ ସଙ୍କ୍ରମନ ବନ୍ଧ ବୋଲି କହନ୍ତି ।

## କୌର୍ମକ

ମୁଖେ ମୁଖଂ ବାହୁଯୁଗେ ସ୍ୱବାହୁ ଜଙ୍ଘାଦ୍ୱନ୍ଦ୍ୱଂ ଜଙ୍ଘଯୁଗେ ନିବେଶ୍ୟ ।
ଗଚ୍ଛେତ୍ପତି ସ୍ତେଦତ କୌର୍ମକଂ ସ୍ୟାଦୂର୍ଦ୍ଧ୍ୱୋରୁଯୁଗ୍ମାତ୍ପରିବର୍ତ୍ତିତାଖ୍ୟମ୍ ॥

ଅର୍ଥ—ମୁଖରେ ମୁଖ, ବାହୁ ଦ୍ୱୟରେ ବାହୁ ଦ୍ୱୟ, ଜଙ୍ଘ ଦ୍ୱୟରେ ଜଙ୍ଘ ଦ୍ୱୟ ରଖି ପତି ଯଦି ଗମନ କରେ ତେବେ ତାହା କୌର୍ମକ ବନ୍ଧ ହୁଏ । ଉରୁଦ୍ୱୟ ଉପରକୁ କଲେ ପରିବର୍ତ୍ତିତ ବନ୍ଧ ହୁଏ ।

ଏହା ମଧ୍ୟ ଜନ୍ମନିଷ୍ପନ୍ନଣି ପକ୍ଷରେ ଉପକାରୀ, ମାତ୍ର ତୃପ୍ତି କମ ।

### ଯୁଗ୍ମପଦ

ସ୍ତ୍ରିୟଂ ସମାକୁଞ୍ଚିତପାଦଯୁଗ୍ମଂ ତଥୈବ ଭର୍ତ୍ତା କୃତତର୍ଯ୍ୟଗଙ୍ଗଃ ।
ଉଦେଟତ ଚେତ୍ତାଡ଼କଲାବିଦଗ୍ଧୋ ବନ୍ଧଂ ତଦା ଯୁଗ୍ମପଦଂ ବଦନ୍ତି ।

ଅର୍ଥ—ପାଦଦ୍ୱୟ ଅଳ୍ପ କୁଞ୍ଚିତ କରିଥିବା ସ୍ତ୍ରୀକୁ ଭର୍ତ୍ତା ସେହିପରି ହୋଇ ବଙ୍କାଇ କରି ଯଦି ଗମନ କରେ ତାହାହେଲେ ତାକୁ ଯୁଗ୍ମପଦ ବୋଲି କହନ୍ତି ।

### ମର୍କଟ ବନ୍ଧ

ବିଳାସିନୀକର୍ପୂରମଧ୍ୟବର୍ତ୍ତି କଟିଂ ସ୍ୱକୀୟାଂ ଭ୍ରମୟନ୍ ହୃଷ୍ଟେନ ।
ଉତେଜତ ଭର୍ତ୍ତେତ ବନର୍ଦ୍ଦିତ ସ୍ୟାଦ୍ୱନ୍ଧାର୍କଟଂ ସମ୍ମୁଖ ସଙ୍ଗମେନ ॥

ଅର୍ଥ—ବିଳାସିନୀ ସ୍ତ୍ରୀର କର୍ପୂର ମଧ୍ୟରେ ରହି ଭର୍ତ୍ତା ସ୍ୱକଟିକୁ ଯଦି ବାରମ୍ବାର ବୁଲାଇ ସମ୍ମୁଖ ସଙ୍ଗମ ଦ୍ୱାରା ରତ ହୁଏ ତାହା ହେଲେ ତାହା ମର୍କଟ ବନ୍ଧ ହୁଏ ।



# ଉତ୍ଥିତ ( ଠିଆ ) ବନ୍ଧ

### ଜାନୁକୂର୍ପର ବନ୍ଧ

ସଂବେଷ୍ଟ୍ୟ କାନ୍ତୋ ନିଜକର୍ପୂରେଣ ଜାନ୍ୱଙ୍ଗନାୟା ଅବଲମ୍ବ୍ୟ କଣ୍ଠମ
ରତଂ ପ୍ରକୁର୍ଯ୍ୟାଦ୍ଦୃଢ଼ କୂର୍ପରାଖ୍ୟୋ ବନ୍ଧଃ ପ୍ରଦିଷ୍ଟଃ ସ ଚ ଜାନୁକୂର୍ପ ॥

ଅର୍ଥ—କାନ୍ତ ନିଜର କୂର୍ପର ( କହୁଣୀ ) ଦ୍ୱାରା ଅଙ୍ଗନାର ଜାନୁକୁ ବେଷ୍ଟନ କରି କଣ୍ଠକୁ ଧରି ଯଦି ରତି କରେ ତାହା କପୂର୍ବନ୍ଧ ବା ଜାନୁକୂର୍ପ ବନ୍ଧ ବୋଲି ମଧ୍ୟ କହନ୍ତି ।



## ହର ବଲ୍ଲଭ ବନ୍ଧ

ଜଲ୍ପପ୍ରକାରୈଃ ଭବଶେଷଦୈକଃ ପାଦେ ଭବେଦ୍ଦୁର୍ଦ୍ଧ୍ୱ ଗତୋଃଙ୍ଗନ
ତଦା ପ୍ରଦଷ୍ଟୋ ହରବଲ୍ଲଭ ଷ୍ୟ ବନ୍ଧଃ ପ୍ରିୟେୟଂ ତରୁଣୀଜନାନାମ୍

ଅର୍ଥ—ଜାନୁଦ୍ବୟ ପ୍ରକାରେ କର ଯାଇ ଗୋଟିଏ ପାଦ ସ୍ତ୍ରୀ ଉପରକୁ ଟେକେ ତାହାହେଲେ ଯେତେବେଳେ ଏହା ତରୁଣୀ ଜନ-ପ୍ରିୟ ହରବଲ୍ଲଭ ବନ୍ଧ ହୁଏ ।

## କୀର୍ତ୍ତିବନ୍ଧ

କଣ୍ଠଂ ଭୁଜାଭ୍ୟାମବଲମ୍ବ୍ୟ ଭର୍ତ୍ତୁଃଶ୍ରେଣୀଂ ନିଜୋରୁଯୁଗଳେନ ଗାଢ଼ମ୍
ସଂବେଷ୍ଟ୍ୟ କୁର୍ଯ୍ୟାଦ୍ରତମଙ୍ଗନା ଚେଦୁକ୍ତଃ କବୀନ୍ଦ୍ରୈରିତ କୀର୍ତ୍ତିବନ୍ଧଃ ।

ଅର୍ଥ—ଅଙ୍ଗନା ସ୍ୱାମୀର କଣ୍ଠକୁ ଅବଲମ୍ବନ କରି କଟିକୁ ନିଜର ଉରୁଯୁଗଳ ଦ୍ୱାରା ବେଷ୍ଟନ କରି ଯଦି ରତ କରେ ତା ହେଲେ ତାକୁ କବୀନ୍ଦ୍ରମାନେ କୀର୍ତ୍ତିବନ୍ଧ ବୋଲି କହନ୍ତି ।



# ବ୍ୟାନତ ( ନଇଁ ) ବନ୍ଧ

## ଧେନୁକ ବନ୍ଧ

ଵନ୍ୟସ୍ୟ ପାଣ୍ୟଙ୍ଘ୍ରି ଯୁଗଂ ଧରଣ୍ୟାମଧୋମୁଖୀ ଚେନ୍ନୁବଦଗ୍ରସଂସ୍ଥା ॥
ସ୍ତ୍ରୀ ସ୍ୟାଦଥାସ୍ୟାଃ କଟିଦେଶବର୍ତ୍ତି ଭର୍ତ୍ତା ଭଜେଦ୍ଧେନୁକମେତଦୁକ୍ତମ୍

ଅର୍ଥ—ସ୍ତ୍ରୀ ନିଜର ହାତ ଏବଂ ପାଦକୁ ପୃଥିବୀରେ ରଖି ଅଧୋମୁଖୀ ହୋଇ ଅଗରେ ଠିଆ ହେବ । ସ୍ତ୍ରୀର କଟି ଦେଶରେ ଥାଇ ଭର୍ତ୍ତା ଯଦି ରମଣ କରେ ତାହା ହେଲେ ଏହା ଧେନୁକ ବନ୍ଧ ହୁଏ ।

ଏହା ଜନ୍ମ ନିୟନ୍ତ୍ରଣ ପକ୍ଷରେ ଆବଶ୍ୟକୀୟ ବନ୍ଧ ଅଟେ ।





### ଐବବନ୍ଧ

ଅଧୋମୁଖୀ ମସ୍ତକଦୋଃକୁଚାସ୍ୟେ ଭୂବଂଗତାଂ କାମତ ଯଦି ନାରୀମ୍
ବ୍ରଜେଦ୍ ଭର୍ତ୍ତା ରତିକେଲିଲୋଲ ସ୍ତଦୈଭସଂଜ୍ଞଂ କରଣଂ ପ୍ରଦିଷ୍ଟମ୍ ।

ଅର୍ଥ—ନମ୍ରମୁଖୀ ହୋଇ ମସ୍ତକ, ବାହୁ କୁଚ ଏବଂ ମୁଖକୁ ପୃଥିବୀରେ ରଖିଥିବା ନାରୀକୁ ରତି ଲୋଲ ଚତୁର ଭର୍ତ୍ତା ହସ୍ତୀ ପରି ଯଦି ଗମନ କରେ ତାହାହେଲେ ତାହା ଐଭ ହୁଏ ।

ଏଣଶୌକରଗାର୍ଦ୍ଦଭାଦିକାନ୍ୟପ୍ରୟୋଜକତୟାହ୍ୟେବ ଭୂରିଶଃ ।
ଅପ୍ରସିଦ୍ଧକରଣାନି ନୋ ମୟାଦର୍ଶିତାନ୍ୟତିବିନିନ୍ଦିତାନି ଚ ॥

ଅର୍ଥ—ଏଠାରେ ଏଣୀ, ଶୂକର, ଗଧ ଆଦି ଅନ୍ୟ ବହୁତ ପଶୁବନ୍ଧ ଅଛି । ଏ ସବୁ ଅପ୍ରସିଦ୍ଧ ଓ ନିନ୍ଦିତ । ଏହି ବନ୍ଧ ଗୁଡ଼ିକ ସମ୍ବନ୍ଧରେ ବର୍ଣ୍ଣନା କରାଗଲା ନାହିଁ ।



## ପୁରୁଷାୟିତ ବନ୍ଧ

ଏହି ପୁସ୍ତକର ଷଷ୍ଠ ଅଧିକରଣରେ ପୁରୁଷାୟିତ ରମଣ ସମ୍ବନ୍ଧରେ କେତେକ ବିଷୟ ଦିଆ ଯାଇ ଅଛି । ଏଠାରେ କେବଳ ଅନଙ୍ଗ-ରଙ୍ଗ-ବର୍ଣ୍ଣିତ କେତେକ ଶ୍ଳୋକ ଅର୍ଥ ସହ ଦିଆଗଲା ।

### ବିପରୀତ ବନ୍ଧ

ଜାତଶ୍ରମଂ ବୀକ୍ଷ୍ୟ ପତିଂ ପୁରନ୍ଧ୍ରୀ ସ୍ୱେଚ୍ଛାତ ଏବାଥ ରତେଷ୍ୱତୃପ୍ତା ।
କନ୍ଦର୍ପବେଗାକୁଳିତା ନିତାନ୍ତଂ କୁର୍ଯ୍ୟାଦ୍ରତଂ ତତ୍‌ପୁରୁଷାୟିତଂ ହି



ଅର୍ଥ—ସ୍ୱାମୀକୁ କ୍ଳାନ୍ତ ଦେଖି ନିଜର ଇଚ୍ଛା ଅନୁସାରେ ଅଥବା ରତିରେ ଅତୃପ୍ତା ହୋଇ କନ୍ଦର୍ପ ବେଗାକୁଳିତା ନାରୀ ଏହି ପୁରୁଷାୟିତ ରତିକୁ ଆଚରଣ କରେ ।

ଉତ୍ତାନସୁପ୍ତଂ ଦୟିତଂ ଭୁଜାଭ୍ୟାମାଲିଙ୍ଗ୍ୟ ଲିଙ୍ଗ

ନିବେଶ୍ୟ ଯୋନୌ ।

ଉତ୍କୋଚିତମ୍ପଂ ପରିଗୃହ୍ଣୀୟନ୍ତି ନାରୀ ତଦା ସ୍ୟାଦ୍ ବିପରୀତବନ୍ଧଃ ॥

ଅର୍ଥ—ନାରୀ ଚିତହୋଇ ଶୋଇଥିବା ପତିକୁ ଆଲିଙ୍ଗନ କରି ଲିଙ୍ଗକୁ ଯୋନିରେ ପ୍ରବେଶ କରାଇ ନିତମ୍ବକୁ ପରିଗୃହଣା କଲେ ତାହାକୁ ବିପରୀତ ବନ୍ଧ କହନ୍ତି ।

## ଭ୍ରମର ବନ୍ଧ

ସୁପ୍ତସ୍ୟ ପୁଂସୋ ଜଘନୋପରିସ୍ଥିତା ସଂଭ୍ରାମୟତ୍ୟଙ୍ଘ୍ରିଯୁଗଂ

ବିକୁଞ୍ଚିତମ୍ ।

ଚକ୍ରାକୃତିଃ ସ୍ତ୍ରୀନିରବଦ୍ୟଚେଷ୍ଟିତେ ତଦ୍‌ଭ୍ରାମରାଖ୍ୟଂ କରଣଂ ସମୀରିତମ୍

ଅର୍ଥ—ଶୋଇଥିବା ପୁରୁଷର ଜଘନ ଉପରେ ଥାଇ ସ୍ତ୍ରୀ ଚକ୍ରାକାରରେ ପାଦଦ୍ୱୟକୁ କୁଞ୍ଚନ କରି ବୁଲାଇ ନାନା ପରି ଆଚରଣ କରେ ତାହାହେଲେ ତାକୁ ଭ୍ରମର ବନ୍ଧ ବୋଲି କହନ୍ତି ।

## ଉତ୍କଳିତା ବନ୍ଧ

ପ୍ରେମନିର୍ଭରରତୀ ସ୍ୱଗଳସ୍ୟେ ଭର୍ତ୍ତୁଲିଙ୍ଗ ମୁପଧାୟ ପୁନର୍ବୀ ।

ଭ୍ରାମୟେତ୍ କଟିମନଙ୍ଗବିଲୋଳା ସ୍ୟାତ୍ତଦା କରଣମୁତ୍କଳିତାଖ୍ୟମ ॥

ଅର୍ଥ—ପ୍ରେମିକା ସ୍ତ୍ରୀ ସ୍ୱଗଳସ୍ତରେ ସ୍ୱାମୀର ଲିଙ୍ଗକୁ ଦେଇ ଅନଙ୍ଗ ତରଳା ହୋଇ ଯଦି ଅଣ୍ଟାକୁ ବୁଲାଏ ତାହା ଉତ୍କଳିତା ହୁଏ ।

ପୂର୍ବ ବର୍ଣ୍ଣିତ ଆସନ ଗୁଡ଼ିକ ଜନ୍ମନିୟନ୍ତ୍ରଣ ଓ ସନ୍ତାନ ଆଗମନ ଉଦ୍ଦେଶ୍ୟରେହିଁ କରିବ୍ୟ। ଏ ସବୁ ବନ୍ଧ ଆଚରଣ ସମୟରେ ବିବସ୍ତ୍ର ରହିବା ସୁବିଧା ଜନକ। ଏହିପରି ଅନେକ ଗୁଡ଼ିଏ ବନ୍ଧ ବା ଆସନର ନାମ ଶୁଣାଥିଲେ ମଧ୍ୟ ତାହା ଉପଯୋଗୀ ନୁହେଁ। ସେଥି ମଧ୍ୟରୁ ପ୍ରଧାନ ପ୍ରଧାନ କେତୋଟି ପ୍ରକ୍ରିୟାବଳୀ ବର୍ଣ୍ଣନା କରି ଆମ୍ଭେମାନେ ଏଥିରୁ ନିରସ୍ତ ହେଲୁ।

କାମକଳା ବା ସମ୍ମେଳନ ଓ ଆସନାଦି ବିଷୟରେ କାମବିଜ୍ଞାନ ୧ମ ଖଣ୍ଡର ଚତୁର୍ବିଂଶ, ଷଡ଼ବିଂଶ ଓ ସପ୍ତବିଂଶ ଅଧିକରଣ ମାନଙ୍କରେ ବିସ୍ତୃତ ଭାବରେ ଆଲୋଚନା କରାଯାଇ ଅଛି। ସେଥିରୁ ପାଠକମାନେ ସମସ୍ତ ଉପଲବ୍ଧ କରି ପାରିବେ।



## ସମରତ

ଶଶ ଜାତୀୟ ପୁରୁଷ ସହିତ ମୃଗୀ ଜାତୀୟା ରମଣୀ, ବୃଷ ଜାତୀୟ ପୁରୁଷ ସହିତ ବଡ଼ବା ଜାତୀୟ ରମଣୀ ଓ ଅଶ୍ୱ ଜାତୀୟ ପୁରୁଷ ସହିତ ହସ୍ତିନୀ ଜାତୀୟା ରମଣୀର ଯେଉଁ ସୁରତ ହୁଏ ତାକୁ ସମରତ ବୋଲାଯାଏ। କାରଣ ଉଭୟଙ୍କର ଜନନେନ୍ଦ୍ରିୟ ଦୈର୍ଘ୍ୟତା ଓ ଗଭୀରତା ସମାନ ଥିବାରୁ ସେମାନଙ୍କର ସମ୍ପ୍ରୟୋଗ ସମାନ। କାରଣ ପରସ୍ପର ସାଧନ ସ୍ଥାନର ଦୈର୍ଘ୍ୟ ଓ ପ୍ରସ୍ଥ ସମାନ ଅଟେ। ଏଣୁ ଉଭୟେ ପରମାନନ୍ଦ ପାଇଥାନ୍ତି।



## ଉଚ୍ଚରତ ବା ଚଣ୍ଡରତ

ଅଶ୍ୱ ଜାତୀୟ ପୁରୁଷ ସହିତ ମୃଗୀ ଓ ବଡ଼ବା ଜାତୀୟା ରମଣୀର, ବୃଷ ଜାତୀୟ ପୁରୁଷ ସହିତ ମୃଗୀ ଜାତୀୟା ରମଣୀର



ଯେଉଁ ସୁରତ ଘଟେ ତାହା ଉଚ୍ଚରତ ବା ଚଣ୍ଡରତ ନାମରେ କଥିତ । ଏଥିରେ ପୁରୁଷର ଉପସ୍ଥ ବୃହତ୍ ହେତୁ ଭଗେନ୍ଦ୍ରିୟରେ ପ୍ରବଳ ଆଲୋଡ଼ନର ସୃଷ୍ଟି ହୁଏ । ଉଚ୍ଚ ରତି ଦ୍ୱାରା ନାରୀର ଅତ୍ୟନ୍ତ ଉତ୍ଫୁଲ୍ଲତା ଜାତ ହୁଏ । ସେଥିପାଇଁ ସେ ତା'ର ଜଘନ ଦ୍ୱୟ ପ୍ରସାରିତ କରି ସାଧନକୁ ସମ୍ପୂର୍ଣ୍ଣ ପ୍ରବେଶ କରାଇ ନିଏ । ସାଧନର ଆଧିକ୍ୟ ବଶତଃ କଣ୍ଡୂୟନର ପ୍ରତିକାର ଅଧିକତର ହୋଇ ଥାଏ ।



## ନୀଚରତ

ଶଶ ଜାତୀୟ ପୁରୁଷ ସହିତ ବଡ଼ବା ଓ ହସ୍ତିନୀ ଜାତୀୟା ରମଣୀର ଓ ବୃଷ ଜାତୀୟ ପୁରୁଷ ସହିତ ହସ୍ତିନୀ ଜାତୀୟା ରମଣୀର ଯେଉଁ ସୁରତ ହୁଏ ତାହା ନୀଚରତ ନାମରେ ଖ୍ୟାତ । କାରଣ ସାଧନ କ୍ଷୁଦ୍ର ହୋଇ ବୃହତ୍ ରନ୍ଧ୍ର ବିଶିଷ୍ଟ ସମ୍ବାଧକୁ ସମ୍ପୂର୍ଣ୍ଣ ଭାବରେ ମଥିତ କରିପାରେ ନାହିଁ । ନବ ଅଙ୍ଗୁଳି ଓ ଦ୍ୱାଦଶ ଅଙ୍ଗୁଳିପରିମିତ ସ୍ତ୍ରୀ ଜନନେନ୍ଦ୍ରିୟରେ ଷଡ଼ାଙ୍ଗୁଳି ପରିମିତ ପୁରୁଷାଙ୍ଗ ପ୍ରବେଶ କରି ତାହା ସମ୍ପୂର୍ଣ୍ଣ ଭାବରେ ଘର୍ଷଣ କରି ପାରେ ନାହିଁ । କିନ୍ତୁ ସ୍ୱଭାବତଃ ନାରୀ ଖୋଜେ ସମ୍ପୂର୍ଣ୍ଣ ଭଗକ୍ଷୋଭଣ, ଯାହା କି ତାକୁ ଚରମାନନ୍ଦ ଦେଇପାରେ । ଏଣୁ ନୀଚ ରତରେ ନାରୀକୁ ସମ୍ପୃକ୍ତ ବନ୍ଧରେ ଘର୍ଷଣ କଲେ ସେ ତୃପ୍ତି ପାଇଥାଏ । କାରଣ ଭଗୋଷ୍ଠ ଦ୍ୱୟ ସମ୍ପୃକ୍ତ ହୋଇ ଯିବା ଦ୍ୱାରା କ୍ଷୁଦ୍ର ଲିଙ୍ଗ ତାକୁ ଯାହା କିଛି ମନ୍ଥନ କରିପାରେ । କିନ୍ତୁ ନାରୀ ପ୍ରସାରିତ ଜଘନା ହୋଇ ଶୟନ କଲେ କ୍ଷୁଦ୍ର ଲିଙ୍ଗ ବିଶିଷ୍ଟ ପୁରୁଷ ସହବାସରେ ତାକୁ ସୁଖ ମିଳେ ନାହିଁ । ଏ ଜାତୀୟ ପୁରୁଷ ଯେତେ ଦୀର୍ଘ ସୁରତ କ୍ଷମ ହୋଇନା କାହିଁକି,

ପ୍ରଶସ୍ତିମାର ମିଷ୍ଟ ପ୍ରାପ୍ତ ହୋଇ ପାରେ ନାହିଁ । ଏପରି ସଂଯୋଗ ପାଇଁ ସମ୍ପୂର୍ଣ୍ଣ ଭାବରେ ଅସନ ଅବଚତ ହେବା ଉଚିତ ।



## ରତି ଅବସାନେ

ଦାମ୍ପତ୍ୟ ଧର୍ମ ପାଳନ ପରେ ଅର୍ଥାତ୍ ରତିକ୍ରୀଡ଼ାର ଅବସାନ ପରେ କି କି ପ୍ରକାର ଆଚରଣ କଲେ ସ୍ୱାମୀ ସ୍ତ୍ରୀଙ୍କର ପ୍ରେମ ବୃଦ୍ଧି ଓ ସ୍ୱତନ୍ତ୍ର ହୋଇ ଆଜୀବନ ସେମାନେ ସୁଖୀ ହୋଇ ପାରନ୍ତି ଏ ବିଷୟରେ ବାତ୍ସ୍ୟାୟନ ମୁନି ଯାହା କହି ଅଛନ୍ତି ତାହା ନିମ୍ନରେ ଦିଆଗଲା ।

ବାତ୍ସ୍ୟାୟନ ମୁନି କହି ଅଛନ୍ତି, ରତିକ୍ରୀଡ଼ା ଅବସାନ ପରେ ସ୍ତ୍ରୀ ଓ ସ୍ୱାମୀ ଅପରିଚିତ ବ୍ୟକ୍ତି ପରି ସଲଜ ଭାବରେ କେହି କାହାକୁ ନ ଦେଖିବା ଅବସ୍ଥାରେ ଭିନ୍ନ ଭିନ୍ନ ସ୍ଥାନକୁ ଯାଇ ଶୌଚକାର୍ଯ୍ୟରେ ପ୍ରବୃତ୍ତ ହେବା ଦରକାର । ଶୌଚ ପରେ କେଳି ମନ୍ଦିରକୁ ଫେରି ଯାଇ ପରିଚିତ ବ୍ୟକ୍ତି ପରି ଲଜ୍ଜାଶୂନ୍ୟ ଭାବରେ ଏକ ସ୍ଥାନରେ ବସି ତାମ୍ବୁଳାଦି ଭକ୍ଷଣ ଓ ଚନ୍ଦନାଦି ଲେପନ କରିବା ଉଚିତ । ବାତ୍ସ୍ୟାୟନ କହି ଅଛନ୍ତି—ପୁରୁଷ ନିଜ ହାତରେ ସ୍ତ୍ରୀର ଅଙ୍ଗ ପ୍ରତ୍ୟଙ୍ଗରେ ଚନ୍ଦନ ଲେପନ କଲେ ସେ ବଡ଼ ସୁଖୀ ହୁଏ । ତତ୍ପରେ ଉଭୟେ ସୁମିଷ୍ଟ ଖାଦ୍ୟ ଓ ପାନୀୟ ସେବନ କରିବା ବିଧେୟ । ସେହି ସବୁ ଖାଦ୍ୟ ପେୟ ତିକ୍ତ, ଲଘୁପାଚ୍ୟ ଓ ସ୍ନିଗ୍ଧ ହେବା ଆବଶ୍ୟକ । ସର୍ବାପେକ୍ଷା ଗୋଦୁଗ୍ଧ ହିଁ ପାନ କରିବା ଦମ୍ପତି ପକ୍ଷରେ ଉଚିତ । କାରଣ ଏହା ତୁରନ୍ତ ନଷ୍ଟ ଶକ୍ତିକୁ ଫେରାଇ ଆଣେ । ପଣସ, ଅଙ୍ଗୁର, ବେଦନା, କମଳାଆଦି ଫଳ ମଧ୍ୟ ବଡ଼ ହିତକର ଦ୍ରବ୍ୟ ।



ରାମଚନ୍ଦ୍ରଙ୍କ ବନଗମନ ସମୟରେ ଶବରୁଣୀ ଯେପରି କୋଳି ଚାଖି ନାନାବିଧ ମିଷ୍ଟବାକ୍ୟ ସହିତ ମିଷ୍ଟ କୋଳିସବୁ ତାଙ୍କୁ ଖାଇବାକୁ ଦେଇଥିଲା, ସେହିପରି ପୁରୁଷ ନିଜ ହାତରେ ସୁଖାଦ୍ୟ ସ୍ତ୍ରୀକୁ ଖୁଆଇବ ଏବଂ ମିଷ୍ଟବାକ୍ୟ କହିବ । ରତିନିବାସ ଯଦି କୌଣସି ଅଟ୍ଟାଳିକା ଗୃହରେ ହୋଇଥାଏ ତେବେ ଦମ୍ପତିଯୁଗଳ ବାହାରକୁ ଆସି କୌଣସି ଗୃହଦ୍ୱାର ବା ବାରଣ୍ଡାରେ ବସି ଶୀତଳ ସମୀରଣ, ସୁଗନ୍ଧ ଜ୍ୟୋତ୍ସ୍ନା ସେବନ କରିବେ । ଚନ୍ଦ୍ର ନଥିଲେ ତାରକା ମଣ୍ଡଳର ଜ୍ୟୋତିଃ ପୁଞ୍ଜକୁ ନିରୀକ୍ଷଣ କରି ନାନାଦି ମିଷ୍ଟାଳାପ କରିବେ । ଏହି ସମୟରେ ନାୟକର କର୍ତ୍ତବ୍ୟ ହେଉଛି ଯେ ସେ ନାୟିକାକୁ, କେଉଁ ତାରା ଅରୁନ୍ଧତୀ, କାହାକୁ ଧ୍ରୁବତାରା କୁହାଯାଏ, କାହାକୁ ସପ୍ତର୍ଷି ମଣ୍ଡଳ କହନ୍ତି, କେଉଁ ତାରା ଅଧିକ ତେଜସ୍ୱୀ, ଏବଂ ପୂର୍ଣ୍ଣିମା ଚନ୍ଦ୍ର ବା ତାରାମାନଙ୍କ ସମ୍ବନ୍ଧରେ ବିଭିନ୍ନ ମତବାଦ କଥା ଶୁଣାଇବ । ଏହା ଦ୍ୱାରା ନାୟିକା ପ୍ରସନ୍ନ ହୋଇ ନିଜର ସ୍ୱାମୀ ପ୍ରତି ଅନୁରକ୍ତ ବଢ଼ାଏ ।

ରତିକ୍ରୀଡ଼ାରେ ଯେପରି ନାୟକ ନାୟିକା ତୃପ୍ତି ପାଇଥାନ୍ତି ରତି ଅବସାନ ପରେ ମଧ୍ୟ ସେହିପରି ଏକ ତୃପ୍ତି ମିଳେ । କିନ୍ତୁ ଏ ତୃପ୍ତି ନିର୍ଭର କରେ ସ୍ୱାମୀ ସ୍ତ୍ରୀଙ୍କର ଯୌନ ସମ୍ଭୋଗ ଉପରେ । ସହବାସରେ ଉଭୟଙ୍କର ଯଦି ଚରମତୃପ୍ତି ଆସିଥାଏ, ତେବେ ରତି ଅବସାନ ପରେ ଉଭୟେ ଶାନ୍ତି ପାଇଥାନ୍ତି । କିନ୍ତୁ ପୁରୁଷର ଅପାରଗତା ଦୋଷରୁ ବା ଅସାବଧାନତା ଦୋଷରୁ କିମ୍ବା ଶୀଘ୍ର ଶୁକ୍ର କ୍ଷରଣ ଦୋଷରୁ ସ୍ତ୍ରୀର ଯଦି ଚରମାନନ୍ଦ ଲାଭ ହୋଇ ନଥାଏ ତେବେ ସେ ସ୍ୱାମୀ ପ୍ରତି ଅଭିମାନିନୀ ହୋଇ ବିରାଗ ଭାବ ପୋଷଣ କରେ । ଏପରି ମଧ୍ୟ ଦେଖା ଯାଇ ଅଛି ରତିରେ ତୃପ୍ତି ନ ପାଇ

ନାୟିକା କାଳ ଭୁଜଙ୍ଗମା ପରି ନିଜର ସ୍ୱାମୀଙ୍କୁ ହତ୍ୟାକରିବାକୁ ମଧ୍ୟ କୁଣ୍ଠିତା ହୋଇ ନାହିଁ । ଏପରି ସ୍ଥଳେ ଅଶାନ୍ତି ପାଇଥିବା ସହବାସ ପରେ ରତି ଅବସାନ ସୁଖ ଦମ୍ପତିଙ୍କ ଭାଗ୍ୟରେ ଘଟି ଉଠେ ନାହିଁ ।

ଏଣୁ ପାଠକ ପାଠିକାବର୍ଗ ମନେ ରଖିବେ ରତି ଅବସାନ ପରେ ବାତ୍ସ୍ୟାୟନ ଋଷିଙ୍କ ପ୍ରଣାଳୀ ପାଳନକରିବା ପଦ୍ଧତି ସଙ୍ଗମରେ ସୁଖ ପ୍ରାପ୍ତିର ପରିମାଣ କେତେଦୂର କିମ୍ବା କେଉଁ ଦୋଷରୁ ପୁରୁଷ ବା ସ୍ତ୍ରୀ ମନରେ ଅଶାନ୍ତି ହୋଇଗଲା. ଏସବୁ କ୍ଷେତ୍ରରେ ଉଭୟଙ୍କ ମଧ୍ୟରେ ବିସ୍ତୃତ ଭାବରେ ଆଲୋଚନା ହେବା ଉଚିତ । କାରଣ ଅନୁସନ୍ଧାନ କରି ଦୋଷ ଦୁର୍ବଳତା ଦେଖି ଭବିଷ୍ୟତ ସଙ୍ଗମ ପାଇଁ ତା'ର ପ୍ରତିକାରର ବ୍ୟବସ୍ଥା କରିବା ବିଧେୟ । କିନ୍ତୁ ଆମ ଦେଶରେ ଅଧିକାଂଶ ସ୍ତ୍ରୀ ପୁରୁଷ ଲଜ୍ଜାବଶତଃ ନିଜ ମନରେ ଦୁଃଖକୁ ମାରି ଏଥିପାଇଁ ସାରା ଜୀବନ ଦୁଃଖ ଭୋଗ କରନ୍ତି, ଏବଂ ସ୍ୱାମୀ ସ୍ତ୍ରୀଙ୍କ ମନରେ ଚିରଦିନ ପାଇଁ ଗୋଟିଏ ଖଟକା ଲାଗେ । ଦାମ୍ପତ୍ୟ-ଜୀବନ ମଧ୍ୟ ବ୍ୟର୍ଥ ହୋଇ ଯିବାର ସମ୍ଭାବନା ଥାଏ ।

ରତି ଅବସାନ ପରେ ବିଶ୍ରାମ ଆବଶ୍ୟକ । ଯଦି ଉଭୟ ଚରମ ତୃପ୍ତି ପାଇଥାନ୍ତି ତେବେ ଉଭୟ ଗାଢ଼ ନିଦ୍ରା ଉପଭୋଗ କରନ୍ତି । କିନ୍ତୁ ଏଣେ ପୁରୁଷ ତୃପ୍ତିରେ ନିଘୋଡ଼ ନିଦରେ ଶୋଇଗଲେ ତେଣେ ସ୍ତ୍ରୀ ଚରମତୃପ୍ତି ଅଭାବରେ ତା'ର ଆଖିରେ ନିଦ ଆସେ ନାହିଁ ଏବଂ ସାରା ରାତି ଛଟପଟ ହୋଇ ଅଭିମାନିନୀ ହୋଇ ସ୍ୱାମୀ ଉପରେ ଦ୍ୱେଷ ପୋଷଣ କରେ ଏବଂ ସ୍ୱାମୀର ସଙ୍ଗମକୁ ଘୃଣା



କରେ । ଦେଖାଯାଏ କେହି ରମଣୀ ଏହି ଦୁଃଖର ଦାଉ ସହ୍ୟ କରି ନ ପାରି ପର-ପୁରୁଷ ଗାମିନୀ ହୁଅନ୍ତି । ଏଣୁ ଆଜିର ଥରେ ଅନୁରୋଧ ଯେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଖୋଲାଖୋଲି ଭାବରେ ଏ ବିଷୟରେ ଆଲୋଚନା କରି ଦୋଷ ଦୁର୍ବଳତାର ସନ୍ଧାନ ନେଇ ପଥ୍ୟ, ଔଷଧ ବା ପ୍ରଣାଳୀର ଆଶ୍ରୟ ନେବା ବିଧେୟ ।

ରତି ଅବସାନ ପରେ ଉପହାସ ଛଳରେ ଗୋଟିଏ ଶ୍ଳୋକର ଅବତାରଣା କଲେ ଏହା ଅପ୍ରାସଙ୍ଗିକ ହେବ ନାହିଁ ବୋଲି ତାହା ନିମ୍ନରେ ପ୍ରଦତ୍ତ ହେଲା—

ବୃତ୍ତେ ମନ୍ମଥସଙ୍ଗରେ ରଣକୃତାଂ ସତ୍କାରମାତନ୍ୱତି
ବାସୋଽଦାଜ୍ଜଘନେ ଚ ପୀନକୁଚୟୋର୍ହାରଂ କଟୌ କିଙ୍କିଣୀଂ ॥
ବିମ୍ବୋଷ୍ଠେନଖବାଟିକାଂ ସୁବଦନାପାର୍ଣ୍ୟୋରଣତ୍ କଙ୍କଣଂ ।
ପୃଷ୍ଠାଲମ୍ବିନି କେଶପାଶନିଚୟେ ଯୁକ୍ତୋହି ବନ୍ଧନମଃ ।

ସୁନ୍ଦରୀ ମଦନ ଯୁଦ୍ଧ ହେଲେ ଅବସାନ ।
ସୈନ୍ୟଗଣେ ପୁରସ୍କାର କଲା ଯେ ପ୍ରଦାନ ॥
ଜଘନେ ବସନ ହାର ପୀନ ପୟୋଧରେ ।
ପାନଖିଲି ଖଣ୍ଡେ ଦେଲା ବିମ୍ବ ଓଷ୍ଠାଧରେ ॥
କଟିରେ କିଙ୍କିଣୀ ଦେଲା କରରେ କଙ୍କଣ ।
ସମ୍ମୁଖରେ ଥାଇ ସର୍ବେ କରିଥିଲେ ରଣ ॥
କିନ୍ତୁ ପଛ ଭାଗେ ଲୁଚି ଥିଲେ ଯେତେ କେଶ,
ବନ୍ଧନ କରିଣ ଧନୀ ସଜାଇଲା ବେଶ ॥







# ନବମ ଅଧିକରଣ

## ନାରୀର ବ୍ୟାୟାମ

ନାରୀର ବ୍ୟାୟାମ କଥା ଶୁଣି ଅନେକ ଲୋକ ବିସ୍ମିତ ହୋଇ ପାରନ୍ତି ଏବଂ ଉପହାସ ମଧ୍ୟ କରି ପାରନ୍ତି । ଅଧିକନ୍ତୁ ମଧ୍ୟ କହି ପାରନ୍ତି ଯେ ଏ ସବୁ ପାଶ୍ଚାତ୍ୟ ପ୍ରଚଳନ ଏ ଦେଶ ପକ୍ଷେ ଉପଯୁକ୍ତ ନୁହେଁ । ସ୍ତ୍ରୀ ଲୋକମାନଙ୍କର ଅନ୍ୟ ନାମ "ଅବଳା" ସୁତରାଂ ସେମାନଙ୍କୁ ସବଳା କରିବା କାର୍ଯ୍ୟ ଶାସ୍ତ୍ରବିରୁଦ୍ଧ । ଅଧିକନ୍ତୁ ମଧ୍ୟ କେହି କେହି କହନ୍ତି ବୈଧବ୍ୟାବସ୍ଥା ସ୍ତ୍ରୀ ଲୋକମାନଙ୍କ ପକ୍ଷରେ କଷ୍ଟକର, ସୁତରାଂ ସ୍ୱାମୀର ପୂର୍ବେହିଁ ସ୍ତ୍ରୀର ମୃତ୍ୟୁ ବାଞ୍ଛନୀୟ । କିନ୍ତୁ ସ୍ତ୍ରୀଲୋକ ସୁସ୍ଥ ଓ ସବଳ ହେଲେ ସ୍ୱାମୀର ମୃତ୍ୟୁ ପରେ ଅନେକ କାଳ ଜୀବିତ ରହିପାରିବ । ସ୍ତ୍ରୀଲୋକମାନଙ୍କର ଦୌଡ଼ାଦୌଡ଼ି କରିବା ସର୍ବଥା ସ୍ତ୍ରୀ ପ୍ରକୃତିର ବିରୁଦ୍ଧ କାର୍ଯ୍ୟ । ପୁଣି କେତେକ ଲୋକଙ୍କର ମତ ଯେ ଶ୍ରମଜୀବୀ ମହିଳାମାନଙ୍କ ପରି ଭଦ୍ର ଘରର ଝିଅ ବୋହୂମାନେ ଶାରୀରିକ ପରିଶ୍ରମ କଲେ ସେମାନଙ୍କର କୋମଳ ଲାବଣ୍ୟମୟ ଅଙ୍ଗ ଦୃଢ଼ ଓ କଠିନ ହୋଇଯିବ ଏବଂ ମୁଖ ମଣ୍ଡଳ ରୁକ୍ଷ ହୋଇ ଯାଇ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବ । ଏହାପରି ଶତ ଶତ କୁତର୍କ ଉତ୍ଥାପନ କରି ଧନାଢ୍ୟ ବ୍ୟକ୍ତିମାନେ ନିଜର ସ୍ତ୍ରୀର ଓ କନ୍ୟାମାନଙ୍କୁ ବ୍ୟାୟାମ କରିବା ପାଇଁ ଅପତ୍ତି ଉପସ୍ଥିତ କରନ୍ତି । ବର୍ତ୍ତମାନ ଦେଶରେ ଏ ପ୍ରକାର ମତର ପରିବର୍ତ୍ତନ ଦେଖାଯାଉ ଅଛି ।



ବ୍ୟକ୍ତିଗତ ବା ପୁରୁଷ ବା ନାରୀ ସମସ୍ତଙ୍କ ପକ୍ଷରେ ପ୍ରଯୋଜ୍ୟ । ଆମ୍ଭମାନଙ୍କର ପରିଚାରବର୍ଗଙ୍କୁ ଆମ୍ଭେମାନେ କହୁ ଯେ ସ୍ୱାସ୍ଥ୍ୟ ଅର୍ଥାତ୍ ରକ୍ତ ଅଙ୍ଗର ସୌଷ୍ଠବତା ବୃଦ୍ଧି ହେବା, ଏହା ନିଜର ହାତରେ କଥା ଅଟେ । ତୁମ୍ଭେମାନେ ମାତା ସ୍ୱରୂପ ହୋଇ ଥିବାରୁ ତୁମ୍ଭଙ୍କୁ ଏଠାରେ ଗୋଟିଏ କଥା ଶୁଣାଉ ଅଛୁ ଯେ, ତୁମ୍ଭେମାନେ ଯେପରି ସନ୍ତାନର ମାତା ଅଟ, ପ୍ରକୃତି ଦେବୀ ସେହିପରି ଭୌତିକ ଜଗତର ମାତା ଅଟେ । ତୁମ୍ଭର ପୁତ୍ର ବା କନ୍ୟା ଯଦି କିଛି ଦୋଷ ବା ଅପରାଧ କରେ ତେବେ ତୁମ୍ଭେ ତାକୁ କ୍ଷମା କର, କିନ୍ତୁ ପ୍ରକୃତିମାତାର ଅଭ୍ୟାସ ସେପରି ନୁହେଁ । ସେ ଯେତିକି ଦୟାବତୀ, ସେତିକି କଠୋର ହୃଦୟ ହୋଇ ନିଜର ଦୋଷୀ ସନ୍ତାନକୁ କ୍ଷମା କରେ ନାହିଁ । ପରନ୍ତୁ ଭବିଷ୍ୟତ ଚେତନା ପାଇଁ ଦଣ୍ଡର ବିଧାନ କରେ । ଆମ୍ଭେମାନେ ସମସ୍ତ ପ୍ରକୃତିମାତାର ସନ୍ତାନ । ଧର, ଯାଙ୍କ ସାଥୀ ସହିତ ନଦୀ ବା ପୁଷ୍କରିଣୀରେ ଅବେଳରେ ବହୁ ସମୟ ସ୍ନାନ ବା ସନ୍ତରଣ ଆଦି କଲ, କିମ୍ବା ଖାଇ ସାରିଲା ପରେ ପୁଣି ଅନ୍ୟ ଟିକିଏ ଭଲ ଖାଦ୍ୟ ମିଳିଲା ତ ତାହା ଖାଇ ଦେଲ । ତେଣୁ ହେଲା ଜ୍ୱର, ସର୍ଦ୍ଦି, କାଶ ବା ମୁଣ୍ଡ ବ୍ୟଥା ; ଦିନା କେତେ କଷ୍ଟ ଭୋଗିଲା ପରେ ଅର୍ଥବ୍ୟୟ ଓ କଷ୍ଟ ଭୋଗି ଔଷଧ ପାଚନ ବ୍ୟବହାରରେ ଯାଇଁ ରୋଗ ମୁକ୍ତ ହେଲ । ଏହି ପ୍ରାକୃତିକ ଦଣ୍ଡ ଅବଶ୍ୟମ୍ଭାବୀ । ଏଣୁ ଆମ୍ଭମାନଙ୍କର ସାବଧାନ ରହିବା ଉଚିତ ।

ସହରର ଓ ମଫସଲ ରମଣୀ ବା ଶ୍ରମଜୀବୀ ଓ ଧନୀ ଘରର ରମଣୀମାନଙ୍କ ମଧ୍ୟରେ ଅନେକ ପାର୍ଥକ୍ୟ ଦେଖିବାକୁ ମିଳେ । ମଫସଲ ବା ଶ୍ରମଜୀବୀ ରମଣୀମାନେ ଭଲ ଲୁଗା ପିନ୍ଧନ୍ତି ନାହିଁ ବା ଭଲ ଜିନିଷ ଖାଇବାକୁ ପାଆନ୍ତି ନାହିଁ କିମ୍ବା ବେଶର ପରିପାଟି ନ





ଥାଏ, କିନ୍ତୁ ସେମାନଙ୍କ ମଧ୍ୟରେ ଅଧିକାଂଶଙ୍କର ଅଙ୍ଗ ଗଠନର ସୌଷ୍ଠବତା ଅତୀବ କମନୀୟ । ସେମାନେ ନିରୋଗ ଶରୀର ଘେନି ସୁଗୋଲ ସୁଠାମ ଅଙ୍ଗ ଗଠନର ମାଧୁର୍ଯ୍ୟରେ ଶୋଭମାନ ହୁଅନ୍ତି । ଏହାର କାରଣ ସେମାନଙ୍କର କାୟିକ ପରିଶ୍ରମ ସେମାନଙ୍କୁ ଏହି ସମ୍ପଦର ଅଧିକାରିଣୀ କରିଅଛି । ପୁଣି ଶୁଣି ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ ଜଣେ ଶ୍ରମଜୀବୀ ମହିଳା ପ୍ରସବ ସମୟରେ ସାମାନ୍ୟ ମାତ୍ର କଷ୍ଟ ଅନୁଭବ କରି ସନ୍ତାନ ପ୍ରସବ କରେ । ସେଠି ନର୍ସ ବା ଡାକ୍ତରର ପ୍ରୟୋଜନ ହୁଏ ନାହିଁ । କିନ୍ତୁ ସହରର ଅଧିକାଂଶ ଧନୀ ଘରର ଶିକ୍ଷିତା ରମଣୀ ପ୍ରତିଦିନ ଭଲ ଭଲ ଶାଢ଼ି, ସାୟା, ସେମିଜ, ସ୍ନୋ, ପାଉଡ଼ର, ଲିପଷ୍ଟିକ ଆଦି ଅଙ୍ଗ ପ୍ରସାଧନ ବ୍ୟବହାର କରି ନିଜର ସୌନ୍ଦର୍ଯ୍ୟତା ବଢ଼ାଇବାରେ ବ୍ୟସ୍ତ ଥାନ୍ତି ଅଥଚ ନାହିଁ ସେମାନଙ୍କର ସ୍ୱାସ୍ଥ୍ୟ ବା ପ୍ରାକୃତିକ ସୌନ୍ଦର୍ଯ୍ୟ । ଜଣେ ଶ୍ରମଜୀବୀ ରମଣୀର ବିନା ବ୍ରେଷ୍ଟହୋଲ୍ଡର ସାହାଯ୍ୟରେ ୪୦ ବର୍ଷ ବୟସରେ ସୁଉଚ୍ଚ ତୁଙ୍ଗ-ପୀନସ୍ତନର ଶୋଭା ବିରାଜମାନ ଥାଏ । କିନ୍ତୁ ସହରୀ ଧନୀ ଘରର ମହିଳା ୨୦।୨୫ ବର୍ଷ ବୟସରେ ସ୍ତନ ସୌନ୍ଦର୍ଯ୍ୟ ହରାଇ ବ୍ରେଷ୍ଟହୋଲ୍ଡର ଆଦି ଅସ୍ୱାଭାବିକ ଉପାୟର ସାହାଯ୍ୟ ନେଇ କି ମନସ୍ତାପରେ ଦିନ କାଟେ ତାହା ତାଙ୍କୁହିଁ ଜଣା । ପୁଣି ସେମାନଙ୍କର ପ୍ରସବ ବେଳ ତ ଏକ ହା-ହୁତାଶ ବ୍ୟାପାର । ଡାକ ନର୍ସ, ଡାକ୍ତର, ନିଜର ସ୍ୱାମୀ ବା ଶାଶୁଶ୍ୱଶୁରାଦି ଅଭିଭାବକମାନଙ୍କର ବ୍ୟସ୍ତତାର ଏକ ବିରାଟ ଆୟୋଜନ । ତେଣୁ ନାରୀର କେତେକ ସ୍ୱାସ୍ଥ୍ୟ ବିଷୟ ଓ ବ୍ୟାୟାମ ସମ୍ବନ୍ଧରେ କେତେକ ପ୍ରଣାଳୀ ଏବଂ କେଉଁ ବ୍ୟାୟାମ କଲେ କେଉଁ ଅଙ୍ଗ ସୁଦୃଢ଼ ହୁଏ ଇତ୍ୟାଦି ବିଷୟ ନିମ୍ନରେ ଆଲୋଚନା କରୁଅଛୁ । ଏହା ଦ୍ୱାରା ଯଦି ସେମାନେ କିଛି ଉପକୃତ ହୁଅନ୍ତି ତେବେ ଆମ୍ଭମାନଙ୍କର ଶ୍ରମ ସାର୍ଥକ ହେବ ।



ହସ୍ତ ପଦ ଓ ଶରୀରକୁ ଯଥୋଚିତ ମତେ ଇତଃସ୍ତତ ଚାଳନା କରିବାର ନାମ ବ୍ୟାୟାମ । ଏହି ଚାଳନା ବା ଗତି ଦୁଇ ପ୍ରକାର ଅଟେ ।

(୧) କେତେ ଗୁଡ଼ିଏ ପ୍ରକୃତ ଗତି, ଅର୍ଥାତ୍ ଆମ୍ଭମାନଙ୍କର ଇଚ୍ଛାଧୀନ ନୁହେଁ । (୨)—କେତେକ ଗୁଡ଼ିଏ ସ୍ୱେଚ୍ଛାଧୀନ ।

ଶ୍ୱାସ ପ୍ରଶ୍ୱାସ ସଙ୍ଗରେ ପ୍ରତି ମୁହୂର୍ତ୍ତରେ ବକ୍ଷ ପେଶୀର ଚାଳନା, ହୃତ୍ପିଣ୍ଡର ସଙ୍କୋଚନ ଓ ପ୍ରସାରଣ ଶରୀରର ରକ୍ତ ସଞ୍ଚାଳନ, ଅନ୍ତ୍ର ଚାଳନା ଦ୍ୱାରା ମଳତ୍ୟାଗ ପ୍ରଭୃତି କାର୍ଯ୍ୟ, ପ୍ରକୃତିର ଶାସନ ଅନୁସାରେ ନିର୍ବାହିତ ହୁଏ । ଏଣୁ ଏଗୁଡ଼ିକ ଆମ୍ଭମାନଙ୍କର ଇଚ୍ଛାର ଅଧୀନ ନୁହେଁ ।

ଗମନ, ଉପବେଶନ; ଦଣ୍ଡାୟମାନ ହେବା, ଦୌଡ଼ାଦୌଡ଼ି କରିବା, ଅଶ୍ୱାରୋହଣ ଓ ହସ୍ତପଦ ମସ୍ତକ ପ୍ରଭୃତିର ଚାଳନାକୁ ସ୍ୱେଚ୍ଛାଧୀନ ପେଶୀର ଗତି ବୋଲି ଯାଏ । କାରଣ ବିନା ଇଚ୍ଛାରେ ଏ ସମସ୍ତ କାର୍ଯ୍ୟ ହୋଇ ପାରେ ନାହିଁ, ଏହି ପ୍ରକାର ଚାଳନାକୁ ବ୍ୟାୟାମ କହନ୍ତି । ବ୍ୟାୟାମ ବ୍ୟତୀତ ଶରୀରର ପ୍ରକୃତ ବୃଦ୍ଧି ସାଧନ କୌଣସି ମତେ ହୋଇ ପାରେ ନାହିଁ । ଯେତେ ପୁଷ୍ଟିକର ଆହାର ଏବଂ ବିଶୁଦ୍ଧ ବାୟୁ ସେବନ କଲେ ମଧ୍ୟ ବ୍ୟାୟାମ ଅଭାବରୁ ଶରୀର କ୍ରମେ କ୍ରମେ ସ୍ଥୂଳ ଓ ଅସୁସ୍ଥ ହୋଇ ପଡ଼େ । ଶରୀରର ରକ୍ଷା ପାଇଁ ଯେପରି ପରିମିତ ଆହାର ପ୍ରୟୋଜନ, ସେହିପରି ପରିମିତ ପରିଶ୍ରମ ବା ବ୍ୟାୟାମ ମଧ୍ୟ ଆବଶ୍ୟକ । ଯଥାନିୟମରେ ସମୁଦାୟ ଅଙ୍ଗ ଚାଳନା ନ କଲେ ପରେ ସେ ଗୁଡ଼ିକ ନିଜ ନିଜର କାର୍ଯ୍ୟ କରିବାକୁ ଅକ୍ଷମ ହୋଇ ପଡ଼ନ୍ତି ।

କିନ୍ତୁ ଗାଉଁଲୀ ରମଣୀ ମାନଙ୍କର ଏସବୁ ବ୍ୟାୟାମ ଆବଶ୍ୟକ ହୋଇ ନ ପାରେ ! କାରଣ ନିଜ ନିଜ ସଂସାରର କାର୍ଯ୍ୟ ନିର୍ବାହ ପାଇଁ ସେମାନେ ସାରାଦିନ ଗୃହକର୍ମରେ ବ୍ୟାପୃତ ଥାନ୍ତି । ପାଣି ଟାଣିବା, ଘର ପରିଷ୍କାର, ବାସନ ମାଜିବା, ପୁଅ ଝିଅଙ୍କୁ କୋଳେଇବା, ମସଲା ବାଟିବା, ଧାନ କୁଟିବା ଆଦି ଶାରୀରିକ ପରିଶ୍ରମ ହେତୁ ସେମାନଙ୍କୁ ଅଲଗା ବ୍ୟାୟାମ କରିବାକୁ ଆବଶ୍ୟକ ହୁଏ ନାହିଁ ।

ଧନୀ ଘରର ରମଣୀମାନେ ଏ ସବୁ ସଂସାରିକ କାର୍ଯ୍ୟ କରନ୍ତି ନାହିଁ । ଅର୍ଥାଭାବ ନ ଥିବାରୁ ପାଚକ ପାଳିବା, ଦାସ ଦାସୀ ରଖିବା ଆଦି ବ୍ୟସନରେ ସମୟ ଅତିବାହିତ କରନ୍ତି । ସେହିମାନଙ୍କ ପକ୍ଷରେ ବ୍ୟାୟାମ ଆବଶ୍ୟକ ।

ଯେଉଁ ନାରୀ ପରିଶ୍ରମୀ, କଷ୍ଟସହିଷ୍ଣୁ ବା ବ୍ୟାୟାମରତା ନୁହେଁ ସେମାନଙ୍କର ରୋଗର ଆକ୍ରମଣକୁ ପ୍ରତିରୋଧ କରିବାର ସାମର୍ଥ୍ୟ ଥାଏ ନାହିଁ । ବାହାରର ଶୀତଳ ବା ଦୁର୍ଗନ୍ଧ ବାୟୁ ସେମାନଙ୍କୁ ସ୍ପର୍ଶ କଲାମାତ୍ରେ, ସର୍ଦ୍ଦିକାଶ ବା ଜ୍ୱର ହୁଏ । ଦେଶରେ ବସନ୍ତ ମିଳିମିଳା, ହଇଜା ଆଦି ସଂକ୍ରାମକ ବ୍ୟାଧିର ପ୍ରାଦୁର୍ଭାବ ହେଲେ ସେମାନେହିଁ ଅଗ ଏଥିରେ ଆକ୍ରାନ୍ତ ହୁଅନ୍ତି । ଶରତ କାଳରେ ଜର, ଶୀତକାଳରେ କାଶ, ଗ୍ରୀଷ୍ମ କାଳରେ ପେଟ ବେଦନା ଇତ୍ୟାଦି ଭିନ୍ନ ଭିନ୍ନ ଋତୁର ଭିନ୍ନ ଭିନ୍ନ ପୀଡ଼ା ସର୍ବଦା ସେମାନଙ୍କୁ ହିଁ ଆକ୍ରମଣ କରେ । ଧନାଢ୍ୟ ବ୍ୟକ୍ତି ହୋଇଥିଲେ ଜଳବାୟୁ ପରିବର୍ତ୍ତନ ପାଇଁ ବିଦେଶ ଭ୍ରମଣ, ନିଜର ପରିବାର ପାଇଁ ସ୍ୱତନ୍ତ୍ର ଏକ ଚିକିତ୍ସକ ନିଯୋଗ ଆଦି ଯାବତୀୟ ଅର୍ଥନାଶ ବ୍ୟବସ୍ଥା କରିବାକୁ ହୁଏ ।



ବର୍ତ୍ତମାନ ଆମ୍ଭମାନଙ୍କୁ ଦେଖିବାକୁ ହେବ ଯେ,ଆମ୍ଭମାନଙ୍କର ଗୃହଲକ୍ଷ୍ମୀଙ୍କ ପାଇଁ କି କି ପ୍ରକାର ବ୍ୟାୟାମ ଆବଶ୍ୟକ । ଏହାର ମଧ୍ୟ ଦୁଇଟି ବିଭାଗ ଅଛି । ପ୍ରଥମ—ଶିକ୍ଷାକାଳ ବା ଅବିବାହିତା ଅବସ୍ଥାରେ ବ୍ୟାୟାମ, ଦ୍ୱିତୀୟ—ବିବାହାନ୍ତେ ପତି ଗୃହରେ ବ୍ୟାୟାମ । ଶିକ୍ଷାକାଳର ବ୍ୟାୟାମ ହେଉଛି ଠିକ୍ ବାଳକମାନଙ୍କର ବ୍ୟାୟାମ ପରି । ଏହା ଦ୍ୱାରା ବାଳିକାମାନଙ୍କର ଅଙ୍ଗ ସୁଦୃଢ଼ ହୁଏ, ମନ ଓ ଦେହର ବଳ ବଢ଼େ । ନିଜକୁ କୌଣସି ଦୁର୍ବୃତ୍ତର ଅତ୍ୟାଚାରରୁ ରକ୍ଷା କରିବାକୁ ସେମାନେ ସମର୍ଥା ହୁଅନ୍ତି । କିନ୍ତୁ ଶିକ୍ଷା କାଳର ବ୍ୟାୟାମ ପତିଗୃହରେ ଆଉ ଶୋଭା ପାଏ ନାହିଁ । ପତି ଗୃହରେ ନିଜର ଆତ୍ମୀୟମାନଙ୍କୁ ସେବାଇ କରିଦେବା ଠାରୁ ଅନ୍ୟାନ୍ୟ ଗୃହକର୍ମ ଯାହାକି ପୂର୍ବେ ବର୍ଣ୍ଣନା କରାଯାଇ ଅଛି, ସେଥିରେ ନିହିତ ଅଛି ।

——

## କିଶୋରୀର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ସାଧନା

ସ୍ତ୍ରୀଲୋକମାନଙ୍କର ସ୍ୱାସ୍ଥ୍ୟ-ଚର୍ଚ୍ଚା ସମୟରେ ପ୍ରଧାନତଃ ଲକ୍ଷ୍ୟ ରଖିବାକୁ ହେବ ଯେ, ଯେଉଁଥିରେ ସେମାନଙ୍କର କମନୀୟ ନାରୀ ସୁଲଭ ଭାବ ଓ ସୌନ୍ଦର୍ଯ୍ୟ ଅକ୍ଷୁର୍ଣ୍ଣ ରହେ । ଏହି କମନୀୟତା ଓ ସୌନ୍ଦର୍ଯ୍ୟ ବଜାୟ ରଖିବାକୁ ହେଲେ ପ୍ରତ୍ୟେକ ସ୍ତ୍ରୀଲୋକର ସ୍ୱାସ୍ଥ୍ୟ ସଂରକ୍ଷଣ ନୀତି ଗୁଡ଼ିକ ସହିତ ପରିଚୟ ଥିବା ଆବଶ୍ୟକ । ଏହି ଠାରେ ଆମ୍ଭେମାନେ ସେହି ନୀତି ଗୁଡିକ ସମ୍ବନ୍ଧେ ଆଲୋଚନା କରିବୁ ।

ନାରୀ ପ୍ରକୃତିର ଅଂଶ । ପ୍ରକୃତି ହେଉଛି ସୃଷ୍ଟି ଆଦ୍ୟାଶକ୍ତି, ଯାହାଠାରୁ ସବୁ ସୃଷ୍ଟି ହୋଇଅଛି । ସ୍ୱାସ୍ଥ୍ୟ ସଙ୍ଗରେ ସୌନ୍ଦର୍ଯ୍ୟର





ଖୁବ୍ ନିକଟ ସମ୍ପର୍କ ଅଛି । ସୌନ୍ଦର୍ଯ୍ୟମୟୀ ପ୍ରକୃତିର ଅଂଶ ନାରୀ ହେଉଛି ସୌନ୍ଦର୍ଯ୍ୟ ଉପରେ ସହଜାତ ଅଧିକାରିଣୀ । ପ୍ରକୃତିଦେବୀ ଠିକ୍ ସମୟରେ ବାଳିକା ଦେହରେ ସୌନ୍ଦର୍ଯ୍ୟର ବିକାଶ ଧୀରେ ଧୀରେ କରିଥାଏ । ଯେଉଁମାନେ ଶିକ୍ଷା ବଳରେ ଏହି ସୌନ୍ଦର୍ଯ୍ୟକୁ ବଜାୟ ରଖି ପାରନ୍ତି ସେହିମାନେ ସୁଖପୂର୍ଣ୍ଣ ଜୀବନ ଯାପନ କରନ୍ତି । ସେହିମାନେହିଁ ଆଦର୍ଶ ପୁତ୍ରର ଜନନୀ ହେବାର ସୌଭାଗ୍ୟ ଲାଭ କରନ୍ତି ।

ସୌନ୍ଦର୍ଯ୍ୟ ଦୁଇ ପ୍ରକାର—ଦୈହିକ ଓ ଆନ୍ତରିକ । ଦେହ ଓ ମନ ଯେପରି ପରସ୍ପର ଉପରେ ନିର୍ଭରଶୀଳ, ଠିକ୍ ସେହିପରି ଦୈହିକ ସୌନ୍ଦର୍ଯ୍ୟ ଓ ଆନ୍ତରିକ ସୌନ୍ଦର୍ଯ୍ୟ ମଧ୍ୟ ପରସ୍ପର ଉପରେ ନିର୍ଭରଶୀଳ । ଦୈହିକ ସୌନ୍ଦର୍ଯ୍ୟ ନିର୍ଭର କରେ ଦୈହିକ ସୁସ୍ଥତା ଉପରେ, ଆଉ ଆନ୍ତରିକ ସୌନ୍ଦର୍ଯ୍ୟ ନିର୍ଭର କରେ ମାନସିକ ସୁସ୍ଥତା ଉପରେ । ପ୍ରଥମେ ଦେଖାଯାଉ ଦୈହିକ ସୁସ୍ଥତା ବଜାୟ ରଖିବାକୁ ହେଲେ ପ୍ରତ୍ୟେକ ବାଳିକାର କି କି ଜାଣିବା ଆବଶ୍ୟକ । ପ୍ରଥମେ ତାକୁ ଜାଣିବାକୁ ହେବ ତା'ର ଦେହ ପ୍ରକୃତିକୁ, ଯାହା ମଧ୍ୟ ଦେଇ ସେ ଉତ୍ତର କାଳରେ ଗଢ଼ି ଉଠିବ ମହୀୟସୀ ନାରୀ ରୂପରେ ।

ପ୍ରକୃତିଦେବୀର ନିର୍ଦ୍ଦେଶରେ ବାଳିକା କିଶୋରୀ ଅବସ୍ଥାରେ ପହଞ୍ଚିଲା ବେଳକୁ ତା'ର ଅଙ୍ଗ ପ୍ରତ୍ୟଙ୍ଗରେ ଦ୍ରୁତ ପରିବର୍ତ୍ତନ ଘଟେ । ଶିକ୍ଷା ଅଭାବରୁ କିଶୋରୀ ତା'ର ଏ ପରିବର୍ତ୍ତନ ମୂଳରେ କ'ଣ ଅଛି ତାହା ବୁଝି ନ ପାରି ଚିନ୍ତାଗ୍ରସ୍ତ ହୁଏ । ଏହି ପ୍ରୟୋଜନୀୟ ପରିବର୍ତ୍ତନ ମୂଳରେ ଅଛି ଆମମାନଙ୍କର ଶରୀରସ୍ଥ ଅନ୍ତଃସ୍ରାବୀ



ଗ୍ରନ୍ଥିର ଉପର କାର୍ଯ୍ୟକାରିତା । ଶରୀରର ପ୍ରତ୍ୟେକ କ୍ରିୟା ଏହି ଗ୍ରନ୍ଥିରସ ଉପରେ ନିର୍ଭର କରେ ।

ଶୈଶବାବସ୍ଥାରେ ଆମ୍ଭମାନଙ୍କର ଶରୀରରେ 'ଥାଇମସ୍' ନାମକ ଗୋଟିଏ ଅନ୍ତଃସ୍ରାବୀ ଗ୍ରନ୍ଥି ବିଶେଷ କାର୍ଯ୍ୟ କରି ଥାଏ । ଏହା ଆମ୍ଭମାନଙ୍କର ଛାତିର ଉପର ଦିଗରେ ଶ୍ୱାସନଳୀ ନିକଟରେ ଅବସ୍ଥିତ । କୈଶୋରର ପ୍ରାରମ୍ଭରେ ଏହି ଗ୍ରନ୍ଥି ଆକୃତିରେ ଛୋଟ ହୋଇ ଆସିବାକୁ ଆରମ୍ଭ ହୁଏ ଏବଂ ଅନ୍ୟ ଅନ୍ତଃସ୍ରାବୀ ଗ୍ରନ୍ଥି ଏହାର କାର୍ଯ୍ୟଭାର ଗ୍ରହଣ କରେ । ଯଦି ଏହି ଥାଇମସ୍ ଗ୍ରନ୍ଥି ଅନ୍ୟ ଗ୍ରନ୍ଥିକୁ ତା'ର କାର୍ଯ୍ୟଭାର ନ ଦିଏ, ତେବେ ବୟଃସନ୍ଧିଜନିତ ପରିବର୍ତ୍ତନଟି ଦେହରେ ଆସି ପାରେ ନାହିଁ, ଏଣୁ ଶିଶୁଭାବ ରହିଯାଏ ରହିଯାଏ । ଥାଇମସ୍ ଗ୍ରନ୍ଥି ସାନ ହେବାକୁ ଆରମ୍ଭ ହେଲା ମାତ୍ରେ ଅନ୍ୟାନ୍ୟ ଅନ୍ତଃସ୍ରାବୀ ଗ୍ରନ୍ଥି ରସ ପ୍ରଭାବରେ ବାଳିକାର ଶରୀର ଧୀରେ ଧୀରେ ମାତା ହେବାର ଉପଯୋଗୀ ହୋଇ ଉଠେ ।

ବସ୍ତୁତଃ ବାଳିକା ଅବସ୍ଥାରୁ ପ୍ରତ୍ୟେକ ନାରୀର ମନରେ ଛପି ରହିଥାଏ ମାତା ହେବାର ଆକାଂକ୍ଷା ଏବଂ ନାରୀତ୍ୱର ପୂର୍ଣ୍ଣ ବିକାଶ ହୁଏ ମାତୃତ୍ୱରେ ।

ଥାଇମସ୍ ଗ୍ରନ୍ଥିଟି କ୍ରମଶଃ ଛୋଟ ହୋଇ ଆସିବା ପରେ ଥାଇରଏଡ୍ ଓ ପ୍ରଜନନ ଗ୍ରନ୍ଥି ( Gonads gland ) ଏହାର କାର୍ଯ୍ୟଭାର ଗ୍ରହଣ କରେ । ଏହି ଦୁଇଟି ଅନ୍ତଃସ୍ରାବୀ ଗ୍ରନ୍ଥିର କାର୍ଯ୍ୟକାରିତା ଉପରେ କିଶୋରୀର ପରିପୂର୍ତ୍ତି ( Maturation ) ନିର୍ଭର କରେ । ଆକୃତିଗତ ପରିବର୍ତ୍ତନ ଯେତେ ଘଟିଲେ ମଧ୍ୟ ପରିପୂର୍ତ୍ତିର ସମ୍ପୂର୍ଣ୍ଣତା ଉପରେ ମାତା ହେବାର ଉପଯୁକ୍ତତା ନିର୍ଭର





କରେ । ଉକ୍ତ ଅନ୍ତଃସ୍ରାବୀ ଗ୍ରନ୍ଥି ଦୁଇଟିର ରସ ପ୍ରତ୍ୟକ୍ଷ ଭାବରେ ରକ୍ତ ସ୍ରୋତରେ ମିଶୁଥିଲେ ପରିପୂର୍ଣ୍ଣ କିମ୍ବା ଅବ୍ୟାହତ ଥାଏ । ବାଳିକାମାନେ ଏହି ସମୟରେ ବେଶ୍ ବୁଝିପାରନ୍ତି ଯେ, ସେମାନେ କୈଶୋରରେ ଉପସ୍ଥିତ ହୋଇ ଅଛନ୍ତି ।

ଯେଉଁ ବାଳିକା କୈଶୋରର ପ୍ରାରମ୍ଭରେ ପ୍ରକୃତଦେବୀର ପ୍ରବର୍ତ୍ତିନାନୁସାରେ ତାର ଶରୀର ଅଭ୍ୟନ୍ତରସ୍ଥ ସବୁଯନ୍ତ୍ରର ପରିବର୍ତ୍ତନ ଗୁଡ଼ିକର ଉପଯୁକ୍ତତା ଓ ପ୍ରୟୋଜନୀୟତା ଉପଲବ୍ଧି କରିପାରେ, ସେମାନଙ୍କ ଭବିଷ୍ୟତ ଜୀବନ ସୁଖମୟ ହୋଇ ଉଠେ । କିନ୍ତୁ ଯେଉଁମାନେ ମୂର୍ଖ ମା ମାଉସୀଙ୍କଠାରୁ ଅଶିକ୍ଷା ପାଇ କେତେ ଗୁଡ଼ିଏ କୁସଂସ୍କାର ବଶବର୍ତ୍ତୀ ହୋଇ ଚଳନ୍ତି, ସେମାନଙ୍କର ଭବିଷ୍ୟତ ଦାମ୍ପତ୍ୟ ଜୀବନ ହଳାହଳମୟ ହେବାର ସମ୍ଭବ ।

ଥାଇମସ୍ ଗ୍ରାଣ୍ଡର ଆୟତନ ଛୋଟ ହେବାକୁ ଆରମ୍ଭ କଲା ମାତ୍ରେ କିଶୋରୀର ଜୀବନରେ ପରିବର୍ତ୍ତନ ଆସିବାକୁ ଆରମ୍ଭ ହୁଏ । ଏହି ସମୟ ଠାରୁ ପ୍ରଜନନ ଗ୍ରନ୍ଥିର କାର୍ଯ୍ୟ ଆରମ୍ଭ ହୁଏ । ଏହି ଗ୍ରନ୍ଥିର ରସ ଉପରେ ନିର୍ଭର କରି ତାର ପୂର୍ଣ୍ଣବିକାଶ ଓ ତା'ର ନାରୀ ସୁଲଭ ଆକୃତି ଏବଂ ଠିକ୍ ଭାବରେ କାର୍ଯ୍ୟ ହେଉ ଥିଲେ ନାରୀର ଦର୍ପମୟ ଭାବ ପ୍ରକାଶିତ ହୋଇ ଉଠେ । ଏହି ପ୍ରଜନନ ଗ୍ରନ୍ଥିର କାର୍ଯ୍ୟକାରିତା ଯୋଗୁଁ ପ୍ରତ୍ୟେକ ୨୮ ଦିନ ଅନ୍ତରରେ ସେମାନଙ୍କ ଶରୀରରୁ ସ୍ରାବ ନିର୍ଗତ ହୁଏ । ଏହି ସ୍ରାବ ନିର୍ଗତ ହେବା ସମୟ କାହାର କମ ବା କାହାର ବେଶୀ । ଲକ୍ଷ୍ୟ ରଖିବା ଉଚିତ, ଯାହାର ଯେତେ ଦିନ ଅନ୍ତର ଓ ଯେତେ ଦିନ ଯାଏ ସ୍ରାବ ହୁଏ, ତାହାର ଯେପରି ଏହି ନିର୍ଦ୍ଦିଷ୍ଟ ସମୟ ଠିକ୍ ରହିଥାଏ ।



ଏହି ସମୟରେ ଅନେକ କିଶୋରୀ ଶାରୀରିକ ଅସ୍ୱସ୍ତି ଅନୁଭବ କରନ୍ତି । ଏ ସମୟରେ ସେମାନେ ସ୍ନାୟୁବିକ ଦୁର୍ବଳତା ଓ ପେଟରେ ପିଠିରେ ବ୍ୟଥା ଅନୁଭବ କରନ୍ତି । ଏ ସମୟରେ ଅନେକଙ୍କର କୋଷ୍ଠବଦ୍ଧତା ଦେଖା ଦିଏ । ପୁଣି କାହାରି କାହାରି ମଧ୍ୟ କୋଷ୍ଠ ତାରଲ୍ୟ ଘଟେ । ତେବେ ମାସିକ ସ୍ରାବଟି ଶାରୀରିକ ଅସୁସ୍ଥତାର ଲକ୍ଷଣ ନୁହେଁ, ବରଂ ଏହି ସ୍ରାବ ଯେଉଁମାନଙ୍କର ଠିକ୍ ନିୟମିତ ଭାବେ ହୋଇ ଥାଏ ସେମାନେ ପ୍ରକୃତରେ ସୁସ୍ଥ । ଏ ସମୟରେ କୌଣସି ପ୍ରକାର କାୟିକ ଶ୍ରମ କରିବା ବା ଦେହରେ ଥଣ୍ଡା ଲଗାଇବା ଉଚିତ ନୁହେଁ । ଯେଉଁମାନଙ୍କର ପ୍ରତିଦିନ ସ୍ନାନ କରିବାର ଅଭ୍ୟାସ ଅଛି, ସେମାନେ ରଜଃସ୍ରାବ କେତେଦିନ ଅଳ୍ପ ଗରମ ଜଳରେ ସ୍ନାନ କରିବା ଉଚିତ । ଶରୀର ଯେପରି ପରିଷ୍କାର ପରିଚ୍ଛନ୍ନ ଥାଏ ସେଥି ପ୍ରତି ବିଶେଷ ଦୃଷ୍ଟି ରଖିବା ଦରକାର । ଯେଉଁମାନଙ୍କର ମାସିକ ସ୍ରାବ କଷ୍ଟକର ହୁଏ, ସେମାନେ ଏହି ଅବସ୍ଥାରୁ ଆରାମ ପାଇବା ପାଇଁ ସେମାନଙ୍କ ପକ୍ଷରେ ଇନ୍ଦ୍ରିୟସ୍ନାନ ( Sitz bath ) ଖୁବ୍ ଫଳପ୍ରଦ । କମରରେ ଗରମ ସେକ ଓ ଗରମ ଜଳରେ ପାଦ ଧୋଇ ( Foot bath ) ଖୁବ୍ ଉପକାରୀ । କୋଷ୍ଠ ଯେପରି ନିୟମିତ ଭାବରେ ପରିଷ୍କାର ହୁଏ ସେ ଦିଗରେ ବିଶେଷ ଭାବରେ ଲକ୍ଷ୍ୟ ରଖିବା ଉଚିତ । ତେବେ ସର୍ବୋପରି ଜାଣିବା ଉଚିତ ଯେ—ସ୍ୱାସ୍ଥ୍ୟ ଯଦି ଭଲ ଥାଏ ତାହା ହେଲେ କୌଣସି ଅସୁବିଧାର ପ୍ରଶ୍ନ ଉଠେ ନାହିଁ । ଏପରି ବହୁ ସୁସ୍ଥ ସବଳ ରମଣୀ ଦେଖାଯାନ୍ତି, ଯେଉଁମାନଙ୍କର ଋତୁ ସ୍ରାବ ସମୟରେ ଆଦୌ କିଛି କଷ୍ଟ ହୁଏ ନାହିଁ । ତେଣୁ ସେମାନେ କିଛି ଅସୁସ୍ଥତା ବୋଧ ନ କରି ଖେଳ କୌତୁକ କାର୍ଯ୍ୟ କର୍ମରେ ରତ ଥାଆନ୍ତି ।





ଅନ୍ତଃସ୍ରାବୀ ଗ୍ରନ୍ଥିର କାର୍ଯ୍ୟକାରିତାର ବହିଃପ୍ରକାଶ ସମୟରେ ଲଜ୍ଜା, ଆବେଗ, କଳ୍ପନା ପ୍ରଭୃତି କିଶୋରୀଙ୍କୁ ଘେରି ବସେ । ଏ ସବୁ ବିଷୟରେ ଶିକ୍ଷା ନ ପାଇଲେ ଏ ଗୁଡ଼ିକୁ **ଆୟତ୍ତରେ ଆଣିବା** ସମ୍ଭବ ହୁଏ ନା, ତା ଫଳରେ ସେ ଅନେକ ସମୟରେ ନିଜର ସ୍ୱାସ୍ଥ୍ୟପ୍ରତି ଅବହେଳା କରେ । କିନ୍ତୁ ଯେତେବେଳେ ସେ ବୁଝିପାରେ ଯେ ଏହି ଅନ୍ତଃସ୍ରାବୀ ଗ୍ରନ୍ଥିର କାର୍ଯ୍ୟକାରିତା ତା ପକ୍ଷରେ ନିତାନ୍ତ ପ୍ରୟୋଜନ ଏବଂ ଏ ସମୟରେ ତା'ର ସଂଯତ ହେବା ଆବଶ୍ୟକ; ସେତେବେଳେ ସେ ପ୍ରକୃତି ଦେବୀର ସାହାଯ୍ୟଲବ୍ଧ ଶାରୀରିକ ଜ୍ଞାନ ଲାଭ କରିବାକୁ ସମର୍ଥ ହୁଏ ।

ମାନସିକ ଉତ୍ତେଜନାର ପ୍ରଭାବ ଏହି ଅନ୍ତଃସ୍ରାବୀ ଗ୍ରନ୍ଥି ଗୁଡ଼ିକ ଉପରେ ଖୁବ୍ ବେଶୀ । ଅହେତୁକ ଉତ୍ତେଜନା ଏହି ଗ୍ରନ୍ଥି ଗୁଡ଼ିକର ସ୍ୱାସ୍ଥ୍ୟ ନଷ୍ଟ କରେ । ଏଣୁ ମାନସିକ ଉତ୍ତେଜନାକୁ ଏଡ଼ି କିଶୋରୀମାନଙ୍କର ଚଳିବା କର୍ତ୍ତବ୍ୟ । ପ୍ରଧାନତଃ ଯୌନ ଗ୍ରନ୍ଥି ଗୁଡ଼ିକ ଉପରେ କିଶୋରୀମାନଙ୍କର ପରିପୁଷ୍ଟି ନିର୍ଭର କରେ ସେ ଗୁଡ଼ିକର ସ୍ୱାସ୍ଥ୍ୟ ବିଶେଷ ଭାବରେ ରୋଗ ଏବଂ ଅପ୍ରୟୋଜନୀୟ କୁଅଭ୍ୟାସ ଦ୍ୱାରା କ୍ଷତିଗ୍ରସ୍ତ ହୁଏ । ଏହିସବୁ ଗ୍ରନ୍ଥିରସ ଅତିରିକ୍ତ ପରିମାଣରେ ନିଃସୃତ ହେଲେ ତାହା ଶରୀରରେ ନାନା ପ୍ରକାର ପରିବର୍ତ୍ତନ ଦେଖା ଦେଇ ପାରେ, ଯାହା ଫଳରେ ତା'ର ନାରୀସୁଲଭ ଆକୃତି ମଧ୍ୟ ସେ ହରାଇ ବସେ । ସୁତରାଂ ଏ ସମୟରେ ଏହି ଦୁଇଟି ବିଷୟ ସର୍ବତୋଭାବେ ପରିତ୍ୟାଜ୍ୟ ।

କୈଶୋର ଅବସ୍ଥାରେ ଯେତେବେଳେ ପରିପୂର୍ଣ୍ଣତାର କାର୍ଯ୍ୟ ଚାଲିଥାଏ, ସେତେବେଳେ କୌଣସି କୌଣସି କ୍ଷେତ୍ରରେ ତାହା ତାହା ଉପରେ ଗୋଟିଏ ଗୋଟିଏ ଗ୍ରନ୍ଥିର କାର୍ଯ୍ୟକାରିତା ବିଶେଷ



ଭାବରେ ପରିସ୍ଫୁଟ ହୋଇ ଉଠେ । ଯାହା ଉପରେ ଯେଉଁ ଗ୍ରନ୍ଥିର ପ୍ରଭାବ ପ୍ରକଟ ଉଠେ, ତାକୁ ସେହି ଗ୍ରନ୍ଥି କେନ୍ଦ୍ରିକ (Centred) କୁହାଯାଏ ।

ସ୍ତ୍ରୀଲୋକମାନଙ୍କ ମଧ୍ୟରେ—କେହି କେହି ସ୍ପଷ୍ଟବାଦୀ ଓ ପୁରୁଷ ଭାବାପନ୍ନ ହୋଇଥାନ୍ତି । ସବୁ କାର୍ଯ୍ୟରେ ଏମାନେ ଅଧିନାୟିକା ହେବାକୁ ଚାହାନ୍ତି । ଅନ୍ୟାନ୍ୟ ଶ୍ରେଣୀଙ୍କ ତୁଳନାରେ ଏମାନେ ପୁରୁଷଙ୍କ ପରି କର୍ମଠ ଓ କଠୋର ପରିଶ୍ରମୀ ଓ ପୁରୁଷୋପଯୋଗୀ ଖେଳ କୌତୁକକୁ ଭଲ ପାନ୍ତି । ଏମାନଙ୍କୁ ବୋଲାଯାଏ ଏଡ୍ରିନାଲ ଗ୍ରନ୍ଥି-କେନ୍ଦ୍ରିକ ( Adrenal Centred )

ସ୍ତ୍ରୀଲୋକମାନଙ୍କ ମଧ୍ୟରେ ପୁଣି ଅନେକ ଧୀର ଓ ନମ୍ର ସ୍ୱଭାବ ଓ ବୁଦ୍ଧିମତୀ ହୋଇଥାନ୍ତି । ଏହିପରି ସ୍ୱଭାବଯୁକ୍ତା ରମଣୀ ମଧ୍ୟରେ ଯେଉଁମାନଙ୍କର ଆକୃତି ଖୁବ୍ ଲମ୍ବା ଚୌଡ଼ା ଓ ଗମ୍ଭୀର ଏବଂ ମୁଣ୍ଡର କେଶରେ ପ୍ରାଚୁର୍ଯ୍ୟ ଦେଖାଯାଏ ସେମାନଙ୍କୁ କୁହାଯାଇ ଥାଏ ପିଟୁଇଟାରୀ ଗ୍ରନ୍ଥି-କେନ୍ଦ୍ରିକ ( Pituitary centre ) । ଏହି ଶ୍ରେଣୀର ସ୍ତ୍ରୀଲୋକମାନେ ଖୁବ୍ ସଂଯତ ହୁଅନ୍ତି ଏବଂ ଇଚ୍ଛା କରିଲା ମାତ୍ରେ କୌଣସି ଜିନିଷକୁ ଶୀଘ୍ର ନିଜର ଆୟତ୍ତକୁ ଆଣି ପାରନ୍ତି । ଏମାନେ ବିଶେଷ ଭାବରେ ବୁଦ୍ଧିମତା କାର୍ଯ୍ୟରେ ଜୀବନର ଲାଭ କରନ୍ତି ଓ ରୋମାଞ୍ଚକର କାର୍ଯ୍ୟପ୍ରିୟ ହୋଇଥାନ୍ତି ।

ଯେଉଁ ସମସ୍ତ ରମଣୀ 'ଥାଇରଏଡ୍ ଗ୍ରନ୍ଥି-କେନ୍ଦ୍ରିକ' ସେମାନେ ଦେଖିବାକୁ ଖୁବ୍ ସୁନ୍ଦର । ସେମାନଙ୍କର ମୈର ମସୃଣତା ଓ ଶରୀରର ଉଜ୍ଜ୍ୱଳତା ବଡ଼ ଆକର୍ଷଣୀୟ ହୁଏ । ଏମାନଙ୍କର ଆଖି ଦେଖିବାକୁ ବଡ଼ ବଡ଼ । ଏମାନେ ପରିଶ୍ରମୀ, ଶରୀରର ଗଠନ ବେଶ୍ ସୁଗୋଲ୍ ସୁଠାମ ହୁଏ । ଏହି ଥାଇରଏଡ୍ ଗ୍ରନ୍ଥିଟିକୁ ସ୍ତ୍ରୀଲୋକ-





ମାନଙ୍କର ତୃତୀୟ ପ୍ରଜନନ ଗ୍ରନ୍ଥି ବୋଲାଯାଏ । କାରଣ ଏହାର ଉପରେ ସେମାନଙ୍କର ଯୌନଗ୍ରନ୍ଥିର କାର୍ଯ୍ୟକାରିତା ଓ ଦାମ୍ପତ୍ୟ ଜୀବନର ସୁସ୍ଥତା ବହୁଳାଂଶରେ ନିର୍ଭର କରେ । ଏହି ଗ୍ରନ୍ଥିଟି ଜୀବନର ସୁସ୍ଥତା, ଆନନ୍ଦ ଓ ସମସ୍ତ ଗ୍ରନ୍ଥି-ରାଜ୍ୟର ଗୃହ କାଠି ସ୍ୱରୂପ ।

ପ୍ରଧାନତଃ ଏହି ପ୍ରକାର ଗ୍ରନ୍ଥିକେନ୍ଦ୍ରିକ ସ୍ତ୍ରୀଲୋକ ବହୁତ ଦେଖିବାକୁ ମିଳେ ।



## ନାରୀ ସୌନ୍ଦର୍ଯ୍ୟର ଶତ୍ରୁ କିଏ ?

ପ୍ରଧାନତଃ ସୌନ୍ଦର୍ଯ୍ୟ ଗୁରଟୋଟି ଶତ୍ରୁ ଯୋଗୁ ନଷ୍ଟହୁଏ । ୧—ଅତିରିକ୍ତ ମେଦ ବହୁଳତା, ୨—କୋଷ୍ଠବଦ୍ଧତା ୩—କୁଅଭ୍ୟାସ, ୪—ଦୁଷ୍ଟ-ଦେହ ଭଙ୍ଗିମା । ଏହି ଗୁଡ଼ିକର କାରଣ ଏବଂ କି ଭାବରେ ଏ ଗୁଡ଼ିକୁ ଦୂର କରାଯାଇ ପାରେ ସେ ସମ୍ବନ୍ଧରେ ଆମ୍ଭେମାନେ ନିମ୍ନରେ ଆଲୋଚନା କରୁଅଛୁ ।

ଶରୀର ଯେପରି ସ୍ଥୂଳ ନ ହୁଏ ସେଥିପ୍ରତି ପ୍ରତ୍ୟେକ ବାଳିକାର ନଜର ଦେବା ଉଚିତ । ଏହା ଗୋଟିଏ ରୋଗ ବିଶେଷ । ଶରୀରରେ ଅତିରିକ୍ତ ମେଦ ବୃଦ୍ଧି ହେବାର କାରଣ ସାଧାରଣତଃ ଦୁଇ ପ୍ରକାର ଅଟେ—ଅପରିମିତ ଆହାର ବା ଅଭ୍ୟନ୍ତରୀଣ ଯନ୍ତ୍ରାଦିର ବୈକଲ୍ୟ । କେତେକ ରମଣୀମାନଙ୍କର ଶରୀରରେ ମେଦ ଅଧିକ ହେଲେ ମଧ୍ୟ ଶରୀରର ଗୁରଅଙ୍ଗ ସମାନ ଭାବରେ ବଣ୍ଟିତ ହୋଇଥାଏ । କିନ୍ତୁ କେତେକ ସ୍ତ୍ରୀଲୋକଙ୍କର ଦେଖିବାକୁ ମିଳେ ବୁକୁ ଆଦି ବେଶ୍ ମେଦଯୁକ୍ତ ଅଥଚ ହସ୍ତପଦ ଅତ୍ୟନ୍ତ ସରୁ । ଏହାର



କାହାର ପୁଣି ପେଟରେ ଖୁବ୍ ବେଶୀ ଚର୍ବି ଜମି ଯାଇଛି, ଅଥଚ ନିତମ୍ବ ଦେଶରେ ଚର୍ବିର ଅଭାବ । ଏ ଗୁଡ଼ିକ ଶାରୀରିକ ତ୍ରୁଟି ।

ଆମ୍ଭମାନଙ୍କର ଶରୀରରେ ମେଦର ପ୍ରୟୋଜନ ଯଥେଷ୍ଟ, କିନ୍ତୁ ତା'ର ଗୋଟିଏ ସୀମା ଅଛି । ମେଦ ବୃଦ୍ଧିଦ୍ୱାରା ଆମ୍ଭେମାନେ ଦୀର୍ଘ ଜୀବନ ଲାଭରୁ ବଞ୍ଚିତ ହେଉ ଏବଂ ମେଦ-ବହୁଳ ବ୍ୟକ୍ତିର ରୋଗ ଜୀବାଣୁ ସଙ୍ଗେ ଯୁଦ୍ଧ କରିବାର ଶକ୍ତି ହ୍ରାସ ପାଏ । ଆମର ଶରୀରରେ ମସ୍ତିଷ୍କଠାରୁ ଆରମ୍ଭ କରି ପାଦ ପର୍ଯ୍ୟନ୍ତ ସବୁ ସ୍ଥାନରେ ମେଦ ଅଛି । ଏହି ମେଦର ଅନ୍ୟତମ ପ୍ରଧାନ କାର୍ଯ୍ୟ ହେଉଛି ଶରୀରର ତାପ ରକ୍ଷା କରିବା । ମେଦାଧିକ୍ୟ ହେଲେ ପେଶୀ ମଣ୍ଡଳର ଦୁର୍ବଳତା ଆସେ, ଏଣୁ ଶରୀରର ସନ୍ଧିସ୍ଥଳ ଗୁଡ଼ିକ ଦୁର୍ବଳ ହୋଇ ପଡ଼େ । ଏହାର କାରଣ ପରିମିତ ରକ୍ତ ସଞ୍ଚାଳନ କାର୍ଯ୍ୟ ମେଦାଧିକ୍ୟ ଦ୍ୱାରା ଆଘାତ ପାଏ ବୋଲି ଏହିସବୁ ସ୍ଥାନରେ ଦୁର୍ବଳତା ଦେଖା ଦିଏ । ଏଠାରେ ପ୍ରଶ୍ନ ଉଠିପାରେ ଖାଦ୍ୟ ମେଦରେ ପରିଣତ ହେବାର ପ୍ରୟୋଜନୀୟତା କ'ଣ ? ପ୍ରକୃତରେ ନିର୍ଦ୍ଦେଶ ଅନୁସାରେ ମେଦ ଶରୀରଯନ୍ତ୍ରର ଇନ୍ଧନ । ଶରୀରର ପ୍ରୟୋଜନାନୁସାରେ ଏହି ସଞ୍ଚିତ ମେଦରୁ ଶରୀରଯନ୍ତ୍ରକୁ ଚାଲୁ ରଖିବାର ଇନ୍ଧନ ଶରୀର ଗ୍ରହଣ କରିଥାଏ ।

ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କର ଏହି ମେଦ ସଞ୍ଚୟର କ୍ଷମତା ବେଶୀ । କାରଣ ସନ୍ତାନର ଜନନୀ ହିସାବରେ କ୍ଷୁଧାର୍ତ୍ତ ସନ୍ତାନଙ୍କୁ ସେମାନେ ଖାଦ୍ୟ ଯୋଗାଇବେ । ଯେତେ-ବେଳେ ସେମାନଙ୍କର ସନ୍ତାନପ୍ରସବର କ୍ଷମତା ନଷ୍ଟ ହୋଇ ଯାଏ, ସେତେବେଳେ ଅର୍ଥାତ୍ ମଧ୍ୟ ଜୀବନରେ ସେମାନଙ୍କର ଏହି ମେଦ କୌଣସି ଖର୍ଚ୍ଚ ନ ହେବାରୁ ସେମାନଙ୍କୁ ମେଦାଧିକ୍ୟ ରୋଗ ଧୀରେ





## ମେଦାଧିକ୍ୟ ବିନାଶର ଉପାୟ

ଯେଉଁଭଳି ଖାଦ୍ୟ ଅଛି ଯେଉଁଥିରେ କି ସ୍ନିଗ୍ଧ-ପଦାର୍ଥ ବେଶୀ ଥାଏ । ଏଣୁ ଖାଦ୍ୟ ତାଲିକାର ପରିବର୍ତ୍ତନ ଓ ପରିବର୍ଜନ ମେଦ କମାଇବାର ଅନ୍ୟତମ ଉପାୟ । ଆମ୍ଭମାନଙ୍କର ଶାରୀରିକ ପରିଶ୍ରମ ଅନୁସାରେ ଖାଦ୍ୟ ଗ୍ରହଣ କରିବା ଉଚିତ । ଯେଉଁମାନଙ୍କର ମେଦ ଅଧିକ ସେମାନେ ସେ ଅନୁସାରେ କମ ଖାଇବା ଉଚିତ । ମେଦ ବୃଦ୍ଧି ନିରୋଧ କରିବାକୁ ହେଲେ ଏହାର ପ୍ରକୃତ କାରଣ ଅନୁସନ୍ଧାନ କରି ସେହି ଅନୁସାରେ ଖାଦ୍ୟ ଗ୍ରହଣ କଲେ ସୁଫଳ ମିଳେ ।

ଅନ୍ତଃସ୍ରାବୀ ଗ୍ରନ୍ଥି-ରସର ଗୋଳଯୋଗ ହେତୁ ମଧ୍ୟ ଶରୀରରେ ମେଦାଧିକ୍ୟ ଦେଖା ଦେଇଥାଏ । ସେହି ଅନ୍ତଃସ୍ରାବୀ ଗ୍ରନ୍ଥି ଗୁଡ଼ିକ ମଧ୍ୟରେ ଥାଇରଏଡ଼ୁ ( Thyroid ), ପିଟୁଇଟାରି (Pituitary) ଓଭାରି ( Ovary ) ଓ ସୁପ୍ରାରେନାଲ ( Suprarenal ) ଗ୍ରନ୍ଥି ଗୁଡ଼ିକର କାର୍ଯ୍ୟ-କାରିତା ଆଘାତ ପାଇଲେ ଏହି ରୋଗ ହୁଏ । ଏସବୁ କ୍ଷେତ୍ରରେ ଖାଦ୍ୟ ତାଲିକାର ପରିବର୍ତ୍ତନ ବା ସାଧାରଣ ଔଷଧ ଗ୍ରହଣ କଲେ କିଛି ଫଳ ମିଳେ ନାହିଁ । ହୁଏତ ଅଭିଜ୍ଞ ଚିକିତ୍ସକର ଚିକିତ୍ସା ଅଥବା ଯୋଗ ବ୍ୟାୟାମ ଅଭ୍ୟାସ ଦ୍ୱାରା ଆଶାତୀତ ଫଳ ମିଳିଯାଏ ।

—*—

## କୋଷ୍ଠବଦ୍ଧତାରେ ସୌନ୍ଦର୍ଯ୍ୟ ହାନି

କୋଷ୍ଠବଦ୍ଧତା ନାରୀ-ସୌନ୍ଦର୍ଯ୍ୟର ପ୍ରଧାନ ଶତ୍ରୁ । ସାଧାରଣତଃ ଖାଦ୍ୟ ତାଲିକା ନିର୍ବାଚନରେ ଭୁଲ ବା ଅସାମଞ୍ଜସ୍ୟତା ବ୍ୟାୟାମର ଅଭାବ, ପରିମିତ ଜଳପାନ ନ କରିବା, ଓ ଅପରିମିତ



ଭାବରେ ଥିବା ସକାଶେ କୋଷ୍ଠବଦ୍ଧତା ଶରୀରରେ ଅଶ୍ରୟ ନିଏ । ଆଧୁନିକ ଚିକିତ୍ସକଗଣ ଏହାର ଦୂରୀକରଣ ପାଇଁ ଔଷଧ ଗ୍ରହଣକୁ ପସନ୍ଦ କରନ୍ତି ନାହିଁ । ସେମାନଙ୍କର ମତ ଯେ ପ୍ରକୃତି ଦତ୍ତ ଖାଦ୍ୟର ବ୍ୟବହାର ଦ୍ୱାରା ଏହି ରୋଗକୁ ଦୂର କରାଯାଇ ପାରେ ।

ନିୟମିତ ଖାଦ୍ୟ କୋଷ୍ଠବଦ୍ଧତା ଦୂର କରିବାରେ ଖୁବ କାର୍ଯ୍ୟକାରୀ । ନିୟମିତ ଖାଦ୍ୟରେ 'ସେଲୁଲୋଜ' ନାମକ ଏକ ପଦାର୍ଥ ଅଛି । ଯାହାକି ମଳ-ନିଃସରଣ ପକ୍ଷରେ ଖୁବ ହିତକାରୀ । ବନ୍ଧାକୋବି, ଶାଲଗମ, ଗାଜର, ମୂଳା, ଲେମ୍ବୁ, ବୀଟ, ସିମ୍ବ, ଟମାଟୋ, ପିଆଜ, ଅମୃତଭଣ୍ଡା, କଦଳୀମଞ୍ଜା ଓ ଫ୍ଲକ୍ସ ଇତ୍ୟାଦି ମଳ-ନିଃସାରଣ କାର୍ଯ୍ୟ କରିବାରେ ଖୁବ ସହାୟକ । ଅଙ୍ଗୁର, ସେଓ, ବେଦନା, କମଳାଦି ଫଳ ମଧ୍ୟ ଏ ବିଷୟରେ ଖୁବ ହିତକାରୀ । ସୌନ୍ଦର୍ଯ୍ୟ-କାମୀ ମାନେ ଏହିସବୁ ଖାଦ୍ୟ ଖାଇବା ଉଚିତ । ଏଥି ସହିତ ପ୍ରୟୋଜନ ଅଳ୍ପ ବ୍ୟାୟାମ ଓ ମୁକ୍ତବାୟୁ ସେବନ । କିନ୍ତୁ ଆଉ ଗୋଟିଏ କଥା ଏଠାରେ ଭୁଲିଲେ ଚଳିବ ନାହିଁ ଯେ, ପ୍ରୟୋଜନାନୁସାରେ ଜଳ ପାନ କରିବ । ଆମମାନଙ୍କ ଜୀବନରେ ଜଳ ଅପରିହାର୍ଯ୍ୟ । ଶରୀରର ଦୂଷିତ ପଦାର୍ଥ ଗୁଡିକ ମଳ, ମୂତ୍ର ଓ ଘର୍ମ ରୂପେ ବାହାର କରି ଦେବାରେ ଜଳ ଖୁବ ସାହାଯ୍ୟ କରେ । ଏଣୁ ଅନେକ ଲୋକ ଖୁବ ସକାଳୁ ସୂର୍ଯ୍ୟୋଦୟ ପୂର୍ବରୁ ବାସୀଜଳ ପାନକରନ୍ତି । ଏହା କୋଷ୍ଠ ପରିଷ୍କାର ପକ୍ଷରେ ବଡ଼ ହିତକାରୀ ।



## କିଶୋରୀମାନଙ୍କର କୁ ଅଭ୍ୟାସ

ଭବିଷ୍ୟତ ଜୀବନରେ ଅନେକ ପ୍ରକାର ଅସୁବିଧା ହେତୁ ପ୍ରଧାନତଃ ଓ ମୂଳତଃ କୈଶୋରର କୁଅଭ୍ୟାସ ଗୁଡିକ ଦାୟୀ ।





କୈଶୋରରେ ପରିପୂର୍ଣ୍ଣତାର କାର୍ଯ୍ୟ ଗୃହଣଥିବାରେ ଇଚ୍ଛା, ଆବେଗ ଆଗ୍ରହ, ପ୍ରେମ, କିଶୋରର ସହଜ ପ୍ରକୃତି ହୁଏ । ସେ ସମୟରେ ତା'ର ମନର ସଂକୀର୍ଣ୍ଣତା ଖୁବ୍ କମ୍ ଥାଏ ଓ ଜିଜ୍ଞାସୁ ଥାଏବେଶୀ। ସେ, ସେ ସମୟରେ ଯାହା ଦେଖେ ତାହା ସହଜରେ ଅନୁକରଣ କରି ନିଏ । ମୁଖ୍ୟତଃ କିଶୋରର କୁଅଭ୍ୟାସ ବଢ଼ିବା ପାଇଁ ତା'ର ବାପ, ମା, ଦାଦ, ଖୁଡ଼ୀଆଦି ଆତ୍ମୀୟ ସ୍ୱଜନମାନେ ଦାୟୀ । ସେମାନେ ଯେଉଁପରି ବ୍ୟବହାର ଓ ହାବଭାବ ଦେଖାଇବେ କିଶୋରର ହୃଦୟ ମୁକୁରରେ ଠିକ ସେହି ପ୍ରତିବିମ୍ବ ପ୍ରତିଫଳିତ ହେବ । ସେଥି ଯୋଗୁଁ କିଶୋର ସମ୍ମୁଖରେ ବ୍ୟବହାର ଓ ହାବଭାବରେ ସଂଯତ ହେବା ଉଚିତ । ସେ ସମୟରେ କିଶୋରକୁ କୁପଥରୁ ସୁପଥକୁ ନେବା ଅତି ସହଜ । ଉପଯୁକ୍ତ ଭାବରେ ସେମାନଙ୍କୁ ଗଢ଼ିଲେ ସେମାନଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହୋଇ ପିତୃକୁଳ ଓ ମାତୃକୁଳ, ଉଭୟ କୁଳର ସମ୍ମାନ ବଢ଼ାଇଥାନ୍ତି ।

କୈଶୋର କାଳ ବାଲ୍ୟ ଓ ଯୌବନର ସନ୍ଧିସ୍ଥଳ । ଏସମୟରେ କିଶୋରମାନେ ଖୁବ ଭାବପ୍ରବଣ ଓ ଆବେଗମୟୀ ହୋଇଥାନ୍ତି । ସେମାନେ ସାମାନ୍ୟ ଟିକେ ଗୁରୁବାକ୍ୟ ଦ୍ୱାରା ତରଳିଯାନ୍ତି । ଏଣୁ ସେମାନଙ୍କୁ ସେମାନଙ୍କର ଆତ୍ମୀୟ ସ୍ୱଜନଙ୍କ ବ୍ୟତୀତ ଅନ୍ୟମାନଙ୍କ ସହ ମିଶିବାକୁ ଦେବା ଉଚିତ ନୁହେଁ ।

ମାଦକଦ୍ରବ୍ୟ କିଶୋରମାନଙ୍କ ପକ୍ଷରେ ବିଶେଷ ଅନିଷ୍ଟକର । ପାନ ଖାଇବା, ଚୂର୍ଣ୍ଣପାନ ଟାଣିବା, ଗୁଡାଖୁ ଘଷିବା, ଏପରିକି ବିଡ଼ି ସିଗାରେଟ ଖାଇବା ମଧ୍ୟ ସେମାନେ ନିଜର ଅଭିଭାବକମାନଙ୍କଠାରୁ ଶିଖିଯାନ୍ତି । ଆଜିର ଗୋଟିଏ ଅତ୍ୟନ୍ତ ଲଜ୍ଜାକର ଅଭ୍ୟାସ ଅଧୁନିକା ମାନଙ୍କ ମଧ୍ୟରେ ଦେଖିବାକୁ ମିଳେ । ତାହା ହେଉଛି ମଦ୍ୟପାନ ।



ଅଜକାଲି ଅନେକ ଅଧୁନିକ ଅଭିଜାତ ସମାଜ ପାଶ୍ଚାତ୍ୟ ଅଦବ କାଇଦାରେ ନିଜକୁ ଅଭ୍ୟସ୍ତ କରିବାକୁ ଯାଇ ବୁଢ଼ା ବୁଢ଼ୀ, ପ୍ରୌଢ଼ ପ୍ରୌଢ଼ା, ତରୁଣ, ତରୁଣୀ ଏପରିକି ବାଳକ ବାଳିକା ମଧ୍ୟ ଏହି ମଦ୍ୟପାନରେ ଅଭ୍ୟସ୍ତ ହୁଅନ୍ତି । କିନ୍ତୁ ମଦ୍ୟପାନ କିଶୋରୀମାନଙ୍କ ପକ୍ଷରେ ବଡ଼ ଅହିତକାରୀ । ତାହା ଯେ କେବଳ ତାଙ୍କର ସ୍ୱାସ୍ଥ୍ୟ ନଷ୍ଟକରେ ତାହା ନୁହେଁ । ଏଥିଯୋଗୁଁ ସେହି ଅନାଗତ ଭବିଷ୍ୟତ ସନ୍ତାନର ସ୍ୱାସ୍ଥ୍ୟ ମଧ୍ୟ କ୍ଷତିଗ୍ରସ୍ତ ହୁଏ । ଆମ ଦେଶର ମଦ୍ୟପ-ନାରୀ କଦାପି ସୁସନ୍ତାନ ପ୍ରସବ କରିପାରେ ନାହିଁ ।

ଆମ ଓଡ଼ିଶାରେ ଝିଅମାନେ ମା ଖୁଡ଼ୀଙ୍କଠାରୁ ପାନଖାଇବା ଗୁଡ଼ାକୁ ଘଷିବା ଅଭ୍ୟାସ ଶିଖନ୍ତି । ଏହାଦ୍ୱାରା ସେମାନଙ୍କ ଦାନ୍ତରେ ବୋଳ ବସି ଦାନ୍ତର ସୌନ୍ଦର୍ଯ୍ୟ ନଷ୍ଟକରେ । ଗୁଡ଼ାଖୁ ଦ୍ୱାରା ଦାନ୍ତମୂଳ ଖାଇଯାଏ । ଏଣୁ ମା'ମାନେ ଯେପରି ଏ କୁଅଭ୍ୟାସ ସନ୍ତାନମାନଙ୍କୁ ନ ଶିଖାନ୍ତି ।



## ନିଖୁଣ-ଦେହ-ଭଙ୍ଗିମା

ନିଖୁଣ-ଦେହ ଭଙ୍ଗିମା ଅନେକାଂଶରେ ଦେହ ସୌନ୍ଦର୍ଯ୍ୟର ଏକ ପ୍ରଧାନ ଅଙ୍ଗ । ଏଣୁ କୈଶୋରାବସ୍ଥାରେ ଦେହଭଙ୍ଗିମାର ସଂସ୍କାର ଓ ଅଭିଜ୍ଞଙ୍କ ଅନୁସାରେ ବର୍ଜନ କରିବା ବିଧେୟ । ଚାଲି-ବାରେ, ଦୌଡ଼ିବାରେ, ଠିଆହେବାରେ, କଥା କହିବାରେ, ବସିବା ଉଠିବାରେ, ଏ ସବୁଥିରେ କିଶୋରୀମାନେ ବିଶେଷ ସତର୍କ ହେବା ଉଚିତ । ସେତେବେଳେ ସେମାନେ ଯେଉଁ ଭଙ୍ଗିମାକୁ ଅନୁସରଣ କରିବେ, ପରିଣତ ବୟସରେ ତାହା ତାଙ୍କର ଅସ୍ଥିମଜ୍ଜାଗତ ହୋଇ ଯିବ । ଯଦି ସେହି ଭଙ୍ଗିମା ବିକୃତ ଓ ଦୋଷଯୁକ୍ତ ହୋଇଥାଏ,





ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗର ସହସ୍ରେ ସୌଷ୍ଠବଥାଇଲେମଧ୍ୟ ସେମାନେ ଅଙ୍ଗ ସୌନ୍ଦର୍ଯ୍ୟର ଅଧିକାରିଣୀ ହୋଇ ପାରନ୍ତି ନାହିଁ ।

ଏସବୁ ଦେଖି ମାତାପିତା ଅଭିଭାବକମାନେ ବିକୃତ ଭଙ୍ଗୀମାକୁ ସୁଧାରିବା ପାଇଁ କନ୍ୟା ଉପରେ ଅନବରତ ବିରକ୍ତ ହୋଇ ଗାଲିଗୁଲଜ କରନ୍ତି । ଫଳ ସ୍ୱରୂପ କିଶୋରୀର ଭଙ୍ଗୀମା ଭଲଆଡ଼କୁ ନ ଯାଇ ଅଧିକ ବିକୃତିର କାରଣ ହୋଇଥାଏ । କିନ୍ତୁ ଅଭିଭାବକ-ମାନଙ୍କର ଉଚିତ ଯେ ସେମାନେ ସେମାନଙ୍କର କିଶୋରୀକନ୍ୟାଙ୍କୁ ବୁଝାଇଦେବେ, ଦୁଷ୍ଟ ଭଙ୍ଗୀମା ଦ୍ୱାରା ଶେଷରେ କି କୁଫଳ ମିଳେ । ଏପରି ବସିବା, ଚାଲି ଚଳନଦ୍ୱାରା କିଶୋରୀ ତା'ର ନିଜର କି କ୍ଷତି କରୁଅଛି ତାହା ବୁଝି ପାରିଲେ ସେ ସେଥିରୁ ବିରତ ହେବାର ସମ୍ଭାବନା ଥାଏ ।

## ସୌନ୍ଦର୍ଯ୍ୟ ସାଧନାର ଖାଦ୍ୟ ନିର୍ବାଚନ

ଅନେକ ସମୟରେ ଦେଖିବାକୁ ମିଳେ ଯେ ଖାଦ୍ୟ ତାଲିକା ନିର୍ବାଚନ ଦୋଷରୁ ଦେହର ସୌନ୍ଦର୍ଯ୍ୟର କ୍ଷତି ଘଟେ । ଖଣିଜ ଲବଣ ଚୂନଯୁକ୍ତ କ୍ୟାଲ୍ସିଅମ (calcium) ଲୌହ ଯୁକ୍ତ (iron), ଫସ୍‌ଫରସ ଯୁକ୍ତ (Phosphorous), ଖାଦ୍ୟ ପ୍ରାଣଯୁକ୍ତ ଖାଦ୍ୟ (Vitamin) ଓ ଆମିଷ (Protein), ଏଗୁଡ଼ିକ କମ୍ ଖାଇବା ଯୋଗୁ ଦେହ ସୌନ୍ଦର୍ଯ୍ୟ ନଷ୍ଟହୁଏ । ଦେହର (Body-Formation) ସୌନ୍ଦର୍ଯ୍ୟ ନିର୍ଭର କରେ ଦେହରେଖା ଓ ମେରୁଦଣ୍ଡର ସ୍ୱାସ୍ଥ୍ୟ ଉପରେ । ପୁଣି ଏହି ଦେହରେଖାର ଗଠନ ନିର୍ଭର କରେ ମାଂସପେଶୀର ଗଠନ ଉପରେ । ମାଂସପେଶୀର ବୃଦ୍ଧି ଓ ଗଠନ ଉପରେ ଖାଦ୍ୟର ପ୍ରଭାବ ବହୁତ୍ ବେଶୀ । ସେଥି ପାଇଁ କିଶୋରୀର ଖାଦ୍ୟରେ ଏହି ଜିନିଷଗୁଡିକର ଯେପରି ଅଭାବ ନ



ରୁହେ ସେଥିପ୍ରତି ଲକ୍ଷ୍ୟ ରଖିବା ପ୍ରୟୋଜନ । ଆମିଷ ଜାତୀୟ ପଦାର୍ଥ ଖାଇବା ଦ୍ୱାରା ପେଶୀ-କୋଷ ଗୁଡ଼ିକ ସେଥିରୁ ଶକ୍ତି ସଂଗ୍ରହ କରନ୍ତି । ଏହି ପେଶୀ ଗୁଡ଼ିକର ବୃଦ୍ଧି ମଧ୍ୟ ଆମିଷ ପଦାର୍ଥ ଉପରେ ନିର୍ଭର କରେ ।

ଖାଦ୍ୟ ବ୍ୟତୀତ କିଶୋରୀର ବ୍ୟାୟାମ ଅଭ୍ୟାସ କରିବା ଦରକାର, ଯାହା ଦ୍ୱାରା କି ଶରୀର ନିରୋଗ ହୋଇ ସୌନ୍ଦର୍ଯ୍ୟ ସ୍ଥାୟୀ ହୁଏ ।

ଭଲଖାଦ୍ୟ ଓ ବ୍ୟାୟାମ ଦ୍ୱାରା ମେରୁଦଣ୍ଡ ସିଧା ଓ ସବଳ ହୁଏ । ଯାହାର ମେରୁଦଣ୍ଡ କୁବ୍‌ଜଭାବ ଧାରଣ କରେ, ତାର ଅଭ୍ୟନ୍ତରୀଣ ଯନ୍ତ୍ରାଦିର ସ୍ଥାନଚ୍ୟୁତି ଘଟେ । ଏହାଦ୍ୱାରା ସୌନ୍ଦର୍ଯ୍ୟର ବହୁତ କ୍ଷତି ଘଟେ । ଏଣୁ ମେରୁଦଣ୍ଡକୁ ନିରୋଗ ଓ ସିଧା ରଖିବାର ବ୍ୟାୟାମ ମଧ୍ୟ ପ୍ରଚଳିତ ଅଛି ।

---

## କିଶୋରୀର ବକ୍ଷ ଓ ନିତମ୍ବ ସୌନ୍ଦର୍ଯ୍ୟ

ଦେହରେଖାର ସୌନ୍ଦର୍ଯ୍ୟ ବଜାୟ ରଖିବାକୁ ହେଲେ ଅଙ୍ଗର ୨ଟି ସ୍ଥାନର ପେଶୀ-ସ୍ୱାସ୍ଥ୍ୟ ପ୍ରତି ନଜର ରଖିବାକୁ ହେବ । ଗୋଟିଏ ବକ୍ଷଦେଶ ଓ ଅନ୍ୟଟି ନିତମ୍ବ ଦେଶ । ଏହି ବକ୍ଷସୌନ୍ଦର୍ଯ୍ୟ ଓ ନିତମ୍ବଦେଶର ପୁଷ୍ଟିଗଠନ ଉପରେ କିଶୋରୀର ଦେହ ସୌନ୍ଦର୍ଯ୍ୟ ଅନେକ ନିର୍ଭର କରେ । ବକ୍ଷ ସୌନ୍ଦର୍ଯ୍ୟ ଅତୁଟ ରଖିବା ନିମିତ୍ତ ସହରୀ କିଶୋରୀମାନେ ବ୍ରେଷ୍ଟହାଇଟ୍ ବା ଟାଇଟ ବନ୍ଧନୀ ବ୍ୟବହାର କରନ୍ତି । କିନ୍ତୁ ଏହା ବ୍ୟବହାର କରିବା ଉଚିତ ନୁହେଁ । ବ୍ୟାୟାମ ଦ୍ୱାରା ବକ୍ଷର ମାଂସପେଶୀ ସୁଦୃଢ଼ ହୋଇ ଶୋଭା ବର୍ଦ୍ଧନ କରେ । ତାହା ଅଳ୍ପବୟସରେ ଅଙ୍ଗ ନମିତ ହୋଇପଡ଼େ ନାହିଁ । ବକ୍ଷ

ଶୋଭା ବଢ଼ାଇବାର ଉପାୟ ଆମମାନଙ୍କ ମଫସଲରେ ଗୃହ କର୍ମରେ ନିହିତ ଅଛି । କିଶୋରୀମାନଙ୍କର ମସଲା ବାଟିବା, କୂଅରୁ ପାଣି କାଢ଼ିବା ବାସନ ମାଜିବା ପ୍ରଭୃତି କାର୍ଯ୍ୟ କଲେ ବକ୍ଷର ମାଂସପେଶୀ ସଂଗଠିତ ହୋଇ ତାହା ସୁଦୃଢ଼ ହୋଇଥାଏ ।

ଏହି ସବୁ ଶୀର୍ଷଲିଖିତ ଆଲୋଚନାରୁ ବୁଝାଗଲା ଯେ ଆଳସ୍ୟ ଅକର୍ମଣ୍ୟତା, ସ୍ୱାର୍ଥପରତା, ଅପ୍ରୟୋଜନୀୟ ଖାଦ୍ୟ ଗ୍ରହଣ ଓ କୁଅଭ୍ୟାସର ବଶବର୍ତ୍ତୀ ହେବା କିଶୋରୀର ସୌନ୍ଦର୍ଯ୍ୟ ଓ ସ୍ୱାସ୍ଥ୍ୟ ରକ୍ଷାର ଅନ୍ତରାୟ ।

କିଶୋରୀର ଭବିଷ୍ୟତ ଦାମ୍ପତ୍ୟଜୀବନ ସୁଖମୟ କରିବା ନିମିତ୍ତ ତିନିଗୋଟି ଜିନିଷର ପ୍ରୟୋଜନ—ଖାଦ୍ୟ ନିର୍ବାଚନ, ନିୟମିତ ବ୍ୟାୟାମ ଅଭ୍ୟାସ ଓ ଚରିତ୍ର ଗଠନ ।



## ଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିବାର ବ୍ୟାୟାମ

ବ୍ୟାୟାମ ସମୟରେ ଅନ୍ୟ ରକମ ପୋଷାକର ପ୍ରୟୋଜନ । ତାହା ୧ ନମ୍ବର ଚିତ୍ରରେ ଦେଖ । ଏ ସବୁ ପୋଷାକ ସିଲାଇ କାର୍ଯ୍ୟ ଶିଖିଥିଲେ ନିଜ ହାତରେ କରି ନିଆଯାଇ ପାରେ ।

ପ୍ରଥମେ ୧ (କ) ନମ୍ବର ଚିତ୍ର ଅନୁସାରେ ସିଧା ଠିଆ ହୋଇ ଦୁଇ ହାତକୁ କାନ୍ଧ ସିଧାରେ ମେଲାଇ ଧର । ତତ୍ପରେ ୨ (ଖ) ନମ୍ବର ଚିତ୍ର ଅନୁସାରେ ଦୁଇ ହାତକୁ ଘୂମାଇଁ ମୁଣ୍ଡ ଉପରକୁ ଉଠାଇ ଦିଅ । ପୁଣି ଏହା ସହିତ ଦୁଇ ଗୋଇଠି ଉଠାଇ କେବଳ ଗୋଡ଼ର ପଞ୍ଝା ଉପରେ ଠିଆ ହୁଅ । ଏବେ ୨ (ଗ) ନମ୍ବର ଚିତ୍ର ଅନୁସାରେ ଧୀରେ ଧୀରେ ସମ୍ମୁଖ ଭାଗକୁ ନଇଁପଡ଼ି ଦୁଇ ହାତରେ ଦୁଇ ପଞ୍ଝାକୁ ସ୍ପର୍ଶ କର । ଏପରି କ୍ରିୟା ଖୁବ କ୍ରମରେ ପାଞ୍ଚଥର କରିବା ଦରକାର ।



ଗୋଡ଼ ପଞ୍ଚାର ଉଲଟପରେ ଠିଆହେବା ସମୟରେ ଧୀରେ ଧୀରେ ନିଶ୍ୱାସ ଟାଣି ନେଇ ନିମ୍ନକୁ ଝୁଙ୍କିବା ସମୟରେ ଛାଡ଼ି ଦେଇନେବ । ପୁଣି ଯେତେବେଳେ ଧୀରେ ଧୀରେ ଉଠିବ ସେତେବେଳେ ଅସ୍ତେ ଅସ୍ତେ ଶ୍ୱାସ ପରିତ୍ୟାଗ କରିବ ।

ଅନ୍ୟ ପ୍ରକାରରେ—ଚେଷ୍ଟା ଏକ୍ସରସାଇଜ୍ କରିବାକୁ ଏକ ପ୍ରକାର ରବରର ରଙ୍ଗ ବା ଲୁହାର ସ୍ପ୍ରିଙ୍ଗ ବଜାରରେ ମିଳେ । ଏହାକୁ ଧରି ୩ ( କ,ଖ ) ନମ୍ବର ଚିତ୍ର ଅନୁସାରେ ଆଗକୁ ପଛକୁ ଟାଣିବ । ଏପରି ପାଞ୍ଚବାର କରିବା ପ୍ରୟୋଜନ । ଏହାକୁ କରିବା ସମୟରେ ଶ୍ୱାସକୁ ଯଥା ସମ୍ଭବ ଧୀରେ ଧୀରେ ଗ୍ରହଣ କରିବା ଓ ଛାଡ଼ିବା ଦରକାର ।

ପୁଣି ୪(କ,ଖ) ନମ୍ବର ଚିତ୍ର ଦେଖ । ଦୌଡ଼ିବା ସମୟରେ ଲୋକ ଯେପରି ପଞ୍ଚା ଉପରେ ଭର ଦେଇ ଦୌଡ଼େ ଏବଂ ଦୁଇ ହାତକୁ ବଙ୍କାଇ ସାମ୍ନାକୁ ରଖେ ସେହିପରି କରି ଆଗକୁ ଜୋରରେ ଗୁଳିପିବ, ପୁଣି ପଛକୁ ହଟି ଆସି ଯଥା ସ୍ଥାନରେ ରହି ଯାଉଥିବ । ଏହି ବ୍ୟାୟାମ ଅନ୍ତତଃ ଦୁଇ ମିନିଟ୍ ଅବଶ୍ୟ କର୍ତ୍ତବ୍ୟ ।

ପାଞ୍ଚ ଛଅ ମିନିଟରେ ଏହି ବ୍ୟାୟାମସବୁ ସମାପ୍ତ ହୋଇଯାଏ । ୧ ନମ୍ବର ବ୍ୟାୟାମ ଦ୍ୱାରା ଶରୀରର ସମସ୍ତ ଶିରାରେ ରକ୍ତ ତୀବ୍ର ଭାବରେ ଚଳ ପ୍ରଚଳ ହୁଏ । ୩ନମ୍ବର ବ୍ୟାୟାମ ଦ୍ୱାରା ତୁମ୍ଭର ହାତ ଓ ଛାତିର ଦୃଢ଼ତା ଆସିଯାଏ । ଏହାଦ୍ୱାରା ସମୟ ପଡ଼ିଲେ ଲାଠି ବା ତରବାରୀ ଗୁଳନା ଅନେକ ସମୟ କରିବାକୁ ସକ୍ଷମ ହେବ । ଦୁର୍ବୃତ୍ତମାନଙ୍କ କବଳରୁ ନିଜର ସମ୍ମାନ ରକ୍ଷା କରିବା ପାଇଁ ନାରୀକୁ ଏପରି ସମୟ ମଧ୍ୟ ପଡ଼ିବା ଅସମ୍ଭବ ନୁହେଁ ।





ନେମ୍ନର ବ୍ୟାୟାମ ଦ୍ୱାରା ଗୋଡ଼ର ମାଂସପେଶୀ ସବୁ ସୁସ୍ଥ-ସବଳ ହୁଅନ୍ତି । ଏହା ଦ୍ୱାରା କିଛିଦୂର ଦୌଡ଼ି ଯିବାର ଯଦି ଆବଶ୍ୟକ ପଡ଼େ ତାହା ତୁମ୍ଭେ ସହଜରେ କରିପାରିବ ।

ନିଜ ଘର ପାଖରେ ନଦୀ ବା ପୁଷ୍କରିଣୀ ଥିଲେ କିଶୋରୀମାନେ ସେଠାରେ ପ୍ରତିଦିନ ସ୍ନାନ କରିବା ଉଚିତ । ସ୍ନାନ ସମୟରେ କିଛି ସମୟ ସନ୍ତରଣ କଲେ ଶରୀରର ସମସ୍ତ ପ୍ରକାର ଅଙ୍ଗ ପ୍ରତ୍ୟଙ୍ଗର ବ୍ୟାୟାମ ହୋଇଥାଏ । ସନ୍ତରଣ ଶିଖିଥିଲେ ବିପଦରେ ପଡ଼ି କୌଣସି ନଦୀ ନାଳ ପାର ହୋଇ ଯିବାକୁ କିଛି କଷ୍ଟକର ହୁଏ ନାହିଁ ।

କିନ୍ତୁ କିଶୋରୀ କନ୍ୟାଙ୍କ ସନ୍ତରଣ ଦେଖି ଅନେକ ଅଭିଭାବକ ନାକ ଟେକିଥାନ୍ତି ଏବଂ ତାଙ୍କୁ ଗଞ୍ଜଣା ମଧ୍ୟ ଦେଇଥାନ୍ତି । ମାତ୍ର ସେମାନଙ୍କର ମନେ ରଖିବା ଉଚିତ ଯେ କନ୍ୟାମାନେ ସାମାନ୍ୟ ସନ୍ତରଣ ଶିଖିବାର ଦୋଷ ନାହିଁ, ବରଂ ତାଦ୍ୱାରା ଶରୀର ହୃଷ୍ଟପୁଷ୍ଟ ହୁଏ ଏବଂ ସମୟେ କେତେଲେ ଜୀବନ ରକ୍ଷା ହୋଇ ପାରେ । କିନ୍ତୁ ସନ୍ତରଣ ଶିକ୍ଷା କରିବା ବୋଲି ଯେ ନିତାନ୍ତ ନିର୍ଲଜ ଭାବ ପୋଷଣ କରିବା ନିତାନ୍ତ ଗର୍ହିତ କାର୍ଯ୍ୟ ।

## ପେଟର ଅନାବଶ୍ୟକ ମେଦ ହ୍ରାସର ବ୍ୟାୟାମ

୫ ନମ୍ବର ଚିତ୍ର ଦେଖ । ସିଧା ହୋଇ ଠିଆ ହୋଇ, ମୁଣ୍ଡ ଉପରକୁ ଦୁଇହାତ ଉଠାଇ, ନିଶ୍ୱାସକୁ ଧୀରେ ଧୀରେ ଛାଡ଼ି ସାମନାକୁ ନଇଁ ପଡ଼ ଏବଂ ଦୁଇ ପାଦ ସିଧା ରଖି ଦୁଇହାତରେ ଭୂମିକୁ ସ୍ପର୍ଶ କର । ପ୍ରତିଦିନ ପ୍ରାତଃକୃତ୍ୟ ପରେ ଏହି ବ୍ୟାୟାମ ଅନ୍ତତଃ କୋଡ଼ିଏ ଥର କରିବ । ଏହା ଦ୍ୱାରା ପେଟର ଅନାବଶ୍ୟକ ଚର୍ବି ବୃଦ୍ଧି କମିଯାଏ ।



## କୋଷ୍ଠବଦ୍ଧତା ଦୂର କରିବାର ବ୍ୟାୟାମ

ମାଟିରେ ତଳମୁହାଁ ହୋଇ ହାତ ଦୁଇଟି ଛାତିର ଦୁଇ ପାଖରେ ରଖି ଅଣ୍ଟାଠାରୁ ଶରୀରର ଉର୍ଦ୍ଧ୍ୱାଂଶକୁ ଉଠାପକା କରିବାକୁ ହେବ । ୬ ନମ୍ବର ଚିତ୍ର ଦେଖ । ଏ ବ୍ୟାୟାମ ଅଭ୍ୟାସ କଲେ କୋଷ୍ଠବଦ୍ଧତା ଦୂର ହୁଏ ଏବଂ ମେରୁଦଣ୍ଡ ବକ୍ଷ ଓ ପିଠିର ମାଂସ-ପେଶୀ ସୁଦୃଢ଼ ହୁଏ । ଏହାଦ୍ୱାରା ମଧ୍ୟ ବକ୍ଷଶୋଭା ବର୍ଦ୍ଧିତ ହୁଏ ।

## ମେରୁଦଣ୍ଡ ଦୃଢ଼ କରିବାର ବ୍ୟାୟାମ

ଦୁଇପାଦ ଫାଙ୍କ କରି ଦୁଇହାତ ଦୁଇପାଖକୁ ମେଲାଇ ଧରି ଠିଆହୁଅ ଓ ଧୀରେ ଧୀରେ ଅଣ୍ଟାରୁ ତଳଆଡ଼କୁ ନଇଁପଡ଼ । ତତ୍ପରେ ବାମ ହାତ ଦ୍ୱାରା ଡାହାଣପାଦର ବୃଦ୍ଧାଙ୍ଗୁଳି ଓ ଡାହାଣ ହାତ ଦ୍ୱାରା ବାମ ପାଦର ବୃଦ୍ଧାଙ୍ଗୁଳି ସ୍ପର୍ଶ କର । ଏହିପରି ପ୍ରତିଦିନ ୨୦।୨୫ ଥର କରିବ । ଏହା ଦ୍ୱାରା ମେରୁଦଣ୍ଡର ଚାଳନା ହୋଇଥାଏ । ୭ ନମ୍ବର ଚିତ୍ର ଦେଖ ।

## ଦେହରେଖା ସୌନ୍ଦର୍ଯ୍ୟ-ସହାୟକ ବ୍ୟାୟାମ

ସିଧା ହୋଇ ଠିଆ ହୋଇ ମୁଣ୍ଡ ଉପରକୁ ଦୁଇ ହାତ ଉଠାଅ । ଶ୍ୱାସଗ୍ରହଣ କରି କରି ପଛ ଆଡ଼କୁ ଶରୀରଟି ଧୀରେ ଧୀରେ ଯେତେଦୂର ପାରିପାରେ ବଙ୍କେଇବାକୁ ହେବ । ୮ ନମ୍ବର ଚିତ୍ର ଦେଖ ।







# ଦଶମ ଅଧିକରଣ

## ଯୌନ ବ୍ୟାପାରରେ ଅପରାଧତତ୍ତ୍ୱ

ଦେଶରେ ନାନା ପ୍ରକାର ବ୍ୟଭିଚାର ଓ ଅନାଚାର ଯୁଗେ ଯୁଗେ ଚାଲିଛି ଓ ଚାଲିଥିବ ମଧ୍ୟ । କୌଣସି ଦେଶର ସରକାର ଆଇନ ବଳରେ ତାହା ନିରାକରଣ କରିପାରି ନାହାନ୍ତି ।

ଏହି ସବୁ ଅପରାଧ ପାଇଁ ବ୍ରିଟିଶ ସରକାର ଅମଳରୁ ଭାରତୀୟ ଫୌଜଦାରୀ ଦଣ୍ଡବିଧି ଆଇନ୍ ( Indian Penal code ) ରେ କେତେକ ଧାରାର ପ୍ରଚଳନ ଅଛି । ସେସବୁ ବିଷୟରେ ସାମାନ୍ୟ କେତେକ ଆଇନର ଧାରା ସମ୍ବନ୍ଧରେ ନିମ୍ନରେ ଦିଆଗଲା ।

**ଗର୍ଭପାତ ଓ ଭ୍ରୂଣହତ୍ୟା** ( Abortion & miscarriage )

ଏହି ଦୁଇଟି ଶବ୍ଦ ମଧ୍ୟରେ ଅର୍ଥର କିଛି ପାର୍ଥକ୍ୟ ନାହିଁ । ଇଣ୍ଡିୟାନ୍ ପେନାଲ କୋର୍ଡ଼ରେ criminal abortion ଓ miscarriage ଏକାର୍ଥ ବୋଧକ ବୋଲି ଗୃହୀତ ହୋଇଅଛି । ସାଧାରଣତଃ ଆମ୍ଭେମାନେ ଧାତ୍ରୀ ବିଦ୍ୟା ବିଷୟକ ପୁସ୍ତକରେ ଦେଖିବାକୁ ପାଉଁ, ସନ୍ତାନ ଜୀବିତାବସ୍ଥାରେ ପ୍ରସୂତ ହେବାର ଅର୍ଥାତ୍ ଅଷ୍ଟମମାସ କାଳ ଗର୍ଭଧାରଣ ପୂର୍ବରୁ ଦେହାଭ୍ୟନ୍ତରିକ କୌଣସି କାରଣରୁ ଗର୍ଭସ୍ରାବ ହେଲେ, ତାହାକୁ Abortion ବୋଲିଯାଏ । ଜୋର ପୂର୍ବକ ଅସ୍ୱାଭାବିକ ଉପାୟରେ କୌଣସି ଗର୍ଭପାତ କରାଇଲେ, ତାହା ଆଇନ୍ ଚକ୍ଷୁରେ ଗୁରୁତର ଅପରାଧ ।



ଭାରତୀୟ ଦଣ୍ଡବିଧି ଆଇନର ୩୧୨ ଧାରାରେ ବର୍ଣ୍ଣିତ ଅଛି ଯେ, କେହି ଇଚ୍ଛା ପୂର୍ବକ କୌଣସି ଗର୍ଭବତୀ ସ୍ତ୍ରୀଲୋକର ଗର୍ଭପାତ କରିଲେ, ସେ ଭ୍ରୂଣହତ୍ୟା ( Causing miscarriage ) ଅପରାଧରେ ଅପରାଧୀ ସାବ୍ୟସ୍ତ ହେବ । ତାହାକୁ ସାତବର୍ଷ ପର୍ଯ୍ୟନ୍ତ ଜେଲ୍ ଓ ତତ୍ସହ ଅର୍ଥଦଣ୍ଡ ମଧ୍ୟ ହୋଇ ପାରେ । ଅବଶ୍ୟ ଏହି ଧାରାରେ ସ୍ତ୍ରୀଲୋକ ଗର୍ଭପାତ କରିବାରେ ସମ୍ମତ ଥିଲା, ତାହାର ପ୍ରମାଣ ଥିବା ଆବଶ୍ୟକ । ଏହି ଧାରା ଅନୁସାରେ ଯେ ସ୍ତ୍ରୀଲୋକ ସ୍ୱେଚ୍ଛାରେ ଗର୍ଭପାତ କରାଏ, ତାହାର ମଧ୍ୟ ପୂର୍ବୋକ୍ତ ଅନୁସାରେ ଦଣ୍ଡବିଧାନର ବ୍ୟବସ୍ଥା ଅଛି ।

ଯଦି କୌଣସି ବ୍ୟକ୍ତି ଗର୍ଭବତୀ ରମଣୀର ଇଚ୍ଛାବିରୁଦ୍ଧରେ ବଳପୂର୍ବକ ଗର୍ଭପାତ ଘଟାଏ, ତାହା ହେଲେ ସେ ୩୧୩ ଧାରା ଅନୁସାରେ ବିଚାର ଅଦାଲତରେ ଅଭିଯୁକ୍ତ ହୋଇଥାଏ ଏବଂ ଦଶବର୍ଷ ପର୍ଯ୍ୟନ୍ତ ଜେଲ୍ ଓ ଅର୍ଥଦଣ୍ଡ କିମ୍ବା ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ହୋଇ ପାରେ ।

ଯଦି କୌଣସି ବ୍ୟକ୍ତି ଏପରି ଅବୈଧ ଗର୍ଭପାତ କରିବାକୁ ଯାଇ ଗର୍ଭିଣୀର ମୃତ୍ୟୁ ଘଟାଏ, ତାହା ହେଲେ ତାହାର ଦଶବର୍ଷ ପର୍ଯ୍ୟନ୍ତ କାରାଦଣ୍ଡ, ତତ୍ସହ ଅର୍ଥଦଣ୍ଡ ଅଥବା ଯାବଜ୍ଜୀବନ କାରାବାସ ହୁଏ ।

## ଗର୍ଭପାତ କେଉଁଠାରେ ବେଆଇନ୍ ନୁହେଁ

ଗର୍ଭସ୍ରାବ ବା ଗର୍ଭପାତ ତିନି ପ୍ରକାରରେ ଘଟିପାରେ । ଯଥା (୧)-ଆପଣା ଛାଏଁ ଗର୍ଭସ୍ରାବ ହେବା ( ସ୍ୱାଭାବିକ ଭାବରେ ବା ଦୈବକ୍ରମେ ) ( ୨ ) ବେଆଇନ୍ ଭାବରେ ଗର୍ଭପାତ କରାଇବା





( ଡେଇର କୁମାରୀ ବା ବଧବାର ) (ଙ)-ନ୍ୟାୟସଙ୍ଗତ ଗର୍ଭସ୍ରାବ ଘଟାଇବା ।

ଭାରତୀୟ ଦଣ୍ଡବିଧି ଅନୁସାରେ (I. P. Code, Sec 312) ନ୍ୟାୟ ସଙ୍ଗତ ଗର୍ଭସ୍ରାବକୁ Justifiable Abortion ବୋଲାଯାଏ । ଯେଉଁ ଯେଉଁ ଅବସ୍ଥାରେ ଉପଯୁକ୍ତ ଚିକିତ୍ସକ ସାହାଯ୍ୟରେ ବିବାହିତା ସ୍ତ୍ରୀ ଲୋକର ଗର୍ଭପାତ କରାଯାଇ ପାରେ ତାହା ନିମ୍ନରେ ପ୍ରଦତ୍ତ ହେଲା ।

(କ)—କୁଷିତଳ ( Pelvis ) ସ୍ୱଭାବତଃ ଅତିଶୟ ସଂକୀର୍ଣ୍ଣ ହେଲେ ବିଶେଷ ଭାବରେ ସମ୍ମୁଖ-ପଶ୍ଚାତର ବ୍ୟାସ ( Antero-posterior Diameter ) ଯଦି ସାଢ଼େ ତିନି ଇଞ୍ଚ ବା ତହିଁରୁ କମ୍ ହୁଏ ।

(ଖ)—ଜରାୟୁ ମୁଖରେ ଟିଉମର୍, କ୍ୟାନସର, ପଲିପସବା କୌଣସି ପ୍ରକାର ଗ୍ରୋଥ ଅର୍ଥାତ୍ ଅସ୍ୱାଭାବିକ ମାଂସବୃଦ୍ଧି ହୋଇ ଅଦୂର ଭବିଷ୍ୟତରେ ସନ୍ତାନ ପ୍ରସବରେ ବାଧା ଜନ୍ମିବାର କାରଣ ଘଟେ ।

(ଗ)—କିଛି ଦିନ ଧରି କ୍ରମ ଗତ ଦୁର୍ଦ୍ଦମନୀୟ ବମନ, ଖାଦ୍ୟଗ୍ରହଣ କରିବାରେ ଅକ୍ଷମତା, ଆକ୍ଷେପବା ଘେଠ ଖେଞ୍ଚି ହେବା(Convulsion) ହୃତପିଣ୍ଡ ବା ଫୁସଫୁସ କିମ୍ବା ଅନ୍ୟ କୌଣସି ଜଟିଳ ପ୍ରବଳ ବ୍ୟାଧିର ଉପସ୍ଥିତ ଏବଂ ଗର୍ଭ ବୃଦ୍ଧି ସହିତ ସେହି ବ୍ୟାଧିର ଉତ୍ତରୋତ୍ତର ବୃଦ୍ଧି ।

(ଘ)—"ପ୍ଲାସେଣ୍ଟା ପ୍ରିଭିୟା" ନାମକ ଏକ ପ୍ରକାର ଗର୍ଭାବସ୍ଥାର ରୋଗରେ କ୍ରମାଗତ ରକ୍ତସ୍ରାବ ହେଉଥାଏ । ଏ ବ୍ୟାଧି ସାଧାରଣତଃ ଗର୍ଭର ପଞ୍ଚମ ବା ଷଷ୍ଠ ମାସରେ ଦେଖାଦିଏ । ପ୍ଲାସେଣ୍ଟା ଅର୍ଥ ଫୁଲ୍ । ଏହି ଫୁଲ୍ ଗର୍ଭର ଚତୁର୍ଥ ମାସ ଠାରୁ ସ୍ପଷ୍ଟ ଭାବରେ



ଗଠିତ ହୋଇଥାଏ । ସାଧାରଣତଃ ଏହି ଫୁଲ ଜରାୟୁ ମଧ୍ୟରେ ଉପରକୁ ବା ମଧ୍ୟ ଭାଗରେ ଲାଗିଥାଏ । କିନ୍ତୁ ଏହା ଯଦି ଜରାୟୁର ମୁଖଟି ସଂପୂର୍ଣ୍ଣ ବା ଆଂଶିକ ଭାବରେ ବନ୍ଦ କରି ଗଢ଼ି ଉଠେ ତା ହେଲେ ତାହାକୁ ପ୍ଲାସେଣ୍ଟା ପ୍ରିଭିଆ ବୋଲିଯାଏ । ଏହା ଦ୍ୱାରା ରକ୍ତସ୍ରାବ ହୋଇ ପ୍ରସୂତୀ ଓ ଭ୍ରୁଣ ଉଭୟେ ନଷ୍ଟ ହୋଇ ଯାଇ ପାରନ୍ତି ।

ମୋଟ କଥା, ଗର୍ଭିଣୀର ଜୀବନ ନାଶ ଘଟିବାର ଯଦି ଆଶଙ୍କା ଥିଲେ, ଯେ କୌଣସି ଉପାଧିଧାରୀ ଡାକ୍ତର ( ଅନ୍ୟ ଜଣେ ଡାକ୍ତରର ପରାମର୍ଶ ନେଲେ ଭଲ ହୁଏ ) ଗର୍ଭସ୍ରାବ କରାଇ ପାରନ୍ତି ।

ବୈଧ ଗର୍ଭପାତ କରାଇବା ପୂର୍ବରୁ ସଂପୃକ୍ତ ଶିକ୍ଷିତ ସ୍ତ୍ରୀ ଲୋକଙ୍କଠାରୁ ସ୍ୱାକ୍ଷରଯୁକ୍ତ ସମ୍ମତି ପତ୍ର ନେଇ ଏବଂ ତା'ର ସ୍ୱାମୀ ବା ଅନ୍ୟ କୌଣସି ଦାୟିତ୍ୱ ପୂର୍ଣ୍ଣ ନିକଟ ସଂପର୍କୀୟ ବ୍ୟକ୍ତିକୁ ଓ ଅନ୍ୟ ଜଣେ ଡାକ୍ତରଙ୍କୁ ଉପସ୍ଥିତ ରଖି ଏ କାର୍ଯ୍ୟରେ ଅଗ୍ରସର ହେବ । ନ୍ୟାୟ ସଙ୍ଗତ ଗର୍ଭସ୍ରାବ ପ୍ରାୟ ଚତୁର୍ଥ ବା ପଞ୍ଚମ ମାସରେ ସାଧିତ ହୁଏ ।

କଥାରେ ଅଛି ଥରେ ଗର୍ଭପାତ କରାଇଲେ ଯେତିକି କଷ୍ଟ ହୁଏ, ପାଞ୍ଚଥର ଜନ୍ମ କଲେ ମଧ୍ୟ ରମଣୀ ସେତିକି କଷ୍ଟ ଭୋଗେ ନାହିଁ । ଏହି ଗର୍ଭସ୍ରାବ ପାଇଁ ନାନାଦି ପ୍ରକାର ଦେଶୀୟ ଓ ବିଦେଶୀୟ ଔଷଧ ପତ୍ରର ପ୍ରଚଳନ ଅଛି । ଅଧିକ ମଧ୍ୟ ବାହ୍ୟ ବଳ ପ୍ରୟୋଗ ଦ୍ୱାରା ଗର୍ଭାଶୟ ମଧ୍ୟରେ ଲୌହ ଯନ୍ତ୍ରାଦି ପ୍ରବେଶ କରାଇବା କିମ୍ବା ପେଟରେ ଧୁପି ମାରିବା, ଗୋଇଠା ମାରିବା, ତଳପେଟକୁ ଦୃଢ଼ ଭାବରେ ବାନ୍ଧି ରଖିବା ଇତ୍ୟାଦି ପୈଶାଚିକ ଉପାୟର ଆଶ୍ରୟ ନେଇଥାନ୍ତି ।





ଏହି ସବୁ ଗର୍ଭନାଶକ ପ୍ରକ୍ରିୟା ସ୍ତ୍ରୀଲୋକ ପକ୍ଷରେ ବଡ଼ ଅନିଷ୍ଟକର । ଏହା ଦ୍ୱାରା ପ୍ରଚୁର ରକ୍ତସ୍ରାବ, ତଜ୍ଜନିତ କମ୍ପ, ଦୁର୍ବଳତା, ହସ୍ତପଦ ଝିମ୍ ଝିମ୍ ହେବା, ତଳି ପେଟରେ ବେଦନା ବୋଧ, ଏପରିକି ପରିଶେଷରେ ଜୀବନ ନାଶ ମଧ୍ୟ ଘଟିଥାଏ ।



## ନବଜାତ ଶିଶୁ ହତ୍ୟା

ନବଜାତଶିଶୁ ହତ୍ୟା ବହୁକାଳ ଧରି ପୃଥିବୀର ସବୁ ଦେଶରେ ଅଳ୍ପ ବିସ୍ତର ଚଳି ଆସୁଅଛି । କିନ୍ତୁ କଠିନ ଆଇନ୍‌ର ଦଣ୍ଡ ଯୋଗୁ ଏହାର ସଂଖ୍ୟା ଅନେକ କମି ଯାଇଅଛି । ଭ୍ରୂଣହତ୍ୟା ତୁଳନାରେ ନବଜାତ ଶିଶୁ ହତ୍ୟା ଅନେକ କମ୍ ।

ପୂର୍ବେ ତିନୋଟି କାରଣରୁ ସଦ୍ୟ ପ୍ରସୂତ ଶିଶୁକୁ ହତ୍ୟା କରାଯାଉଥିଲା । ଯଥା—

(କ)-ଜାରଜ ହେଲେ ସମାଜ ନିକଟରେ ସପରିବାରରେ ଦଣ୍ଡନୀୟ ହେବାକୁ ହେବ, ଏହି ଆଶଙ୍କାରେ ।

(ଖ)-ଅର୍ଥ ନୈତିକ କାରଣରୁ ମଧ୍ୟ ଏପରି ହତ୍ୟା ଘଟୁଥିଲା ।

(ଗ)-ନବପ୍ରସୂତ ଶିଶୁ ଯଦି ଝିଅଟିଏ ହେଉଥିଲା, ତାହା ହେଲେ ଭାରତୀୟ ହିନ୍ଦୁ ସମାଜରେ ତାହାକୁ ଉପଯୁକ୍ତ ପାତ୍ରରେ ବିବାହ ଦେଇ ପିତାର ଭିଟାମାଟି ଉଚ୍ଛନ୍ନ ହୋଇ ଯାଉଥିଲା । ବର୍ତ୍ତମାନ ମଧ୍ୟ ଏପରି ଅନେକ ପିତାମାତା ଉଚ୍ଛନ୍ନ ହୋଇ ଯାଉଅଛନ୍ତି । ହିନ୍ଦୁ ସମାଜର କେତୋଟି ସଂଖ୍ୟାଲଘୁ ଜାତି ମଧ୍ୟରେ ଉପଯୁକ୍ତ ପାତ୍ର ପାଇବା ଦୁରୂହ ହେଉଥିଲା ଏବଂ ବର୍ତ୍ତମାନ ମଧ୍ୟ ଦୁରୂହ ହେଉଛି । ପୂର୍ବେ ହିନ୍ଦୁ ସମାଜର ବିଶେଷତଃ ବ୍ରାହ୍ମଣ ସମାଜରେ ଗୋଟିଏ ଅନ୍ଧ



ଧର୍ମବିଶ୍ୱାସ ଥିଲା ଯେ କୁମାରୀ କନ୍ୟା ପିତୃ ଗୃହରେ ପ୍ରଥମ ଋତୁମତୀ ହେଲେ ତାହାର ରଜ ଶୋଣିତ ସ୍ୱର୍ଗଗତ ଚତୁର୍ଦ୍ଦଶ ପୂର୍ବପୁରୁଷମାନଙ୍କର ଆତ୍ମା ନିକଟରେ ପହଞ୍ଚେ । ତାହା ଫଳରେ ପିତାକୁ ଅନନ୍ତ ନରକ ବାସ କରିବାକୁ ହୁଏ ।

ପୂର୍ବେ ହିନ୍ଦୁ, ମୁସଲମାନ ରାଜା ବାଦଶା, ଅମୀର ଓମରାହ ଓ ଜମିଦାରମାନଙ୍କ ଘରେ କୁରୂପା କନ୍ୟା ଜନ୍ମ ଗ୍ରହଣ କଲେ ପ୍ରାୟ କେତେକ ସ୍ଥଳେ ସେମାନଙ୍କୁ ହତ୍ୟା କରି ଦିଆଯାଉଥିଲା ବୋଲି ଶୁଣିବାକୁ ମିଳେ । କାରଣ ସ୍ୱରୂପ ନିଜର ମର୍ଯ୍ୟାଦାନୁରୂପ ଘରେ କନ୍ୟାକୁ ବିବାହ ଦେଇ ହେବ ନାହିଁ, ଅନ୍ୟ କେଉଁଠି ଅନଭିଜ୍ଞାତ ଘରେ ବିବାହ ଦେଲେ କନ୍ୟା ମଦ୍ୟପୀ ବା ଦୁଷ୍ଟବିବି ପାଶ ହସ୍ତରେ ପଡ଼ି ତାହାର ଜୀବନ ବିଡ଼ମ୍ବିତ ହେବ, ପୁଣି ବିବାହ ନ ଦିଆଯାଇ ଯଦି ଘରେ ରଖାଯାଏ, ସେ ଦୁଷ୍ଟଚରିତା ହୋଇ ବାପ ମାଙ୍କ ମୁଖରେ କାଳି ବୋଳି ଦେବ । ଏହିସବୁ କାରଣରୁ କେତେକ ସ୍ଥଳେ କୁରୂପା କନ୍ୟା ପ୍ରତି କରୁଣା ପ୍ରଦର୍ଶନ କରା ଯାଉ ନ ଥିଲା ।

୧୮୭୦ ଖ୍ରୀଷ୍ଟାବ୍ଦରେ ଶିଶୁକନ୍ୟା ହତ୍ୟା ନିବାରକ ଆଇନ ପ୍ରଣୟନ ହେବା ପୂର୍ବରୁ ଉତ୍ତର ଭାରତର ବହୁଗ୍ରାମରେ ତତ୍କାଳୀନ ସରକାରୀ କର୍ମଚାରୀଗଣ ତଦନ୍ତ କରି ଦେଖିଥିଲେ ଯେ, ସେଠାରେ କନ୍ୟା ସଂଖ୍ୟା ବିଚଳିତ ଭାବରେ କମି ଯାଇଅଛି । ମୈନପୁରୀ ଜିଲ୍ଲାର ୩୦ଟି ଗ୍ରାମ ମଧ୍ୟରୁ ଏଗାରଟି ଗ୍ରାମରେ ଗୋଟିଏ ମାତ୍ର କନ୍ୟାସନ୍ତାନ ନ ଥିଲା । ଯୁକ୍ତ ପ୍ରଦେଶରେ ରାଜପୁତ ବହୁଳ ସାତଟି ଗ୍ରାମରେ ଶହେ ଚାରି ଜଣ ବାଳକଙ୍କ ସ୍ଥଳେ ଗୋଟିଏ ମାତ୍ର ବାଳିକା ଥିଲା ।





ନାଡ଼ିକି ପୁତ୍ର କନ୍ୟା ହତ୍ୟା, ଅନେକ ସ୍ଥଳରେ ଜନ୍ମଦାତ୍ରୀହିଁ ନିଜ ହସ୍ତରେ କରିଥାଏ । ଧାତ୍ରୀ ଓ ପ୍ରେମିକ ପ୍ରାୟ ତାହାକୁ ସାହାଯ୍ୟ କରନ୍ତି । ଶିଶୁର ନାଭିରଜ୍ଜୁ ( Umbilical cord) ବନ୍ଧନ ନ କରି ଓ ନକାଟି, ଶିଶୁକୁ ଅନାବୃତ ଅବସ୍ଥାରେ ଅନାହାରରେ ରଖି, ଶ୍ୱାସ ରୋଧ କରି ଅଥବା ଅସ୍ତ୍ରାଘାତ କରି ହତ୍ୟା କରନ୍ତି । ଶିଶୁ ମୃତ ଅବସ୍ଥାରେ ଜନ୍ମ ହୋଇଥିଲା କି ନା, ଅଥବା ତାହାକୁ ହତ୍ୟା କରି ଯାଇଅଛି କି ନା, ତାହା ସୁଦକ୍ଷ ଡାକ୍ତର ପକ୍ଷେ ଆବିଷ୍କାର କରିବା ବିଶେଷ କଷ୍ଟ ସାଧ୍ୟ ନୁହେଁ ।

ଶିଶୁ ଜନ୍ମ ହେବା ଦିନଠାରୁ ଦିଇ୧୫ନ ମଧ୍ୟରେ ତାହାକୁ ହତ୍ୟା କରିଯାଇଥିଲେ, ତାହାକୁ ଇଂରାଜୀ ଆଇନ୍‌ରେ 'Infanticide ବୋଲିଯାଏ । ଏଥିରୁ ଊର୍ଦ୍ଧ୍ୱ ବୟସ୍କ ଶିଶୁକୁ ହତ୍ୟାକଲେ ତାହା ନରହତ୍ୟା ତୁଲ୍ୟ ଅପରାଧ ବୋଲି ଗଣ୍ୟ ହୋଇଥାଏ । ଶିଶୁହତ୍ୟାର ଅଭିଯୋଗ ପ୍ରମାଣିତ କରିବାକୁ ହେଲେ ପ୍ରଥମେହିଁ ଦେଖାଇବାକୁ ହେବ ଯେ, ଶିଶୁ ୮ ରୁ ୧୦ ମାସ ମଧ୍ୟରେ ଜୀବିତାବସ୍ଥାରେ ମାତା ଗର୍ଭରୁ ଜନ୍ମ ଓ ତାହାର ଦେହଠାରୁ ପୃଥକ ହୋଇଥିଲା । ତାହା ପରେ ଶିଶୁର ଅଙ୍ଗରେ ବଳ ପ୍ରୟୋଗ ବା ଆଘାତର ଚିହ୍ନଗୁଡ଼ିକ ପରୀକ୍ଷା କରିବାକୁ ହୁଏ । ଅନାହାର ବା ଅନାବରଣରେ ରଖି ହତ୍ୟା କରିଯିବା ସମ୍ବନ୍ଧରେ ପ୍ରମାଣ କରାଇବା ଅତ୍ୟନ୍ତ କଠିନ । ଭାରତୀୟ ଦଣ୍ଡବିଧି ଆଇନର ୩୧୫ ଧାରା ଅନୁସାରେ ଶିଶୁହତ୍ୟାକାରୀର ୧୦ବର୍ଷ ପର୍ଯ୍ୟନ୍ତ କାରାଦଣ୍ଡ ଅଥବା ଗୁରୁତର ଅର୍ଥ ଦଣ୍ଡ କିମ୍ବା ଉଭୟ ଦଣ୍ଡ ମଧ୍ୟ ହୋଇପାରେ । ହତ୍ୟାରେ ସାହାଯ୍ୟକାରୀ ମଧ୍ୟ ଗୁରୁତର ଦଣ୍ଡପାଏ ।





## ବଳାତ୍କାରରେ ନାରୀହରଣ ( RAPE CASE )

ଆଇନ୍ ଦୃଷ୍ଟିରେ ବଳାତ୍କାର କାହାକୁ କୁହାଯାଏ ? ସ୍ୱାମୀ ଯଦି ତାହାର ଅଳ୍ପବୟସ୍କା ସ୍ତ୍ରୀକୁ ବଳପୂର୍ବକ ଉପଭୋଗ କରେ, ତାହା ହେଲେ କ'ଣ ତାକୁ ବଳାତ୍କାର କୁହାଯିବ ? ବିଲାତ ଓ ଭାରତୀୟ ଆଇନ୍‌ରେ ବଳାତ୍କାର ସମ୍ବନ୍ଧରେ କିଛି ପାର୍ଥକ୍ୟ ଅଛି କି ନାଁ? ଏହାର ଦଣ୍ଡ କ'ଣ ? କୌଣସି ବାଳିକାକୁ ବଳପୂର୍ବକ ଚୁମ୍ବନ, ଆଲିଙ୍ଗନ, ମର୍ଦ୍ଦନାଦି କଲେ ତାହା କ'ଣ ବଳାତ୍କାର ଧାରାରେ ପଡ଼ିବ ? ବାରାଙ୍ଗନାମାନଙ୍କୁ ଜୋରକରି ଅଥବା ବିବାହିତା ସ୍ତ୍ରୀଲୋକର ସମ୍ମତି ନେଇ ରମଣ କଲେ ସେଟି କ'ଣ ବଳାତ୍କାର ଦଫା ଲାଗିବ ? କେତେ ବର୍ଷ ବୟସ୍କର ବାଳକ ବଳାତ୍କାର କଲେ ତାହା ଦଣ୍ଡନୀୟ ଅପରାଧ ବୋଲି ଗଣ୍ୟ ହେବ ! ଏହି ସବୁ ପ୍ରଶ୍ନର ସମାଧାନ ନିମ୍ନରେ ଦିଆଗଲା ।

ପୂର୍ବେ ଥିଲା ଯେ ୧୨ ବର୍ଷ ବୟସର ଓ ତାହାଠାରୁ କମ୍ ବୟସ୍କା ବାଳିକା, ସେ ବିବାହିତା ହେଉ ଅଥବା ଅବିବାହିତା ହେଉ ତା'ର ସମ୍ମତି ଥାଉ ବା ନ ଥାଉ, ତା'ର ଦେହକୁ ଉପଭୋଗ କରିଲେ, ଏପରିକି ତା'ର ସ୍ୱାମୀ ପର୍ଯ୍ୟନ୍ତ ଆଇନ ଅନୁସାରେ ବଳାତ୍କାର ପର୍ଯ୍ୟାୟଭୁକ୍ତ ହେଉଥିଲା । ଏହିକ୍ଷଣି ୧୪ ବର୍ଷରୁ କମ ବୟସ୍କ ବାଳିକାର ସମ୍ମତି ନେଇ ମଧ୍ୟ ସହବାସ କଲେ ତାହା ଆଇନ ଚକ୍ଷୁରେ ବଳାତ୍କାର ବୋଲି ଗଣ୍ୟ ହୋଇପାରେ । ଆଜିକାଲି ୧୬ ବର୍ଷ ବା ତହିଁରୁ ନିମ୍ନ ବୟସ୍କା କୌଣସି ବାଳିକାର ସମ୍ମତି ଥାଇ ମଧ୍ୟ ତା'ର ଦେହ ଗ୍ରହଣ କଲେ, ତାହା ବଳାତ୍କାର ଅପରାଧ ବୋଲି ସାବ୍ୟସ୍ତ ହୁଏ ।





ଇଂଲଣ୍ଡର ଆଇନ ଅନୁସାରେ ୧୩ ବର୍ଷରୁ କମ ବୟସ୍କା ବାଳିକା ସହିତ ଯେ କୌଣସି ଭାବରେ ସହବାସ କଲେ ତାହା ବଳାତ୍କାର ପର୍ଯ୍ୟାୟଭୁକ୍ତ ଅଟେ । କିନ୍ତୁ ୧୩ ବର୍ଷରୁ ବେଶୀ ଓ ୧୬ ବର୍ଷରୁ କମ ବୟସ୍କା ବାଳିକାର ସମ୍ମତି କ୍ରମେ ତାହାକୁ ଉପଭୋଗ କଲେ ତାହାର ନାମହୁଏ ଦୁଷ୍କାଚରଣ (Misdemeanour) । ଏହି ଅପରାଧରେ ଦୁଇବର୍ଷ ବା ତହିଁରୁ କମ କାରାଦଣ୍ଡ ହୋଇପାରେ । କିନ୍ତୁ ଆମ୍ଭମାନଙ୍କ ଦେଶରେ ବଳାତ୍କାରର ଶାସ୍ତି ୧୦ ବର୍ଷ ପର୍ଯ୍ୟନ୍ତ ସଶ୍ରମ କାରବାସ ସେଥି ସହିତ ଅର୍ଥ ଦଣ୍ଡ ମଧ୍ୟ ହୋଇପାରେ । ଅଳ୍ପବୟସ୍କା ସ୍ତ୍ରୀ ପ୍ରତି ସ୍ୱାମୀର ବଳାତ୍କାର ଘଟଣା ନିତାନ୍ତ ଗୁରୁତର ନ ହେଲେ ତାହା ଅଦାଲତର ଗୋଚରକୁ ଆସେନାହିଁ । ଯଦି ଆସେ ତେବେ ସେଥିରେ ସ୍ୱାମୀ ଅପେକ୍ଷାକୃତ ଲଘୁଦଣ୍ଡ ପାଏ । କିନ୍ତୁ ଯଦି କୌଣସି ବାଳିକା ବଳାତ୍କାର ଫଳରୁ ଗୁରୁତର ଭାବରେ ଆହତ ହୁଏ ବା କଷ୍ଟ ଭୋଗି ମୃତ୍ୟୁମୁଖରେ ପଡେ ତେବେ ଅପରାଧୀ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ହୋଇପାରେ ।

କୌଣସି ବାଳିକାକୁ ବଳପୂର୍ବକ ଚୁମ୍ବନ, ଆଲିଙ୍ଗନ ଓ ମର୍ଦ୍ଦନାଦି କଲେ ତାହା ବଳାତ୍କାର ବୋଲି ଗଣ୍ୟହେବ ନାହିଁ । ଆଇନର ବ୍ୟାଖ୍ୟା ଅନୁସାରେ ଶିଶ୍ନମୁଣ୍ଡ ଯୋନିନାଳ ମଧ୍ୟରେ ପ୍ରବିଷ୍ଟ ନ ହେଲେ, ତାହା ବଳାତ୍କାର ପର୍ଯ୍ୟାୟଭୁକ୍ତ ହେବ ନାହିଁ । ଅପରାଧ ସାବ୍ୟସ୍ତ କରିବା ପକ୍ଷରେ ଏହାହିଁ ଯଥେଷ୍ଟ, ଏପରି କି ବୀର୍ଯ୍ୟପାତ କରିବା ବା କୌଣସି ଅରମିତା କୁମାରୀର ସତୀଚ୍ଛଦ ଛିନ୍ନ କରିବାର ମଧ୍ୟ ପ୍ରୟୋଜନ ନାହିଁ ।

ଆଇନ ଚକ୍ଷୁରେ ଯୌନ ବିଷୟକ ଅପରାଧ ସମ୍ବନ୍ଧରେ ବିବାହିତା, ଅବିବାହିତା, ଅଧିକ ବୟସ୍କା, ଅଳ୍ପବୟସ୍କା, ସତୀ କିମ୍ବା



ଅସତୀ ସ୍ତ୍ରୀଲୋକ, ଏମାନେ ସମସ୍ତେ ସମାନ । ଏମାନଙ୍କ ମଧ୍ୟରୁ ଯାହାର ସହିତ ତା'ର ଅସମ୍ମତି କ୍ରମେ ବଳପୂର୍ବକ ଉପର ଲିଖିତ ଯୌନ ସଂଯୋଗ କରଲେ ତାହା ବଳାତ୍କାର ବୋଲି ଗଣ୍ୟ ହବ । ପ୍ରାପ୍ତବୟସ୍କା ବିବାହିତା ସ୍ତ୍ରୀଲୋକ ଯଦି ଲିଖିତ ଭାବରେ, ମୌଖିକ ଭାବରେ ଅଥବା ମୌନ ନିଷ୍କ୍ରିୟତା ଦ୍ୱାରା ଅନ୍ୟକୁ ସହବାସ କରିବାକୁ ସମ୍ମତି ଦିଏ ଏବଂ ସେଥି ସହିତ ଯଦି ପ୍ରମାଣ ମିଳେ ଯେ, ତାହାକୁ ତତ୍ପୂର୍ବରୁ ଭୟ ପ୍ରଦର୍ଶନ କରା ଯାଇଥିଲା ବା ଅନ୍ୟ କୌଣସି ନିର୍ଯ୍ୟାତନ କରା ଯାଇଥିଲା.କୌଣସି ପ୍ରକାର ମାଦକଦ୍ରବ୍ୟର ସେବନ କରିବାକୁ ଦିଆ ଯାଇଥିଲା, ହିଷ୍ଟେରିଆ ବା ମୃଗୀ ବେଗର ଅବ୍ୟବହିତ ପରେ ସେ ପ୍ରାୟ ସଜ୍ଞାଶୂନ୍ୟ ଅବସ୍ଥାରେ ଥିଲା,କମ୍ବା "ଏହି ଲୋକ ନିଶ୍ଚୟ ମୋର ସ୍ୱାମୀ", ଏପରି ଭ୍ରାନ୍ତ ଧାରଣା ଜନ୍ମାଇବା ପାଇଁ ଚେଷ୍ଟା କରା ହୋଇଥିଲା, ତାହା ହେଲେ ସହବାସକାରୀ ବଳାତ୍କାର ଅପରାଧରେ ଅଭିଯୁକ୍ତ ହବ ।

ଇଂଲଣ୍ଡର ଆଇନରେ କୌଣସି ବ୍ୟକ୍ତିର ବୟସ ଚଉଦ ବର୍ଷରୁ କମ୍ ହେଲେ, ତାହାକୁ ବଳାତ୍କାର କରିବାରେ ସ୍ୱଭାବତଃ ଅସମର୍ଥ ଜ୍ଞାନରେ ମୁକ୍ତ ଦିଆଯାଏ । ଭାରତୀୟ ଦଣ୍ଡବିଧି ଆଇନରେ କୌଣ୍ଣ ବୟସରେ ଲୋକର ସହବାସ ଓ ବଳାତ୍କାର କ୍ଷମତା ଜନ୍ମେ, ତା'ର ସ୍ପଷ୍ଟ ଉଲ୍ଲେଖ ନ ଥିଲେ ମଧ୍ୟ ସରକାରର ଏହି ପ୍ରଥାଟି ମାନି ଚଳିବାକୁ ହବ ।

କୌଣସି ସ୍ତ୍ରୀ ଲୋକ ଯୋରକର ବା ପ୍ରଲୋଭନ ଦେଖାଇ କୌଣସି ଅଳ୍ପବୟସ୍କ ନିର୍ଦ୍ଦୋଷ ବାଳକକୁ ସହବାସରେ ପ୍ରବୃତ୍ତ କରାଇ ଅଥବା ତାହାର ଦେହରେ କୌଣସି ରତିଜ ବ୍ୟାଧିର





ସଞ୍ଚାର କରାଇ ଦେଲେ, ଏପରି ବଳାତ୍କାରର ଅପରାଧ ଓ ତାହାର ଦଣ୍ଡ ସମ୍ବନ୍ଧେ ସୁନିର୍ଦ୍ଦିଷ୍ଟ ଉଲ୍ଲେଖ ଭାରତୀୟ ଦଣ୍ଡବିଧି ଆଇନରେ ନାହିଁ ।

କୌଣସି ବାଳିକା ତା'ର ଅନିଚ୍ଛାସତ୍ତ୍ୱେ ଜବରଦସ୍ତି ତାହା ସହିତ ସହବାସ କଲେ ସେ ବାଳିକା ହାତଗୋଡ଼ ଛାଟି, ଖୁବ୍ ଯନ୍ତ୍ରଣା ପାଏ, ଏପରିକି ଅଚୈତନ୍ୟ ହୋଇଗଲେ ମଧ୍ୟ ସେପରି ସହବାସରେ ସେ ବାଳିକାର ଗର୍ଭଗ୍ରହଣ ହୋଇ ପାରେ ।





# ଏକାଦଶ ଅଧିକରଣ

## ଦେଶବିଦେଶର ଯୌନ-କିମ୍ବଦନ୍ତୀ

ପୃଥିବୀର ବହୁତ ଦେଶରେ ଯୌନ ବ୍ୟାପାରରେ ନାନା ପ୍ରକାର କିମ୍ବଦନ୍ତୀ ଶୁଣିବାକୁ ମିଳେ । ଏସବୁ ଘଟଣା ପୂର୍ବେ ଲୋକ ଅସୁଥିଲା । ବର୍ତ୍ତମାନ ଏହା ଲୋପ ପାଇ ଅଛି । କୌଣସି କୌଣସି ଦେଶରେ ମଧ୍ୟ ଅଦ୍ୟାପି ଅଳ୍ପାଧିକ ଭାବରେ ଏଗୁଡ଼ିକର ପ୍ରଚଳନ ଶୁଣିବାକୁ ମିଳେ ।

### ନାରୀମାନଙ୍କ ମଧ୍ୟରେ ଆତ୍ମମୈଥୁନ

ଲେସ୍‌ବସ୍ ଦ୍ୱୀପର ସ୍ତ୍ରୀଲୋକମାନେ ହସ୍ତୀଦନ୍ତ ବା ସ୍ୱର୍ଣ୍ଣ ନିର୍ମିତ ଗୋଟିଏ ଗୋଟିଏ ଲିଙ୍ଗ ପ୍ରସ୍ତୁତ କରି ପ୍ରୟୋଜନ ଅନୁସାରେ ବ୍ୟବହାର କରନ୍ତି । ଏହି ଧାତୁ ନିର୍ମିତ ଲିଙ୍ଗ ଚୂର ପାଖରେ ଭଳା ରେଶମି ଲୁଗାର ଖଣ୍ଡ ଗୁଡ଼ାଇ ଦେଇ ଏହା ବ୍ୟବହାର କରାଯାଏ ।

ମାଇଲେସିଆ ଦେଶର ରମଣୀଗଣ ପଶୁଚର୍ମ ନିର୍ମିତ ଏକ ପ୍ରକାର କୃତ୍ରିମ ଲିଙ୍ଗ ଗୋପନରେ ବ୍ୟବହାର କରନ୍ତି ।

ଆଫ୍ରିକା ଦେଶରେ ହଟେନ୍‌ଟଟ୍ ନାମକ ଏକ ଅସଭ୍ୟ ଜାତି ବାସ କରନ୍ତି । ସେ ଜାତିର ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଆତ୍ମ-ମୈଥୁନ ବ୍ୟାଧି ବର୍ତ୍ତମାନ ସୁଦ୍ଧା ବହୁଳ ପ୍ରଚଳନ ଅଛି ।

ବାଲି ଦ୍ୱୀପର ସ୍ତ୍ରୀଲୋକମାନଙ୍କ ମଧ୍ୟରେ ବ୍ୟାପକ ଭାବରେ ଏହାର ପ୍ରଚଳନ ଅଛି । ଏମାନେ ମୋଟା ମୋଟା ମହମବତୀ ଦ୍ୱାରା





ନିସଙ୍ଗ ଜୀବନରେ ମଦନ ଦେବତାର ଅଯାଚିତ ଆରାଧନା କରି ସୁଖୀ ହୁଅନ୍ତି । ପୁଣି ଜାପାନ, ଗୁଜରାଟର ବଡ଼ ଘରର ରମଣୀମାନେ ଏ ବିଷୟରେ ଖୁବ୍ ପାରଦର୍ଶିନୀ ଅଟନ୍ତି । ଚୀନ୍ ଦେଶର ବଡ଼ବଡ଼ ସହରରେ ପ୍ରକାଶ୍ୟରେ କୃତ୍ରିମ ଲିଙ୍ଗ ବିକ୍ରି ହୁଏ । ଏହାକୁ ଇଂଲଣ୍ଡ ଓ ଆମେରିକାରେ "ଡିଲ୍ ଡୋ" ( Dildoe ) ବୋଲି କହନ୍ତି ।

ଜାପାନରେ ସ୍ତ୍ରୀଲୋକମାନଙ୍କର ଆତ୍ମରତି ନିମନ୍ତେ ଅର୍ଦ୍ଧ ପ୍ରକାଶ୍ୟ ଭାବରେ ବଜାରରେ ଏକ ପ୍ରକାର ଯନ୍ତ୍ର ବିକ୍ରି ହୁଏ । ଏହାର ନାମ ହେଉଛି 'ରିନ୍-ନୋ-ତାମା' । ଏହି ଯନ୍ତ୍ର ପାରାଅଣ୍ଡାପରି ଦୁଇଟି ଗୋଲ ପଦାର୍ଥ ବିଶେଷ । ଗୋଟିକର ଭିତର ଦେଶ ଫମ୍ପା, ଏହା ପ୍ରାୟ ମୋଟା ରବର ଦ୍ୱାରା ତିଆରି ହୁଏ । ଅନ୍ୟଟି ସୁନା, ରୁପା, ନିକେଲ ବା ଅନ୍ୟ କୌଣସି ଧାତୁ ଦ୍ୱାରା ପ୍ରସ୍ତୁତ । ଏହି ଶେଷୋକ୍ତ ବଲ୍‌ଟି ମଧ୍ୟରେ ପାରଦ ଭରି ଥାଏ । କାମପୀଡ଼ିତା ରମଣୀ ନିଜେ ନିଜେ କିମ୍ବା ଅନ୍ୟ କୌଣସି ଦାସୀ ଦ୍ୱାରା ଏହି ବଲ୍ ଦୁଇଟି ଏକ ପରେ ଯୋନି ପ୍ରଣାଳୀ ଭିତରେ ପ୍ରବିଷ୍ଟ କରାଇ ଦିଏ । ତାହା ପରେ ଉରୁଦ୍ୱୟ ଊର୍ଦ୍ଧ୍ୱକୁ ଉଠାଇ କୁକ୍ଷି ଓ ଯୋନି ନାଳୀର ପେଶୀ ସମୂହ ନିଜର ସଙ୍କୋଚନ ଓ ପ୍ରସାରଣ କଲେ ବଲ୍ ଦୁଇଟି ଯୋନି ନାଳି ଭିତରେ ଚଳଶୀଳ ହୋଇ ଉଠେ । ଅନେକ ସ୍ତ୍ରୀଲୋକ ଦୋଳାରେ ବସି କିମ୍ବା ଆରାମ ଚେୟାରରେ ଅର୍ଦ୍ଧଶାୟିତା ଅବସ୍ଥାରେ ବସି ରିନ୍ ନୋ ତାମା ସାହାଯ୍ୟରେ ସୁନ୍ଦର ଭାବରେ ସମ୍ଭୋଗର ସୁଖ ଉପଭୋଗ କରନ୍ତି ।

## ସତୀଚ୍ଛଦ ସମ୍ବନ୍ଧେ କିମ୍ବଦନ୍ତୀ ଃ

ପୂର୍ବେ ଇହୁଦୀ ଜାତି ମଧ୍ୟରେ ଗୋଟିଏ ଅଦ୍ଭୁତ ଧାରଣା ପ୍ରଚଳିତ ଥିଲା । ବିବାହର ଅବ୍ୟବହିତ ପରେ ସତୀଚ୍ଛଦ-ହୀନତାର



ମିଥ୍ୟା ଅଭିଯୋଗ ଆଣି ସ୍ବାମୀ କାଳେ ସ୍ତ୍ରୀକୁ ପରିତ୍ୟାଗ କରିପାରେ ସେଥି ଯୋଗୁ ନବୋଢ଼ା ପତ୍ନୀ ନିମନ୍ତ୍ରିତ ପ୍ରକାରେ କରୁଥିଲା। ମଧୁଶଯ୍ୟା ରାତିରେ ବିବାହ ସମୟରେ ପିନ୍ଧିଥିବା ସେମିଜଟି ପରିଧାନ କରି ସେ ଶୟନ କରେ। ସ୍ବାମୀ ଯେତେବେଳେ ପ୍ରଥମକରି ଯୌନ ସଂଯୋଗ କରେ ସେ ସେମିଜର କିଛି ଅଂଶ ତା'ର ନିତମ୍ବତଳେ ବିସ୍ତାରି କରି ରଖେ। ଅଦ୍ୟସଂଯୋଗରେ ଯେଉଁ ରକ୍ତସ୍ରାବ ଘଟେ, ତାହା ସେହି ସେମିଜରେ ସମ୍ପୂର୍ଣ୍ଣ ଭାବରେ ଲେପି ହୋଇ ଯାଏ। ତତ୍ପରେ ସେ ଶୋଣିତ ଅଙ୍କିତ ସେମିଜଟି ନବବଧୂ କେତେ ମାସ ପାଇଁ ସଞ୍ଚିତ ରଖେ। ଯଦି ତାର ସ୍ବାମୀ କୌଣସି ଦିନରୁ ତା'ର ସ୍ତ୍ରୀ ଅସତୀ ଥିଲା ବୋଲି ପୁରୋହିତ ନିକଟରେ ନାଲିଶ କରେ ତେବେ ସେହି ସେମିଜଟି ହୁଏ ସ୍ତ୍ରୀର ପ୍ରଧାନ ସାକ୍ଷୀ।

ମରକ୍କୋ ଦେଶର ପେଜ ନାମକ ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ଏକ ପ୍ରକାର କଦର୍ଯ୍ୟ ଆଚାରର ପ୍ରଚଳନ ଅଛି। ବର କନ୍ୟା ଗୃହରେ ଆସି ପ୍ରବେଶ ହେଲେ ସେଦିନ ଗୋଟିଏ ଭୋଜର ଯୋଗାଡ଼ ହୁଏ। ସମସ୍ତ ଭୋଜଭାତର ଆୟୋଜନ ଶେଷ କରି ନିମନ୍ତ୍ରିତ ବ୍ୟକ୍ତିମାନେ ଅପେକ୍ଷା କରି ବସନ୍ତି। ତତ୍ପରେ ବର କନ୍ୟା ମଧୁଶଯ୍ୟା ଘରେ ପ୍ରବେଶ କରନ୍ତି। ଯେ ପର୍ଯ୍ୟନ୍ତ ସ୍ବାମୀ ତାହାର ନବ ବିବାହିତା ସ୍ତ୍ରୀର କୁମାରୀତ୍ୱ ହରଣ ନ କରିଛି, ସେ ପର୍ଯ୍ୟନ୍ତ କୌଣସି ପ୍ରକାର ଆମୋଦ ପ୍ରମୋଦର ସ୍ରୋତ ଛୁଟେ ନାହିଁ। ନିମନ୍ତ୍ରିତମାନେ ଲୋଲୁପ ଦୃଷ୍ଟିରେ ପଲାଉ, ମାଂସତରକାରୀ ପୁରୀ, କଚୁରୀ ନାନା ପ୍ରକାର ମିଠେଇ ଇତ୍ୟାଦି ଖାଦ୍ୟ ପଦାର୍ଥକୁ ଅନାଇଁ କାଳ କାଟନ୍ତି ହୋଇଥାନ୍ତି। ପ୍ରଥମ ସହବାସ ଶେଷ ହେଲା-ମାତ୍ରେ ସ୍ବାମୀ ସଙ୍ଗେ ସଙ୍ଗେ କନାରେ ସତୀଚ୍ଛଦ-ଛିନ୍ନ-ଜନିତ ରକ୍ତକୁ

ଯୋଡ଼ୁ ବାହାରକୁ ଅଣି ଜଣେ ସ୍ତ୍ରୀଲୋକ ହାତରେ ତାହା ଯୋଗି ସଭାକୁ ଦେଇ ପଠାଏ । ସେ ସ୍ତ୍ରୀ ଲୋକ ମହୋଲ୍ଲାସରେ ସେହି ବସ୍ତ୍ର ଖଣ୍ଡକ ଜପ୍ସ କେତନ ପରି ଊର୍ଦ୍ଧ୍ୱକୁ ଉଠାଇ ପାଟି କରି କହେ "ବତ୍, ନିଷ୍ଟସ୍ସ କୁମାରୀ ଥିଲ, ଏଥିପ୍ରୁ ତା'ର ପ୍ରମାଣ ଦେଖ" । ତତ୍ପରେ ଲାଗେ ଖାଇବା ପିଇବାର ଧୂମ୍ । ଭୁରି ଭୋଜନ କରି ସମସ୍ତେ ଗୃହକୁ ଫେରି ଥାନ୍ତି ।

ମାତ୍ର ଯଦି ପ୍ରଥମ ସହବାସରେ ଶୋଣିତ ପାତ ନହୁଏ, ତାହା ହେଲେ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ନ ଖାଇ ନ ପିଇ ଭାତ ପତରରୁ ଉଠି ନିଜ ନିଜର ଭାଗ୍ୟକୁ ନିନ୍ଦା କରି ଗୃହସ୍ଥକୁ ନାନା ପ୍ରକାର ଗାଳି ଦେଇ ଘରକୁ ଫେରନ୍ତି । ଆଉ ବଧୂର ଅବସ୍ଥା କ'ଣ ହୁଏ ଜାଣନ୍ତି । ସେ ବରୁସା ଥୁକ୍କାର, ଗଞ୍ଜଣା, ଏପରିକି ବାଧା ଗୁଆପୁଡ଼ା ବୃଷ୍ଟି ମଧ୍ୟରେ ନତ ମସ୍ତକରେ ନିଜର ବାପ ଘରକୁ ଫେରି ଯାଏ । ଦରକୋ ୟୁରୋପୀୟ ସଭ୍ୟତାର ସଂସ୍ପର୍ଶରେ ଆସିବା ଦିନୁ ଏ ପ୍ରଥା ସମ୍ପ୍ରତି ଲୋପ ପାଇଅଛି ।

କିନ୍ତୁ ଚିନ୍ ଦେଶ ଓ କୌଣସି କୌଣସି ଦେଶର ଅଧିବାସୀ ମାନଙ୍କ ସମାଜରେ ବର୍ତ୍ତମାନ ମଧ୍ୟ ଏପରି ଅଦ୍ଭୁତ ବଳାତ୍କାର ରହିଅଛି ।

ଚୀନ ଦେଶରେ କୌଣସି କୌଣସି ସ୍ତ୍ରୀ ଶିଶୁ ଟିକିଏ ବଡ଼ ହୋଇଗଲେ ତା'ର କୋମଳ ସତୀଚ୍ଛଦକୁ ଅଳ୍ପ ଅଳ୍ପ କରି ଅପସାରଣ କରି ଦିଆଯାଏ । ଆମ୍ଭମାନଙ୍କ ଦେଶରେ ଯେପରି ଛୋଟ ଝିଅ ମାନଙ୍କର ନାକକାନ ସ୍ତ୍ରୀଲୋକମାନେ ଫୋଡ଼ି ପକାନ୍ତି ସେହିପରି ଚୀନ ଦେଶର ସ୍ତ୍ରୀଲୋକମାନେ କନ୍ୟାର ସ୍ୱାମୀ ସମାଗମ ପୂର୍ବରୁ ତା'ର ସତୀଚ୍ଛଦଟି କାଟି ଉଡ଼ାଇ ଦିଅନ୍ତି । ସେ ଦେଶର ଧାରଣା



ଯେ ଯୌନସମ୍ଭୋଗ ପଥରେ ସତୀଚ୍ଛଦଟି ଗୋଟିଏ ପ୍ରକୃତଦତ୍ତ ନିଷ୍ଠୁର ଅନ୍ତରାୟ, ତେଣୁ ଏପରି ପ୍ରତିବନ୍ଧକକୁ ଅପସାରଣ କରିବା ବିଧେୟ ।

ବ୍ରାଜିଲ ଦେଶରେ ମାଗ୍ରୁକୁୟା ନାମକ ଏକ ଅସଭ୍ୟ ଉପଜାତି ବାସ କରନ୍ତି । ସେମାନଙ୍କ ଘରେ କନ୍ୟା ଜନ୍ମିବାର ଅଳ୍ପ ଦିନ ପରେ ଧାତ୍ରୀ ଶିଶୁ କନ୍ୟାର ମୃଦୁକୋମଳ ସତୀଚ୍ଛଦକୁ ନହୁଚ୍ଛୁଣି ଦ୍ୱାରା କାଟି ଦିଏ ।

କାମସ୍କଟ୍କା ନାମକ ଅଞ୍ଚଳରେ "ଇଟେଲ ମିନସ" ନାମକ ଏକ ଉପଜାତି ଅଛନ୍ତି । ସେମାନଙ୍କ ଗୃହିଣୀମାନେ ବିବାହ ପୂର୍ବରୁ ଅଙ୍ଗୁଳି ସାହାଯ୍ୟରେ କନ୍ୟାମାନଙ୍କ ସତୀଚ୍ଛଦକୁ ଛିଣ୍ଡାଇ ଦିଅନ୍ତି । ସେମାନଙ୍କର ଧାରଣା ଯେ ଅତ୍ରୁଟ ସତୀଚ୍ଛଦ ସହ ବିବାହ କରିବା ବର୍ବରୋଚିତ କାର୍ଯ୍ୟ ।

କୌଣସି କୌଣସି ଦେଶରେ ବିବାହଯୋଗ୍ୟ କନ୍ୟାମାନଙ୍କର ସତୀଚ୍ଛଦ ଦୂରୀକରଣ ପାଇଁ ସ୍ୱତନ୍ତ୍ର ପାରିଶ୍ରମିକ ଦିଆଯାଇ ବିଶେଷଜ୍ଞ ନିଯୁକ୍ତ କରାଯାଉଥିଲା । ସବୁ ସମୟରେ ଏହିସବୁ ବିଶେଷଜ୍ଞମାନେ ଯେ କେବଳ ଔଷଧ ବା ଅସ୍ତ୍ରର ସାହାଯ୍ୟ ଗ୍ରହଣ କରୁଥିଲେ, ଏ କଥା ଜୋର କରି କୁହାଯାଇ ନ ପାରେ । କିଛିକାଳ ପୂର୍ବରେ ଫିଲିପାଇନ୍ ଦ୍ୱୀପପୁଞ୍ଜର ଆଦିମ ଅଧିବାସୀ ବିସେଅସ୍ ଜାତି ମଧ୍ୟରେ କେତେ ଗୁଡ଼ିଏ ସରକାରୀ କର୍ମଚାରୀ ନିଯୋଗର ପ୍ରଥା ଥିଲା । ଯେଉଁମାନଙ୍କର ଏକମାତ୍ର କର୍ତ୍ତବ୍ୟ ଥିଲା ଉପଯୁକ୍ତ ପାରିଶ୍ରମିକ ନେଇ କୁମାରୀମାନଙ୍କର ସତୀଚ୍ଛଦ ନଷ୍ଟ କରି-ଦେଇ ।





ନିଉକାଲିଡ଼ୋନିୟାନ୍‌ମାନଙ୍କ ମଧ୍ୟରେ ଗୋଟିଏ ଲୋକାଚାରର ପ୍ରଚଳନ ଅଛି । ସେମାନଙ୍କ କନ୍ୟାମାନଙ୍କର ବିବାହ ପୂର୍ବରୁ ରମଣ ଦ୍ୱାରା ସତୀଚ୍ଛଦ ଅପସାରଣ କରିବା ଏକ ଗୌରବ ଜନକ କଥା ବୋଲି ମନେ କରାଯାଏ । ସେ ଦେଶର ଯଦି କୌଣସି ସ୍ୱାମୀ ନିଜ ସ୍ତ୍ରୀର ସତୀଚ୍ଛଦ ରମଣ ଦ୍ୱାରା ଛିଣ୍ଡାଇବାକୁ କଷ୍ଟ ବୋଧ କରେ ବା ରାଜି ନ ହୁଏ ତେବେ ପଇସା ଦେଇ ଅନ୍ୟ ଲୋକ ଦ୍ୱାରା ରମଣ କରାଇ ସତୀଚ୍ଛଦ ଅପସାରଣ କରାଯାଉଥିଲା । ଏ କାର୍ଯ୍ୟ ପାଇଁ ପ୍ରତି ଗ୍ରାମରେ ଜଣେ ଜଣେ ପେସାଦାର କୁମାରତ୍ୱହାରୀ ଥିଲେ ଯେଉଁମାନଙ୍କର କାମ ହେଉଥିଲା କୁମାରୀ ସ୍ତ୍ରୀଙ୍କ ସହିତ ସହବାସ କରିବା ।

ମାଲାବାର ଉପକୂଳସ୍ଥ ଅଞ୍ଚଳରେ ବହୁକାଳାବଧି ଏହି ପରି ଗୋଟିଏ ପ୍ରଥା ଚଳୁଥିଲା । ମଧ୍ୟ ଯୁଗରେ କାଲିକଟର ରାଜାମାନଙ୍କ ମଧ୍ୟରେ କୁଆଡ଼େ ଏପରି ଗୋଟିଏ ବିଧି ପ୍ରଚଳନ ଥିଲା ଯେ, ରାଜା ସଦ୍ୟବିବାହିତା ରାଣୀଙ୍କୁ ପ୍ରଥମ ଶର୍ବରୀଟି ସହବାସ ପାଇଁ ରାଜ ପୁରୋହିତ ପାଖକୁ ଛାଡ଼ି ଦେଉଥିଲେ । ଶୁଣିବାକୁ ଆମ୍ଭମାନଙ୍କୁ ଏହା ଲଜ୍ଜାଜନକ ବୋଧ ହେଲେ ହେଁ ସେତେବେଳେ ଏହା ସେଠାକାର ଲୋକସମାଜରେ ପୁଣ୍ୟ ପ୍ରଥା ବୋଲି ଗଣ୍ୟ ହେଉଥିଲା । ରାଣୀର ସତୀଚ୍ଛଦ ଛିନ୍ନ କରିବା ପାଇଁ ରାଜ ପୁରୋହିତ ଯେଉଁ ପ୍ରଥମ ସଙ୍ଗମ କରୁଥିଲେ, ସେଥିପାଇଁ ୫୦ ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ପ୍ରଣାମୀ ପାଉଥିଲେ ।

ବେଶୀ ଦିନର କଥା ନୁହେଁ । ପ୍ରାୟ ୦୦ ବର୍ଷ ତଳର କଥା । ମାନ୍ଦ୍ରାଜ ପ୍ରଦେଶରେ ବହୁସ୍ଥଳରେ ପଞ୍ଚମ ନାମକ ଏକ ଅସ୍ପୃଶ୍ୟ ଜାତିଙ୍କ ମଧ୍ୟରେ ଗୋଟିଏ ଅଦ୍ଭୁତ ପ୍ରଥାର ପ୍ରଚଳନ ଥିଲା । ସେମାନଙ୍କର ବିବାହଯୋଗ୍ୟା କିମ୍ବା ନବ ବିବାହିତା କନ୍ୟାଗଣ ପ୍ରଥମ ଋତୁମତୀ



ହେବାର ଅବ୍ୟବହିତ ପରେ କୌଣସି ବ୍ରାହ୍ମଣ ଘରକୁ ଯାଇ ତାକୁ ସତୀଚ୍ଛଦ ଉପହାର ଦେଇ ଆସୁ ଥିଲେ । ଯେଉଁ ବ୍ରାହ୍ମଣମାନଙ୍କ ପକ୍ଷରେ ପଞ୍ଚମ ଜାତିର ଛାୟା ସ୍ପର୍ଶରେ ସ୍ନାନ ଦ୍ୱାରା ଆତ୍ମଶୁଦ୍ଧିର ଆବଶ୍ୟକ ହେଉଥିଲା ଏବଂ ଯାହାକୁ କୁକୁର ବିଲୁଆ ପରି ଛୁଇଁବାକୁ ଘୃଣାବୋଧ ହେଉଥିଲା, ସେହି ବ୍ରାହ୍ମଣମାନେ ସେ ପଞ୍ଚମ ଜାତିର କନ୍ୟାର ସତୀତ୍ୱ ନାଶ ଭଳି ଜଘନ୍ୟ ଦାୟିତ୍ୱ ପାଳନ କରିବାରେ କୌଣସି ପ୍ରକାର ଅଶୁଦ୍ଧ ବା ଜାତିଚ୍ୟୁତ ହେଉ ନ ଥିଲେ ।

ଗତ ଶତାବ୍ଦୀ ପୂର୍ବରୁ ଭାରତରେ ଦକ୍ଷିଣ ଅଞ୍ଚଳର ବହୁ ସ୍ଥାନରେ ଏକ ବିଚିତ୍ର ପ୍ରଥା ଚଳୁଥିଲା । ମନୁଷ୍ୟ ଲିଙ୍ଗ ସ୍ୱରୂପ ଶିବ-ଲିଙ୍ଗ ସାହାଯ୍ୟରେ କୁମାରୀ ଓ ନବ ପରିଣିତାମାନଙ୍କ ସତୀଚ୍ଛଦ ଛେଦନର ବ୍ୟବସ୍ଥା ଥିଲା । ପ୍ରାଚୀନ ରୋମରେ କୋମଳ-ପ୍ରସ୍ତର ନିର୍ମିତ 'ମିଉଟିନସ୍ ଓ ପ୍ରାୟାପାସ୍' ନାମକ ନଗ୍ନ ଦେବତାର ଉତ୍ଥିତ ଲିଙ୍ଗ ଉପରେ କଣେଶୀ କୁମାରୀକୁ ବସାଇ ବା ଶୁଆଇ ତା'ର ସତୀଚ୍ଛଦ ଛିନ୍ନ କରା ଯାଉଥିଲା ।

ମଧ୍ୟ ଯୁଗରେ ଇଂଲଣ୍ଡ, ଫ୍ରାନ୍ସ ଓ ରୋମ ଦେଶରେ କୌଣସି ବ୍ୟକ୍ତି ନିଜର ନବବିବାହିତା ପତ୍ନୀକୁ ପ୍ରଥମ ରାତ୍ରୀ ଉପଭୋଗ ପାଇଁ ରାଜାଧିକାରରେ ଛାଡ଼ିଦେବାର ବ୍ୟବସ୍ଥା ଥିଲା । ରାଜାଙ୍କର ଏହି ଉପଭୋଗର ଅଧିକାରକୁ ( Jus prima Noctis ) କୁହାଯାଉଥିଲା ।

ପୂର୍ବେ ଆମ୍ଭମାନଙ୍କ ଦେଶରେ କୌଣସି କୌଣସି ସମ୍ପ୍ରଦାୟରେ ମଧ୍ୟ ନବ-ପତ୍ନୀକୁ "ଗୁରୁପ୍ରସାଦୀ" କରିବା ନୀତି ସମ୍ବନ୍ଧରେ ଯେ ସବୁ କଥା ଅଛି ଓ ଅବିଶ୍ୱାସ ହୋଇ ରହିଅଛି ସେଥିରେ କିଛି ଐତିହାସିକ ସତ୍ୟ ଥିଲା ପରି ଅନୁମିତ ହୁଏ ।





ଇଣ୍ଡୋଚନ୍ ଅନ୍ତର୍ଗତ କାମ୍ବୋଡ଼ିଆ ବା 'କାମ୍ବୋଜ ରାଜ୍ୟରେ 'ଅତ୍ଚନ୍' ଗ୍ଲନ୍ ନାମକ ଗୋଟିଏ ପ୍ରଥାର ପ୍ରଚଳନ ଥିଲା । କିନ୍ତୁ ଏହା ଫରାସୀ ଅଧିକାରଭୁକ୍ତରେ ଆସିବା ଦିନଠାରୁ ଲୁପ୍ତ ହୋଇ ଅଛି । ଏହି "ଅତ୍ଚନ୍ଗ୍ଲନ୍" ପ୍ରଥା ଏକ ପ୍ରକାର ଗୁରୁପ୍ରସାଦୀ ଛଡ଼ା ଅନ୍ୟ କିଛି ନୁହେଁ । ଏହି ଶବ୍ଦର ଅକ୍ଷରଲବ୍ଧ ଅର୍ଥ "ଅଙ୍ଗ ସଂସ୍ଥାନର ବ୍ୟବସ୍ଥା" । ସ୍ୱାମୀ ସହିତ ସହବାସ କାଳରେ କିପରି ଭାବରେ ସ୍ତ୍ରୀ ଲୋକକୁ ଅଙ୍ଗ ନ୍ୟାସ କରିବାକୁ ହେବ ସେହି ସମ୍ବନ୍ଧରେ ଶିକ୍ଷା ଦାନ । ପୁଣି ଏ ଶିକ୍ଷା ଦାନର ଭାର ଥିଲା ବୌଦ୍ଧ ପୁରୋହିତମାନଙ୍କ ଉପରେ ।

ବୌଦ୍ଧ-ଜଗତରେ ପ୍ରତି ଗ୍ରାମରେ କିମ୍ବା ପ୍ରତି ୨।୩ଟି ଗ୍ରାମରେ ବୌଦ୍ଧ ମଠ ବା ମନ୍ଦିର ଅଛି । କାମ୍ବୋଡ଼ିଆରେ ପ୍ରତି ବର୍ଷର ଚତୁର୍ଥ ଚାନ୍ଦ୍ର ମାସରେ ଗୋଟିଏ ସରକାରୀ ଇସ୍ତାହାର ପ୍ରକାଶିତ ହୁଏ । ସେଥିରେ "ଅତ୍ଚନ୍ଗ୍ଲନ୍" ଉତ୍ସବର ଦିନ ନିର୍ଦ୍ଧାରିତ ହୋଇଥାଏ । ତା ପରେ ଉତ୍ସବ ପୂର୍ବରୁ ଋତୁମତୀ ଓ ବିବାହଯୋଗ୍ୟା କନ୍ୟା-ମାନଙ୍କର ପିତା ମାତାମାନେ ନିକଟସ୍ଥ ମଠକୁ ଯାଇ କୌଣସି ପୁରୋହିତଙ୍କ ଦ୍ୱାରା 'ଅତ୍ଚନ୍ ଗ୍ଲନ୍‌ର' ବ୍ୟବସ୍ଥା କରି ଆସନ୍ତି । ସାଧାରଣତଃ ଜଣେ ପୁରୋହିତ କେବଳ ମାତ୍ର ଜଣେ କନ୍ୟାକୁ ଯୌନଧର୍ମରେ ଦୀକ୍ଷିତ କରିବାର ଅଧିକାର ଲାଭ କରୁଥିଲା । ଏଣୁ ପୁରୋହିତମାନେ ସ୍ୱତନ୍ତ୍ର ଦର କଷାକଷି କରୁଥିଲେ । ଯେଉଁ-ମାନେ ଧନୀ ସେମାନଙ୍କର କନ୍ୟା ଆଗ ଯୌନଧର୍ମରେ ଦୀକ୍ଷିତା ହେଉଥିଲା, କିନ୍ତୁ ଦରିଦ୍ର ପିତାମାତାମାନେ ପରବର୍ତ୍ତୀ ବର୍ଷକୁ ଅପେକ୍ଷା କରି ରହୁଥିଲେ ।



ଏହି ପ୍ରଥା କାମ୍ବୋଡ଼ିଆ ଦେଶର ଏକ ଅବଶ୍ୟ-ପାଳନୀୟ-ସଂସ୍କାର-ବିଶେଷ ଥିଲା । ଏ ସଂସ୍କାର ସମ୍ପନ୍ନ ନ ହେବା ପର୍ଯ୍ୟନ୍ତ କନ୍ୟା ବିବାହ ଉପଯୁକ୍ତ ବୋଲି ଗ୍ରହଣ କରାଯାଉ ନଥିଲା । ଯେଉଁ ଦିନ ଏ ଉତ୍ସବ ପଡ଼େ ସେ ଦିନ ଦେଶରେ ଆନନ୍ଦର ମେଳା ଲାଗି ଯାଏ । ଗୃହ ଅଗ୍ରେ ଅନେକ ମାଳା ଆତସବାଜି, ବାଦ୍ୟ, ପୁଷ୍ପ ପତାକା, ଭୋଜିଭାତ, ନୃତ୍ୟଗୀତ ଓ ଥଟ୍ଟା ତାମସାର ସୁଅର ମାଡ଼ିଆସେ । ରାତିରେ କନ୍ୟାଙ୍କୁ ପାଲିଙ୍କିରେ ବସାଇ ପୁରୋହିତ ନିକଟରେ ଛାଡ଼ି ଦେଇ ଆସିବାକୁ ହୁଏ । ତାହା ସଙ୍ଗେ ସଙ୍ଗେ ତଣ୍ଡୁଳ, ମଦ ଶଯ୍ୟାବସ୍ତ୍ର, ସୁନାରୁପାର ଉପଢୌକନ ମଧ୍ୟ ଥାଏ । ସାତଦିନ ପରେ ଆଉ ଥରେ ପ୍ରଣାମୀ ଦେଇ ବାଦ୍ୟ କୋଳାହଳ ମଧ୍ୟରେ କନ୍ୟାକୁ ପୁରୋହିତ ଘରୁ ଅଣାଯାଏ । ପ୍ରଣାମୀର କମ ବେଶୀ ନେଇ ଯଦି କିଛି ଗୋଳମାଳ ଉପୁଜେ ତେବେ ତୋଷଣୀ ପ୍ରଣାମୀ ବୃଦ୍ଧି ନ ପାଇବା ପର୍ଯ୍ୟନ୍ତ ପୁରୋହିତ ନିଜ ଘରେ କନ୍ୟାକୁ ଅଟକାଇ ରଖି ଶଯ୍ୟାସଙ୍ଗିନୀ କରେ । ଅର୍ଥାତ୍ ଏହା ଫଳରେ ସେ କନ୍ୟା ଅଙ୍ଗ ବିନ୍ୟାସର କୌଶଳ ଆତୁର ଭଲକରି ଶିଖିବା ସୁଯୋଗ ପାଏ ।



## ରଜସ୍ୱଳା ସ୍ତ୍ରୀ ସମ୍ବନ୍ଧେ କିମ୍ବଦନ୍ତୀ

କ୍ୟାପ୍ସାଡ଼ୋରିଆ ପ୍ରଦେଶରେ କୃଷକଗଣ ସେମାନଙ୍କର ରଜସ୍ୱଳା ସ୍ତ୍ରୀମାନଙ୍କୁ ଫଳଫୁଲ ଶୋଭିତ ଶସ୍ୟକ୍ଷେତ ମଧ୍ୟରେ ସାଦରେ ନେଇ ବୁଲାଉ ଥିଲେ । କାରଣ ସେମାନଙ୍କର ବିଶ୍ୱାସ ଥିଲା ଯେ ସ୍ତ୍ରୀମାନଙ୍କର ରଜର ଗନ୍ଧ ଶସ୍ୟ ଅନିଷ୍ଟକାରୀ କୀଟ ପତଙ୍ଗ ପକ୍ଷରେ ବିଷ ସଦୃଶ । ଏଣୁ ଋତୁମତୀ ସ୍ତ୍ରୀ ଶସ୍ୟକ୍ଷେତରେ ବୁଲିଲେ କୀଟ ପତଙ୍ଗର ଉପଦ୍ରବ ନିବାରିତ ହୁଏ ।





ବର୍ତ୍ତମାନ ସଭ୍ୟ-ଅମେରିକାର ଆ ମ ଅଧିବାସୀ ହେଉଛନ୍ତି ରେଡ୍ ଇଣ୍ଡିଆନ୍ ମାନେ ବର୍ତ୍ତମାନ ସେ ଜାତି କ୍ରମଶଃ ହ୍ରାସ ପାଉ ଅଛି । ରଜସ୍ୱଳା ନାରୀ ସମ୍ବନ୍ଧରେ ସେମାନଙ୍କ ଭିତରେ ନାନା ପ୍ରକାର ଭ୍ରାନ୍ତ ଧାରଣା ଅଦ୍ୟାପି ପ୍ରଚଳିତ ଅଛି । ସ୍ତ୍ରୀ ରଜୋବତୀ ହେଲେ ସେ ପୁରୁଷର କୌଣସି ଶଯ୍ୟା ଦ୍ରବ୍ୟ, ପରିଧେୟ ବସନ ଓ ବାସନାଦି ସ୍ପର୍ଶ କରିବ ନାହିଁ, ରନ୍ଧନ କାର୍ଯ୍ୟ କରି ପାରିବ ନାହିଁ ଏବଂ ବାହାରର କୌଣସି ପୁରୁଷର ମୁଖ ଅବଲୋକନ କରିବ ନାହିଁ । ଅଧିକନ୍ତୁ ଏପରି କଥା ପ୍ରଚଳିତ ଅଛି ଯେ ଋତୁମତୀ ନାରୀ କୌଣସି ବନ୍ଧୁକ, ତୀରଧନୁ, ବର୍ଚ୍ଛା ପ୍ରଭୃତି ଅସ୍ତ୍ରଶସ୍ତ୍ର ଛୁଇଁ ପକାଇଲେ ସେ ଅସ୍ତ୍ରଶସ୍ତ୍ରର ଶତ୍ରୁନିଧନ କରିବାର କ୍ଷମତା ଆଉ ରହେ ନାହିଁ ।

## ପୁରୁଷର ସ୍ତନ୍ୟଦାନ

ପିରେନିସ୍ ପର୍ବତମାଳାର ପାଦଦେଶରେ ଫରାସୀ ଓ ସ୍ପେନିସ୍ ଭାଷାଭାଷୀ ଏକ କୃଷକ ସମ୍ପ୍ରଦାୟ ବାସ କରନ୍ତି । ପୂର୍ବେ ସେମାନଙ୍କ ଭିତରେ "କୁଭାଦ"(Couvade) ବୋଲି ଗୋଟିଏ ପ୍ରଥା ପ୍ରଚଳିତ ଥିଲା । ସନ୍ତାନ ପ୍ରସବ ପରେ ନାରୀ ବେଶ ପରିବର୍ତ୍ତନ କରି ଦୈନନ୍ଦିନ ଗୃହ କାର୍ଯ୍ୟରେ ଲାଗି ଯାଉଥିଲା । କିନ୍ତୁ ସ୍ୱାମୀ ମଳିନ ବସନ ପିନ୍ଧି ଅନ୍ଧାର ଘରେ ଆଚ୍ଛାଦନ ପାଇଁ ନବଜାତ ଶିଶୁ ପାଖରେ ଶଯ୍ୟା ଗ୍ରହଣ କରୁଥିଲା । ପୂର୍ବେ କେବଳ ଏହି ଜାତିଭିତରେ ଏ ପ୍ରଥା ଚଳୁ ନଥିଲା । ପୃଥିବୀର ନାନା ସ୍ଥାନରେ ଏପ୍ରକାର ପ୍ରଚଳନ ଥିଲା । ବର୍ତ୍ତମାନ ମଧ୍ୟ ଅନେକ ଅସଭ୍ୟ ଜାତି ମଧ୍ୟରେ ଏ ପ୍ରଥା ଚଳୁ ଅଛି ।



ତିନୋଟି କାରଣରୁ ଏହି ଅଦ୍ଭୁତ ପ୍ରଥାର ଉତ୍ପତ୍ତି । ପ୍ରଥମତଃ ସୃଷ୍ଟିର ଅନାଦି କାଳରୁ ପୁରୁଷ ଜାତି ପରିବାରରେ ଓ ସମାଜରେ ଅଧିପତ୍ୟ ବିସ୍ତାର କରି ଆସୁଅଛି । ପ୍ରାଚୀନ ଯୁଗରେ ମନୁଷ୍ୟ ମନସ୍ତତ୍ତ୍ୱର କୌଣସି ସନ୍ଧାନ ପାଇ ନଥିଲା । ତାର ବାହୁ ବଳ କେବଳ ସାର ଥିଲା ।

ପ୍ରାଚୀନ ଯୁଗର ପୁରୁଷ ନିଜ ସନ୍ତାନ ସହିତ ତାର ଶୋଣିତ ସମ୍ପର୍କ ଅଛି ବୋଲି ପ୍ରମାଣ କରି ପାରୁ ନ ଥିଲା । ଅଜି ମଧ୍ୟ ବୈଜ୍ଞାନିକମାନେ ଠିକ୍ ଭାବେ ପିତା ଓ ସନ୍ତାନର ଶୋଣିତ ସମ୍ପର୍କ ପ୍ରମାଣ କରି ପାରି ନାହାନ୍ତି । ଅଜି ମଧ୍ୟ ଜନନୀର ସ୍ୱୀକୃତି ହିଁ ପିତୃତ୍ୱର ପ୍ରାୟ ଏକ ମାତ୍ର ପ୍ରମାଣ । ସେଇଥି ପାଇଁ ସନ୍ତାନ ସୃଷ୍ଟିରେ ସେ ଯେ ଜଣେ ଅଂଶୀଦାର, ସନ୍ତାନ ଉପରେ ତା'ର ମଧ୍ୟ ଅଧିକାର ଅଛି, ତାହା ପ୍ରମାଣ କରିବା ପାଇଁ ପୁରୁଷ ଅନ୍ତୁଡ଼ି ଶାଳରେ ପ୍ରବେଶ କରି ସନ୍ତାନ-ଜନ୍ମଦାନ ଓ ସ୍ତନ୍ୟଦାନର ଅଭି-ନୟ କରୁଥିଲା ।

ବ୍ରାଜିଲ୍ ଦେଶରେ 'କାକାଇରା' ନାମକ ଏକ ଅସଭ୍ୟ ଜାତି ଅଛନ୍ତି । ସେମାନଙ୍କ ମଧ୍ୟରେ ମଧ୍ୟ ଏହାର ପ୍ରଚଳନ ବହୁଳ । ସେଠାରେ ଶିଶୁର ପିତାକୁ ନବ ପ୍ରସୂତୀର ଖାଦ୍ୟ ଦିଆଯାଏ । ସେ ସମୟରୁ ସେ ଶିଶୁର ମାତା ବୋଲି ପରିଚିତ ହୁଏ । କେତେ ଦୂର ସତ୍ୟ ଏହା କହି ହେଉନାହିଁ, ସେତେବେଳେ କୁଆଡ଼େ ପୁରୁଷର କଚରୁ ଦୁଗ୍ଧ ବାହାରି ହୁଏ । ପିଲା ସେହି ଦୁଗ୍ଧ ଖାଇ ଅଠଦିନ ବଞ୍ଚେ ।

ଦକ୍ଷିଣ ଆମେରିକାରେ କୌଣସି କୌଣସି ଜାତି ମଧ୍ୟରେ ଜାତଶୌଚ କାଳରେ ପିତାକୁ ନାନା ପ୍ରକାର ଶାରୀରିକ କଷ୍ଟ





ସନ୍ତାନକୁ ଦେଇ । ପୁରୁଷକୁ ପ୍ରସୂତାର ଖାଦ୍ୟ ଖାଇବାକୁ ଦିଆଯାଏ । ଏଣୁ ସେ ଅନାହାରରେ ମୃତପ୍ରାୟ ହୋଇଯାଏ । ତାହାପରେ ସମସ୍ତ ଆତ୍ମୀୟଗଣଙ୍କୁ ଗୋଟିଏ ଭୋଜିକୁ ନିମନ୍ତ୍ରଣ କରାଯାଏ । ସେହି ଭୋଜିଭାତର ବ୍ୟୟ ପିତାକୁ ବହନ କରିବାକୁ ପଡ଼ିଲେ ମଧ୍ୟ ସେ ଭୋଜିଭାତରେ ଧାଗ ଧାଏ ନାହିଁ । ତାପରେ ଏହି ଭୋଜିଭାତର ସର୍ବଶ୍ରେଷ୍ଠ ଅନୁଷ୍ଠାନ 'ଲଙ୍କା-ସ୍ନାନ' । ଅଗ୍ରୁଟି ନାମକ ଶଶକ ଜାତୀୟ ଏକ ପ୍ରାଣୀର ଦାନ୍ତ ଦ୍ୱାରା ପିତାର ସମସ୍ତ ଦେହକୁ ଆଞ୍ଚୁଡ଼ି, ଅଞ୍ଚୁଡ଼ା ସ୍ଥାନରେ ତରଳ ଲଙ୍କାବଟା ବୋଳି ଦିଆଯାଏ । ପିତା ଯଦି କାତରୋକ୍ତି ନ କରି ଏହି ଲଙ୍କାସ୍ନାନ-ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯାଏ ତେବେ ତାହାକୁ ଶିଶୁର ବୈଧ-ମାଲିକ ବୋଲି ସ୍ୱୀକାର କରାଯାଏ । ଏହାର କାରଣ ହେଉଛି ଏଥିରୁ ବୁଝାଯାଏ ଯେ ସେ ଶିଶୁକୁ କୌଣସି ଅପଦେବତାର ଆକ୍ରମଣରୁ ରକ୍ଷା କରିବାକୁ ତା'ର ସାମର୍ଥ୍ୟ ଅଛି ।



## ନପୁଂସକ କରିବା ବିଧି

ପ୍ରାଚୀନ ମିଶରୀୟ ପୁରୋହିତମାନଙ୍କ ଜନନଗ୍ରନ୍ଥି ଛେଦନ କରିଦିଆ ଯାଉଥିଲା । କାରଣ ପୁରୋହିତମାନେ ଇନ୍ଦ୍ରିୟ ଜୟ ନ କଲେ ଏକାଗ୍ର ଚିତ୍ତରେ ସାଧନା ଓ ଦେବପୂଜା କରି ପାରିବେ ନାହିଁ । ଇନ୍ଦ୍ରିୟ ଥିଲେ ଇନ୍ଦ୍ରିୟ ଜୟ କରିବା ଏମାନଙ୍କ ପକ୍ଷରେ ଦୁଃସାଧ୍ୟ ।

ଅନେକ ମନେ କରନ୍ତି ତ୍ୱକ୍‌ଛେଦର ପ୍ରଥା ମିଶରୀୟାରୁ ହିଁ ଉତ୍ପତ୍ତି ହୋଇ ଅଛି ।



ଏବେ ଇଟାଲିରେ ଗୋଟିଏ ପ୍ରଥା ଚଳୁଥିଲା ଯେ ପୁଅକୁ ସଙ୍ଗୀତ ନିପୁଣ ଓ ସୁଗାୟକ କରିବାକୁ ହେଲେ ତାଙ୍କୁ ଖୋଜା ଅର୍ଥାତ୍ ନପୁଂସକ କରି ଦିଆ ହେଉଥିଲା । ସେମାନଙ୍କର ଧାରଣା ଥିଲା; ଖୋଜା କରି ଦେଲେ ବାଲ୍ୟକାଳର କୋମଳ ଓ ମଧୁର ସ୍ୱର ବଜାୟ ଥାଏ । ପୂର୍ବକାଳରେ ଇଟାଲିର ଅନେକ ବିଖ୍ୟାତ ଗାୟକ କୁଅଡ଼େ ଖୋଜା ଥିଲେ ବୋଲି ଲୋକ ମୁଖରୁ ଶୁଣାଯାଏ ।



# ଦ୍ୱାଦଶ ଅଧିକରଣ

## ପ୍ରମେହ

"Even under the best possible conditions, and even when the services of a most experienced medical adviser are available one can never tell how a case of venereal infection will shape. The possibility can never be excluded that there will be after effects extending over a lifetime and into subsequent generations."

Dr. J. Dulbrug.

ପ୍ରମେହ ଏକ ମହାନ ରୋଗ । ଆଜିକାଲି ଲୋକସଂଖ୍ୟାର ଶତକଡ଼ା ୫୦ ଭାଗ ଏ ରୋଗରେ ଆକ୍ରାନ୍ତ ହୋଇଅଛନ୍ତି । ଏହା ଦିନୁଦିନ ବଢ଼ୁଛି ସିନା, କମିବାର ଦେଖାଯାଉ ନାହିଁ । ଏହି ରୋଗ କ୍ରାନ୍ତ ହେଲେ ମନୁଷ୍ୟ ଦୁର୍ବଳ ହୋଇଯାଏ । ଦୁର୍ବଳତା ବଶତଃ ଏ ରୋଗରୁ ଜୀବନ ନାଶୀ ଅନେକ ଭୟଙ୍କର ରୋଗର ମଧ୍ୟ ଉତ୍ପନ୍ନ ହୁଏ । ପ୍ରମେହ ରୋଗଗ୍ରସ୍ତ ମନୁଷ୍ୟର ସନ୍ତାନ କଦାପି ସ୍ୱାସ୍ଥ୍ୟବାନ ଓ ନିରୋଗ ହୋଇ ପାରେ ନା । ଏପରି କି ଏହାର ପ୍ରଭାବ ପୁରୁଷ ପୁରୁଷ ଧରି ଭୋଗିବାକୁ ପଡ଼େ । ନିଜଠାରୁ ନିଜର ସ୍ତ୍ରୀ ମଧ୍ୟ ଏହି ରୋଗରେ ସଂକ୍ରାମିତ ହୁଏ, ଯାହା କି ସ୍ତ୍ରୀଠାରେ ସମୟରେ ପ୍ରଦର ରୋଗରେ ପରିଣତ ହୁଏ ।



ପ୍ରମେହ ରୋଗ ଶରୀରରେ ପ୍ରବେଶ କଲେ ମୂତ୍ର ସହିତ ପ୍ରଥମେ ଧଳା ପାଣି ପରି ପଡ଼େ । ତାହା ତାହାଠାରୁ ଅଧିକ ରସ-ପରି ମିଠା ପଦାର୍ଥ ମୂତ୍ର ସହିତ ପଡ଼େ । ଏହାକୁ ଡାକ୍ତର ମତରେ ସୁଗାର କୁହାଯାଏ । କାହାର କାହାର ମଧ୍ୟ ପ୍ରସ୍ରାବର ପୂର୍ବରୁ କିମ୍ବା ପରେ ତା ପରିସ୍ରା ସହିତ ବୀର୍ଯ୍ୟପାତ ହୁଏ । ମୂତ୍ରକୁ ଗୋଟିଏ ପାତ୍ରରେ ରଖିଦେଲେ ତଳେ ଧଳା ଓ ଗାଢ଼ ପଦାର୍ଥ ବସିଯାଏ । କାହାର କାହାର ମୂତ୍ରରୁ ତୀବ୍ର ଗନ୍ଧ ହୁଏ । ବାରମ୍ବାର ମୂତ୍ରତ୍ୟାଗ କରିବାକୁ ଇଚ୍ଛା ହୁଏ । ପ୍ରମେହ ରୋଗାକ୍ରାନ୍ତ ହେଲେ ମନୁଷ୍ୟ ଆଳସ୍ୟ ପରିପୂର୍ଣ୍ଣ, ଦେହ ଭାରି ଭାରି ବୋଧ, ମୁଣ୍ଡରେ ବେଦନା ଓ ମୁଣ୍ଡ ବୁଲାଇବା, କୌଣସି କାର୍ଯ୍ୟରେ ମନ ନ ଲାଗିବା, ଛାତି ଧଡ଼କିବା, ଖାଦ୍ୟରେ ଅରୁଚି, ବମନ, ଅନିଦ୍ରା, ମନ୍ଦାଗ୍ନି, କଫ ବୃଦ୍ଧି ହେବା ଓ କାଶ ଇତ୍ୟାଦି ଲକ୍ଷଣ ପ୍ରକାଶ ପାଏ । ରୋଗ ପୁରୁଣା ହୋଇଗଲେ ମୂର୍ଚ୍ଛା, ପତଳା ଝାଡ଼ା, ଜ୍ୱର, ଅଣ୍ଡକୋଷ ଫାଟିଗଲା ପରି ବୋଧ ଆଦି ଲକ୍ଷଣ ଦେଖାଯାଏ । ଏ ସବୁ ରୋଗ-ପ୍ରବଳ ହେବାର ସୂଚନା ।



## ପ୍ରମେହ ରୋଗ ହେବାର କାରଣ

କଫବର୍ଦ୍ଧକ ଆହାର କରିବା, କୌଣସି ପ୍ରକାର ବ୍ୟାୟାମ ନ କରି ବିଳାସବ୍ୟସନରେ ମାତି ଖାଲି ବସିବା ଓ ଶୋଇ ରହିବା, ଦିବା ନିଦ୍ରା, ଅଧିକ ପରିମାଣରେ ଦହି ଖାଇବା, ଅଧିକ ଗୁଡ଼ ଖାଇବା, ଅଧିକ ପରିମାଣ ମାଛ ଖାଇବା, ମଦ୍ୟପାନ, ଅଧିକ ପରିମାଣରେ ଖଟା ଓ ଲବଣଯୁକ୍ତ ଖାଦ୍ୟ ଖାଇବା, ଏହି ସବୁ କାରଣ

ଗୃହକର୍ତ୍ତା ପ୍ରମେହର ଉତ୍ପତ୍ତି ହୁଏ। ଏହାପରେ, ଏଥିରୁ କାରଣ ବାଦ୍ ମୁଖ୍ୟକାରଣ ହେଉଛି ଅଗାଧ ସ୍ରୋତରେ ବୀର୍ଯ୍ୟପାତ, ଅତି ମୈଥୁନ, ହସ୍ତମୈଥୁନ, ଗୁହ୍ୟମୈଥୁନ, ପଶୁମୈଥୁନ, ବାଳ ବିବାହ ଆଦି ଓ ସର୍ବୋପରି ବେଶ୍ୟାଗମନ। ଆମ୍ଭମାନଙ୍କୁ ଦୁଃଖ ଓ ଲଜ୍ଜାର ସହିତ କହିବାକୁ ପଡୁଛି ଯେ, ଯାହାର ଯୌବନପୁଷ୍ପ ଏ ପର୍ଯ୍ୟନ୍ତ ବି ପ୍ରସ୍ଫୁଟିତ ହୋଇନାହିଁ, ସେହି ୧୪।୧୫ ବର୍ଷର ବାଳକ ମଧ୍ୟ ଏହି ରୋଗରେ ପୀଡ଼ିତ ହେଉଅଛି।

ପ୍ରମେହ ଏକ ବ୍ୟାପକ ଓ ଭୟାବହ ରୋଗ ଅଟେ। ଏହା ଶରୀରେ କି ପ୍ରକାର ଭାବରେ ଅସି ଆକ୍ରମଣ କରେ ତାହା ରୋଗୀ ଜାଣିପାରେ ନାହିଁ। ଏହି ରୋଗ ଆକ୍ରମଣ ହେଲେ କେତେ ମାସ ବାଦ୍ ଲୋକ ତା' ଜାଣି ପାରେ। ରୋଗ ବର୍ଷକର ପୁରୁଣା ହେଲେ ତାହ୍ୟ ଲକ୍ଷଣ ସବୁ ପ୍ରକାଶ ପାଏ। ପ୍ରମେହ ରୋଗରୁ କ୍ଷୟ ରୋଗର ଉତ୍ପତ୍ତି ହୁଏ। ଶରୀରର ସମସ୍ତ ଅବୟବ ଦୁର୍ବଳ ହୋଇ ମନୁଷ୍ୟର କାନ୍ତି ଓ ଆଭା କ୍ରମଶଃ ମିଳାଇ ଯାଏ। ପ୍ରଥମେ ମନ୍ଦାଗ୍ନି ଓ କୋଷ୍ଠବଦ୍ଧତା ଘଟେ। ତାହା ପରେ ପାଣ୍ଡୁରୋଗ, ମୂର୍ଚ୍ଛାକୃଚ୍ଛ୍ର, ଅନ୍ତବୃଦ୍ଧି, ଅଣ୍ଡବୃଦ୍ଧି, ସଂଗ୍ରହଣୀ ଓ କ୍ଷୟ ଆଦି ଦେହରେ ବସା ବାନ୍ଧେ।

ପ୍ରମେହରେ ଦୁଇଟି କଥା ହେଉଛି ମୁଖ୍ୟ। ଗୋଟିଏ ପ୍ରସ୍ରାବ ବାର ବାର ହେବା ଓ ଅନ୍ୟଟି-ସ୍ୱପ୍ନଦୋଷ ଘଟିବା। ସ୍ୱପ୍ନ ତାରଲ୍ୟ ଦୋଷରୁ ସାମାନ୍ୟ ଉତ୍ତେଜନାରେ ବୀର୍ଯ୍ୟପାତ ଘଟି ବୀର୍ଯ୍ୟ ଦୂଷିତ ହୋଇଯାଏ।



## ରୋଗୀର ସାବଧାନତା

ଯେଉଁ ପ୍ରମେହ ରୋଗୀ ନିଜର ରୋଗକୁ ଲୁଚାଇ ରଖେ ସେ ଏହି ଅଧିକରଣ ଆଲୋଚନା କଲେ ନିଶ୍ଚୟ ଏଥିରୁ ସାହାଯ୍ୟ ପାଇବ । ଏହା ମନେ ରଖିବାକୁ ହେବ ଯେ ପ୍ରମେହ କାହାକୁ ଶୀଘ୍ର ଶରୀରରୁ ବୃହତ୍ତମ ପ୍ରଦେଶକୁ ସଂକ୍ରମିତ ହୋଇପାରେ ନାହିଁ । ଧୈର୍ଯ୍ୟ ଓ ଧନବ୍ୟୟ କରି ପ୍ରଥମାବସ୍ଥାରେ ଏହାର ଚିକିତ୍ସା କଲେ ନିଶ୍ଚୟ ଆରୋଗ୍ୟ ହୋଇ ଯିବ ଏବଂ ଡାକ୍ତର କବିରାଜଙ୍କ ଫିସ୍ ଦାଉରୁ ରକ୍ଷା ମିଳିବ । ଦୁଧ, ମିଶ୍ରି ଓ ମହୁ ପ୍ରମେହ ରୋଗୀ ପାଇଁ ଅତ୍ୟନ୍ତ ଆବଶ୍ୟକୀୟ ପଦାର୍ଥ । ତତ୍ପରେ ଆମ୍ଭମାନଙ୍କର ଏଥି ବର୍ଣ୍ଣିତ କବିରାଜି, ହୋମିଓପାଥିକ ଓ ପ୍ରାକୃତିକ ଚିକିତ୍ସା ଆଦରେ ଏ ରୋଗ ନିଶ୍ଚୟ ଭଲ ହୁଏ ।



## ପ୍ରମେହର ପ୍ରକାର ଭେଦ

ପ୍ରମେହ ନାନାପ୍ରକାର ଅଛି । ଆୟୁର୍ବେଦ ୨୦ ପ୍ରକାର ପ୍ରମେହ ସ୍ୱୀକାର କରିଅଛି । ଏଥିଭିତରୁ ୧୦ ଟି କଫଜ, ୬ଟି ପିତ୍ତଜ ଓ ୪ଟି ବାତଜ ବୋଲି ଖ୍ୟାତ । ଏଗୁଡ଼ିକର ଲକ୍ଷଣ ନିମ୍ନରେ ଦିଆଗଲା ।



### କଫଜ ପ୍ରମେହ

୧ । ଉଦକ ପ୍ରମେହ—ଏଥିରେ ପ୍ରସ୍ରାବ ବହୁ ପରିମାଣରେ ହୁଏ । ରଙ୍ଗ ସାଧା, ଗନ୍ଧହୀନ, ଜଳପରି ଓ ଥଣ୍ଡା ହୁଏ ।

୨ । ଇକ୍ଷୁ ପ୍ରମେହ—ମିଠା ପ୍ରସ୍ରାବ ନିର୍ଗତ ହୁଏ ।





୩ । ସାନ୍ଦ୍ର ପ୍ରମେହ—ପ୍ରସ୍ରାବକୁ ଯଦି ରାତିରେ କୌଣସି ପାତ୍ରରେ ରଖି ଦିଆଗଲା ସକାଳକୁ ତାହା ଗାଢ଼ ହୋଇଯାଏ ।

୪ । ସୁରା ପ୍ରମେହ—ପ୍ରସ୍ରାବ ଉପର ସରସ ପରି ସଫା କିନ୍ତୁ ତଳକୁ ଗାଢ଼ ହୋଇଯାଏ ।

୫ । ପିଷ୍ଟ ପ୍ରମେହ—ଗୁଣ୍ଡଜଳଟିଆ ପାଣିଠାରୁ ଅଧିକ ଗାଢ଼ ଓ ବହଳ ଏବଂ ପ୍ରସ୍ରାବ କଲାବେଳେ ରୋମାଞ୍ଚ ଉପସ୍ଥିତ ହେବା ପିଷ୍ଟ ପ୍ରମେହ ଲକ୍ଷଣ ଅଟେ ।

୬ । ଶୁକ୍ର ପ୍ରମେହ—ବୀର୍ଯ୍ୟ ପରି ପ୍ରସ୍ରାବ ହୁଏ ।

୭ । ସିକତା ପ୍ରମେହ—ପ୍ରସ୍ରାବରେ ବାଲିକଣା ପରି କୌଣସି କୌଣସି ପଦାର୍ଥ ପଡ଼େ ।

୮ । ଶୀତ ପ୍ରମେହ—ପ୍ରସ୍ରାବ ଥଣ୍ଡା, ମିଠା ଓ ଅଧିକ ପରିମାଣରେ ହୁଏ ।

୯ । ଶନୈର୍ମେହ—ପ୍ରସ୍ରାବ ଅଳ୍ପ ଓ ଧୀରେ ଧୀରେ ହୁଏ ।

୧୦ । ଲାଳ ପ୍ରମେହ—ମୂତ୍ରରୁ ଲାଳ ପରି ପ୍ରସ୍ରାବ ଲକ୍ଷଣ ହୁଏ ।

## ପିତ୍ତଜ ପ୍ରମେହ

୧୧ । କ୍ଷାର ପ୍ରମେହ—ରସ, ଗନ୍ଧ ଓ ବର୍ଣ୍ଣରେ ପ୍ରସ୍ରାବ କ୍ଷାର ପାଣି ପରି ହୁଏ ।

୧୨ । ନୀଳ ପ୍ରମେହ—ପ୍ରସ୍ରାବ ନୀଳ ରଙ୍ଗ ହୁଏ ।



୧୩ । କୃଷ୍ଣ ପ୍ରମେହ—କଳା ରଙ୍ଗର ସ୍ରାବ ହୁଏ ।
୧୪ । ହରିଦ୍ରା ପ୍ରମେହ—ସ୍ରାବର ରଙ୍ଗ ହଳଦିଆ ହୁଏ ଓ ସ୍ରାବ କାଳ ସମୟରେ ଜଳା ପୋଡ଼ା କରେ ।

୧୫ । ମାଞ୍ଜିଷ୍ଠ ପ୍ରମେହ—ସ୍ରାବ ଝଲତା ରଙ୍ଗ ପରି ଲାଲ୍ ହୁଏ ।
୧୬ । ରକ୍ତ ପ୍ରମେହ—ରକ୍ତ ପରି ସ୍ରାବ ହୁଏ ଓ ତାହା କ୍ଷାର ଓ ଦୁର୍ଗନ୍ଧମୟ ହୁଏ ।

## ବାତଜ ପ୍ରମେହ

୧୭ । ବସା ପ୍ରମେହ—ଚର୍ବି ପରି ସ୍ରାବ ହୁଏ ।
୧୮ । ମଜା ପ୍ରମେହ—ଅସ୍ଥି ଭିତରେ ଥିବା ମଜ୍ଜା ସ୍ରାବରେ ପଡ଼େ ।

୧୯ । କ୍ଷୌଦ୍ର ପ୍ରମେହ—ସ୍ରାବ ସଫା ରଙ୍ଗ ଓ ମିଠା ହୁଏ କେତେବେଳେ ରୁକ୍ଷ ଓ କସୁରିଆ ରଙ୍ଗ ବି ହୁଏ । ଏ ସ୍ରାବରେ ମାଛି ଭଣ ଭଣ ହୁଅନ୍ତି ଓ ପିମ୍ପୁଡ଼ି ମଧ୍ୟ ଲାଗନ୍ତି ।
୨୦ । ହସ୍ତୀ ପ୍ରମେହ—ହାତୀର ମଦ ତୁଲ୍ୟ ସ୍ରାବ ହୁଏ ଓ ତାହା ବନ୍ଧ ରହି ମୁହୁର୍ମୁହୁ ହୁଏ । ବେଳେ ବେଳେ ମଧ୍ୟ ସ୍ରାବ ବନ୍ଦ ହୋଇଥାଏ ।

ଆୟୁର୍ବେଦ କହେ ପ୍ରମେହ କଫରୁ ଉତ୍ପନ୍ନ ହୁଏ । ଯେଉଁ କାରଣରୁ ହେଉ ନାଁ କାହିଁକି, କଫପ୍ରମେହ ସାଧ୍ୟ । ପିତ୍ତଜ ପ୍ରମେହ କଷ୍ଟସାଧ୍ୟ, କିନ୍ତୁ ବାତଜ ପ୍ରମେହ ଅସାଧ୍ୟ ଅଟେ । ପ୍ରମେହର ଉଚିତ





ଚିକିତ୍ସା ନ ହେଲେ ପରିଶେଷରେ ତାହା ଅସାଧ୍ୟ ମଧୁମେହକୁ ପାଲଟି ଯାଏ । 'କଫଜ ପ୍ରମେହରେ ମନ୍ଦାଗ୍ନି, ଅରୁଚି, କାଶ, ବମନ ପ୍ରାଣଶକ୍ତିର ଅଭାବ, ମୂର୍ଚ୍ଛା ଭାବ ଭାବ ବୋଧ ଓ ଦରଜ ଇତ୍ୟାଦି ବିବିଧ ଉପସର୍ଗ ଦେଖାଦିଏ । ପିତ୍ତଜ ପ୍ରମେହରେ ଜ୍ୱର, ଦାହ, ଶୋଷ, ଶରୀର ଦୁର୍ବଳ, ପରିଷ୍କାର ଦରଜ, ମୂର୍ଚ୍ଛା, ଅଣ୍ଡକୋଷ ଦରଜ ଆଦି ଉପଦ୍ରବ ଦେଖାଦିଏ । ବାତଜ ପ୍ରମେହରେ ମଳାବରୋଧ, ହୃଦ୍‌ଶୂଳ, ତଳପେଟ ଦରଜ, ନିଦ୍ରାନାଶ, କ୍ଷୀଣତା ଶ୍ୱାସ, କାଶଆଦି ଉପଦ୍ରବ ଦେଖାଦିଏ । ଶରୀରର ରକ୍ତ ଦୂଷିତ ହୋଇ ଯିବାରୁ ସନ୍ଧି ସ୍ଥାନମାନଙ୍କରେ ବଥ, ଚାନ୍ଦୁ, ବ୍ରଣ ଇତ୍ୟାଦି ଜନ୍ମ ହୁଏ । ଆୟୁର୍ବେଦରେ ଏହାକୁ ପୀଡ଼କା କୁହାଯାଏ । ମୋଟ ଉପରେ ଦେଖିବାକୁ ଗଲେ ପ୍ରମେହ ରୋଗରେ କଫ, ପିତ୍ତ, ବାୟୁ ଶରୀରସ୍ଥ ରସଯୁକ୍ତ ଧାତୁକୁ ଦୂଷିତ କରି ପ୍ରସ୍ରାବ ସଙ୍ଗେ ବାହାର କରାଇ ଦିଅନ୍ତି । ଯେଉଁ ଧାତୁ ଶରୀରର ମୂଳଭିତ୍ତି ସ୍ୱରୂପ, ତାହା ଯଦି ଦୂଷିତ ହୋଇ ଅନବରତ ପ୍ରସ୍ରାବ ସଙ୍ଗେ ବାହାରକୁ ଚାଲିଆସେ ତେବେ ଆଉ ଶରୀର ତିଷ୍ଠିବ କେତେ ଦିନ ?

---

## ସାବଧାନତା

ପ୍ରମେହ-ପୀଡ଼ିତ ବ୍ୟକ୍ତିର ପ୍ରକୃତି ଗରମ କି ଥଣ୍ଡା ଏହା ପ୍ରଥମେ ଠିକ୍ କରିବାକୁ ହେବ । ତା'ର ବୟସ କେତେ, ଶକ୍ତିସମ୍ପନ୍ନ କି ଦୁର୍ବଳ ? ପାଚନ ଶକ୍ତି କିପରି ଅଛି, ତାହା ଉଗ୍ର କି ମୃଦୁ ? ଏ ସବୁ ବିଷୟକୁ ଧ୍ୟାନ ରଖି ଚିକିତ୍ସା ଆରମ୍ଭ କରିବାକୁ ହେବ । ପିତ୍ତଜ ପ୍ରମେହରେ ଶୀତଳ ଓ କଫଜ ପ୍ରମେହରେ ଗରମ



'ଶକସ୍ତା ଲାଭଦାୟକ । ଏଥିରେ ଶୀତଳ କମ୍ବା ଉଷ୍ଣ ଏହି ତନ୍ତ୍ର - ଋତୁର ମଧ୍ୟ ଧ୍ୟାନ ରଖିବାକୁ ହେବ । ଯଦି କୌଣସି ରୋଗୀ ନିଜେ ନିଜେ ଶକସ୍ତେ ହେବାକୁ ଚାହାନ୍ତି, ନିଜର ଉପଯୁକ୍ତ ଯେ କୌଣସି ଗୋଟିଏ ଔଷଧକୁ ଧୈର୍ଯ୍ୟ ପୂର୍ବକ ସେବନ କଲେ ନିଶ୍ଚୟ ଲାଭହେବ । ଔଷଧ ସେବନରେ ଚଞ୍ଚଳବୃଦ୍ଧି ହାନିକାରକ ଅଟେ ।

---

## ଆୟୁର୍ବେଦ ଯୋଗ

( ୧ ) ୬ ମସା ହରଡ଼ା, ୬ମସା ବାହାଡ଼ା, ୬ମସା ଅଁଳା ଓ ୬ମସା ହଳଦ ଏକନ କର ଗୋଟିଏ ମାଟି ପାତ୍ରରେ ଭିଜେଇ ଦିଅ । ସକାଳେ ତାହାକୁ ପରିଷ୍କାର କନାରେ ଛାଣି ଏଥିରେ ୨ତୋଳା ମହୁ ମିଳାଇ ଦୈନିକ ପାନକର । ଏହା ବାଦ ନିମ୍ନରେ ଲେଖା ହୋଇଥିବା ଚୂର୍ଣ୍ଣକୁ ସେବନ କର ।

( ୨ ) ଶ୍ରେଷ୍ଠ ଅଳାଇଚ ବୀଜ, ପିପ୍ପଳୀ, ପାଷାଣଭେଦ ଓ ଶୀଳାଜିତ ପ୍ରତ୍ୟେକକୁ ସମଭାଗରେ ନେଇ ଚୂର୍ଣ୍ଣକର ରଖ । ଏହାକୁ ପାନକୁ ୬ମସା ହିସାବରେ ଗୁଡ଼ଜଳଧୂଆ ଜଳ ସହିତ ଦୈନିକ ସେବନ କର । ଏହା ବାଦ୍ ପୁଣି ତଳେ ଲେଖା ହୋଇଥିବା ଔଷଧକୁ ଦିଅ ।

( ୩ ) କଳାଧୁତୁରା ବୀଜ ତୋ ୪ ଲା, ଅଙ୍କୋଲ ବୀଜ ତୋ ୧୧ ଲା, ଭୂଇଁ କଖାରୁ, ଶ୍ୱେତ ମୂଷଳୀ, କୃଷ୍ଣ ମୂଷଳୀ, ତାଳମଖନ୍, ଅଳାଇଚ, ଲବଙ୍ଗ, ସମୁଦ୍ରଶୋଷ, ପିପଳୀ, ଜାଇଫଳ ଜାଇତ୍ରୀ, ଧନିଆ, କାଫଡ଼, କୁଅଁଶୀ, ଖୁରସାନି, ଗୁଳୁଚ





ପାଚୁଅ, ତାଳମାଖନା, ଗୋଖୁର, ତଳ, ଫିଗଡ଼ା, କାଙ୍କୋଲ, ଏ ସବୁ ପ୍ରତ୍ୟେକ ୨ ତୋଲା, ୧୬ ତୋଲା ଶିମିଳ ଅଠା, ୩ସେର ବାଲସିମ୍ବଳ ମୂଳ । ଏ ସବୁକୁ ଚୂର୍ଣ୍ଣକର ସେ ୨ଆ ର ଗୋଦୁଗ୍ଧରେ ଖୁଆ ତିଆରକର । ଏଥିରେ ତୋ୨ ଲା ଗୋଘୃତ, ତୋ୨ ଲା ମହୁ, ତୋ ୩୦ ଲା ମିଶ୍ରି ମିଳାଇ କର କୌଣସି ଚିନା ବା କାଚ ପାତ୍ରରେ ଢାଙ୍କୁଣି ଦେଇ ରଖିଦଅ । ପ୍ରତିଦିନ ରାତିରେ ଶୋଇବା ଦ୍ବାରୁ ଏଥିରୁ ପାନକୁ ତୋ ୨ ଲା ହିସାବେ ଦୁଧ ସହିତ ସେବନ କଲେ ସବ ପ୍ରକାର ପ୍ରମେହ ନିଶ୍ଚୟ ଭଲହେବ ।

( ୪ ) ଛୋଟ ଅଳାଇଚ, ପାଷାଣଭେଦ, ଶିଳାଜିତ, ଛୋଟ ପିପ୍ପଳୀ ଏସବୁ ସମାନଭାଗରେ ନେଇ ଚୂର୍ଣ୍ଣକର । ଏଥିରୁ ମଠସା ଚୂର୍ଣ୍ଣକୁ ନେଇ ଶାଳୀଧାନ ଚାଉଳଧୁଆ ପାଣି ସହିତ ସେବନ କରିବ । କିମ୍ବା ଗୁଡ଼ ସହିତ ମିଳାଇକର ଗୁଳି ଖାଇଦେବ । ଏହା ଦ୍ବାରା ଭୟାନକ ପ୍ରମେହ ରୋଗ ବି ଆରୋଗ୍ୟ ହୋଇଯାଏ ।

( ୫ ) ନାଗର ମୁଥା, ହରଡ଼ା, ଲୋଧ୍ର, କାଇଫଳ ପ୍ରତ୍ୟେକରୁ ମ୮ ସା ଲେଖା ନେଇ କର ରାତିରେ ଏକପାଅ ପାଣି ସହିତ ମାଟିପାତ୍ରରେ ଭିଜାଇ ଦିଅ ! ସକାଳେ ପାଚନ ତିଆରିକର ପୁଣି ଏଥିରେ ଏକତୋଲା ମହୁ ପକାଇ ପିଅ । ଗରମ ପ୍ରକୃତିର ଲୋକ ପକ୍ଷରେ ପାଚନ ତିଆରି ନ କରି କେବଳ ଛାଣିକର ପିଇବା ଦରକାର । କଫଜ ପ୍ରମେହ ପାଇଁ ଏହା ସର୍ବୋତ୍ତମ ଔଷଧ ।

( ୬ ) ପୋଟଳ ପତ୍ର, ନିମଛେଲି, ଅଁଳା ଓ ଗିଲ ପ୍ରତ୍ୟେକରୁ ମ୮ ସା ରାତିରେ ଏକପାଅ ପାଣିରେ ଭିଜାଇ ସକାଳେ ପାଚନ ତିଆରି କର । ପୁଣି ଏହା ସହିତ ଏକ ତୋଲା ମହୁ ମିଳାଇ ଖାଅ ।



ତାପରେ ସେବନ କର । ଏହି ଯୋଗ ପିତ୍ତଜ ପ୍ରମେହ ପକ୍ଷେ ବଡ଼ ଉପାଦେୟ ।

(୭) ହରଡ଼ା, ବାହାଡ଼ା, ଅଁଳା ଓ ଗୋକ୍ଷୁର ସମଭାଗରେ ନେଇ ଚୂର୍ଣ୍ଣ ତିଆରି କର । ଏଥିରେ ଘିଅ କିମ୍ବା ମହୁ ମାତ୍ରା ଠାରୁ ଏକ-ତୋଳା ପର୍ଯ୍ୟନ୍ତ ମିଳାଇକର ଦ ୨୦ ନ ପର୍ଯ୍ୟନ୍ତ ସେବନ କଲେ ବାତଜ ପ୍ରମେହ ନଷ୍ଟ ହୋଇଥାଏ ।

(୮) ମହୁଲ ଗଛର ଛେଲ୍‌ପ ୬ ମା, ଗୋଲମରିଚ ର ୦ ଟି, ଏ ଗୁଣ୍ଡକ ଭାଙ୍ଗ ପର ଦୋଟି ପାନକଲେ ସବୁ ପ୍ରକାର ପ୍ରମେହ ନଷ୍ଟହୁଏ ।

( ୯ ) ଲୌହ ଭସ୍ମ ମହୁ ସାଥିରେ ନିଜର ଶକ୍ତି ଅନୁସାରେ ସେବନ କର ।



## ପ୍ରାକୃତିକ ଚିକିତ୍ସା

ପ୍ରମେହ ରୋଗ ଆକ୍ରମଣ କଲେ ଦାନ୍ତ, ଆଖି, ତାଳୁ ଆଦି ସ୍ଥାନରେ ମଳ ଉତ୍ପନ୍ନ ହୁଏ । ହସ୍ତ ପାଦ ଜଳା ପୋଡ଼ା କରେ । ଶରୀର ଚିକ୍କଣ ଜଣା ହୁଏ । ଶୋଷ ହୁଏ, ପାଟି ଭିତରୁ ମିଠା ଉଠେ । ଆମ୍ଭେମାନେ ପୂର୍ବେ କହିଅଛୁ ଯେ ଭୋଜନ ବ୍ୟତିକ୍ରମରୁ ମଧ୍ୟ ପ୍ରମେହର ଉତ୍ପତ୍ତି ହୁଏ । ଏଣୁ ପ୍ରମେହରୋଗୀ ନିଜର ଖାଦ୍ୟ ଶୁଦ୍ଧ ସାତ୍ତ୍ୱିକ ଓ ଲଘୁପାକ କରିବା ଉଚିତ । ଅଧିକ ମିଠା ଖାଇବା ଏକବାର ବନ୍ଦ କରିବା ଦରକାର । ଅଠା, ଗୁଜଲ, ସାବୁଦାନା ମୁରବା, ଜାଇଫଳର ମୁରବା, ମିଠା ଫଳ, ସର୍ବତ, ହାଲୁଆ, ଲଡ଼ୁ





ଇତ୍ୟାଦି ଅନ୍ୟାନ୍ୟ ମିଷ୍ଟଦ୍ରବ୍ୟ, କ୍ଷୀର, ଆଳୁ, ଗାଜର, ଶାଲଗମ ମଟର, ସିମ, ମିଅଜ, ଟମାଟୋ ଆଦି ପଦାର୍ଥ ପ୍ରମେହରୋଗଗ୍ରସ୍ତ ଲୋକ ଆଦୌ ନ ଖାଇବା ଉଚିତ । କାରଣ ଏ ସବୁଥିରେ ମିଠା ଭାଗ ଅଧିକ ଥାଏ. ମାଂସ ପରିତ୍ୟାଗ କରିଲେ ଭଲ ହୁଏ । ଏ ରୋଗୀ ପକ୍ଷରେ ଫଳାହାର ଲାଭପ୍ରଦ ଅଟେ । କୋଷ୍ଠବଦ୍ଧ ହେଉଥିଲେ ଫଳ ଖାଇବା ନିତାନ୍ତ ଦରକାର । ସପ୍ତାହରେ ଏକଦିନ ସଂପୂର୍ଣ୍ଣ ଉପବାସ ରହିବାର ଦରକାର । କାରଣ ପାକଯନ୍ତ୍ର ଓ କୋଷ୍ଠ ଯନ୍ତ୍ରକୁ ପୂର୍ଣ୍ଣ ବିଶ୍ରାମ ମିଳେ । ଉପବାସ ରହିବା ଦିନ ଶୋଇ ରହିବ । ପାଣି ଛଡ଼ା ଅନ୍ୟ କିଛି ସେ ଦିନ ଖାଇବ ନାହିଁ । କିନ୍ତୁ ଅଧିକ ପାଣି ପିଇବା ଉଚିତ ନୁହେଁ । ଦରକାର ମନେ କଲେ ୨।୩ ମିନିଟ ବାଦ ଗୁମଟେ କରି ପାଣି ମୁହଁରେ ଦିଆଯାଇ ପାରେ । ଗିଲାସେ ପାଣିରେ ୧୦।୧୨ ବିନ୍ଦୁ କାଗଜିଲେମ୍ବୁ ରସ ପକାଇ ପିଇଲେ ହିତପ୍ରଦ ହୁଏ । ପ୍ରମେହ ରୋଗୀ ପକ୍ଷରେ ପ୍ରାତଃଭ୍ରମଣାଦି ବ୍ୟାୟାମ ବଡ଼ ହିତକର । ସହବାସ ଏକବାର ପରିତ୍ୟଜ୍ୟ । ଲଙ୍କା, ଶୋରିଷ, ଗରମ ମସଲା ଆଦି ବଡ଼ ଅହିତକର ।

ଜଳ ଚିକିତ୍ସା ଏ ରୋଗରେ ସର୍ବୋତ୍କୃଷ୍ଟ ଉପାୟ । ଟବ୍‌ବାଥ୍ ଓ ସିଟ୍‌ଜବାଥ ଦିନରେ ୩।୪ ଥର ନେଲେ ଲାଭ ହୁଏ । ଏହାର ପ୍ରକ୍ରିୟା ଔପସର୍ଗିକ ମେହ ଅଧିକରଣରେ ଦେଖ ।

ସୂର୍ଯ୍ୟରଶ୍ମି ଚିକିତ୍ସାରେ ହଳଦିଆ ବୋତଲପାଣି ଏକ ପାନକୁ ୨୨ ତୋଲା ହିସାବରେ ପ୍ରତିଦିନ ୬ପାନ ଖାଇବା ଦରକାର । ୪ର୍ଥ ଦିନ ନୀଳ ବୋତଲର ପାଣି ଦିନ ଭିତରେ ୬ ପାନ ଖାଇବା



ଅବଶ୍ୟକ । ହଳଦିଆ ବୋତଲ୍ ପାଣିର ଘଟି ନାଭିତଳେ ରଖିବା ଉଚିତ । ଏହି ସକ୍ରୀ ପାଣି ପ୍ରସ୍ତୁତ କରିବାର ପ୍ରଣାଳୀ ଉପସ୍ଥିତି ସେହି ଅଧିକରଣରେ ବିଭାଗ ଦିଆଯାଇ ଅଛି ଦେଖି ନିଅ ।







# ତ୍ରୟୋଦଶ ଅଧିକରଣ

## ଔପସର୍ଗିକ ମେହ

## GONORRHOEA

Twenty-four percent of the cases of blindness in children are also due to gonorrhoea of parental origin, while thirty-one percent are due to inherited syphilis, making a total of 55 p. c. resulting from the combined veneral diseases.

Charles, J. Macalister, M. D.

"It is the most terrible contagion that ever threatened mankind."

Dr. Ricord.

ଏହି ରୋଗ ମୁଖ୍ୟତଃ ଦୂଷିତ-ଯୋନି ରମଣୀ ଅର୍ଥାତ୍ ବେଶ୍ୟା ଗମନ ଯୋଗୁଁ ହିଁ ଘଟିଥାଏ । ବେଶ୍ୟାଗମନ ଦ୍ୱାରା ଯେଉଁ ବିଷ ଶରୀରରେ ପ୍ରବେଶ କରେ ତାହା ବଂଶପରମ୍ପରା କ୍ରମେ ଭୋଗିବାକୁ ପଡ଼େ । ଏହି ରୋଗରୁ ଖୁବ୍ କମ୍ ଲୋକ ଅବ୍ୟାହତି ପାଆନ୍ତି । ଏହା ସଂକ୍ରମିତ ହେଲେ ସହଜରେ ଭଲ ହୁଏ ନାହିଁ । ଏହି ବେଶ୍ୟା ଦେଶ ଓ ସମାଜ ପକ୍ଷରେ ଯେ କେତେ ଭୟଙ୍କର, ଏହାଙ୍କ ଦ୍ୱାରା ଯେତେ ସର୍ବନାଶ ଘଟୁଅଛି, ତାହା ସର୍ବସାଧାରଣେ ଜାଣି ମଧ୍ୟ ଜାଣନ୍ତି ନାହିଁ । ଡାକ୍ତରମାନେ କହନ୍ତି ବେଶ୍ୟା ଅନେକ ପ୍ରକାର ଓ ବିଭିନ୍ନ ପ୍ରକୃତିର ଲୋକ ସଙ୍ଗେ ସହବାସ କରି ତା'ର ଯୋନି ଦୂଷିତ



ହୋଇଯାଏ । ଏହା ସବୁ କାରଣ ବୃଦ୍ଧ ପ୍ରାପ୍ତ ଅଧିକାଂଶ ବେଶ୍ୟା ମେହ, ଉପଦଂଶ, ଓ ଗର୍ମି ଆଦି ଉଦ୍ଧାନକ ଯୌନବ୍ୟାଧିରେ ପୀଡ଼ିତ ଥାନ୍ତି । ପୁରୁଷ ସେମାନଙ୍କ ଶିକାର ହୋଇ ସେହି ରୋଗ ମଧ୍ୟ ଭୋଗେ ।

ଭାରତର ଲୋକସଂଖ୍ୟା ମଧ୍ୟରୁ ପ୍ରାୟ ଦୁଇ କୋଟି ତିରିଶି ଲକ୍ଷ ଯାଏ ଲୋକ ମେହ, ପ୍ରମେହ, ଗର୍ମି ଆଦି ଗୁପ୍ତେନ୍ଦ୍ରିୟ ରୋଗ ଭୋଗୁ ଅଛନ୍ତି ।

ଔପସର୍ଗିକ ମେହ ରୋଗରୁ ଅନେକ ପ୍ରକାର ଭୟଙ୍କର ରୋଗର ଉତ୍ପତ୍ତି ହୁଏ । ଯାହାଙ୍କ ଲୋକକୁ ମୃତ୍ୟୁ ମୁଖକୁ ଟାଣି ନିଏ । ପୁରୁଷକୁ ନପୁଂସକ ଓ ସ୍ତ୍ରୀକୁ ବନ୍ଧ୍ୟା କରିଦିଏ । ଯଦି ବା ସନ୍ତାନ ଉତ୍ପତ୍ତି ହୁଏ, ସେ ସନ୍ତାନ ମଧ୍ୟ ରୋଗୀ ହୋଇଯାଏ । କେତେକ ଦେଶରେ ପରୀକ୍ଷା କରି ଦେଖା ଯାଇ ଅଛି ଯେ ଅଧିକାଂଶ ଜନ୍ମାନ୍ଧ ବାଳକ ଏହି ରୋଗଗ୍ରସ୍ତ ମାତା ପିତାର ସନ୍ତାନ ।

ଭାରତୀୟ ପ୍ରାଚୀନ ଆୟୁର୍ବେଦ ଗ୍ରନ୍ଥରେ ଏ ରୋଗର ନାମ ଦେଖିବାକୁ ମିଳେ ନାହିଁ । ଏଣୁ ଏହା ଭାରତୀୟ ରୋଗ ନୁହେଁ ବୋଲି ଜଣାଯାଏ । ପ୍ରାୟ ୧୬ଶ ଶତାବ୍ଦୀରେ ଏହା ଆମ ଦେଶରେ ଆବିର୍ଭୂତ ହୋଇଥିଲା । କେହି କେହି ବୈଦ୍ୟ ଏହାକୁ ପ୍ରମେହ ବୋଲି କହନ୍ତି । କେହି କେହି ଏହାକୁ ମୂତ୍ରକୃଚ୍ଛ୍ର, ଓ ମହାଘାତର ନାମାନ୍ତର ବୋଲି ମନେ କରନ୍ତି । କିନ୍ତୁ ଅଧିକାଂଶ ବୈଦ୍ୟ ଏ ରୋଗକୁ ଅନ୍ତର୍ଗତ ଉପଦଂଶ, ଔପସର୍ଗିକ ମେହ ଅର୍ଥାତ୍ ଭିତର ଅତଶକ ବୋଲି କହନ୍ତି । ଉପଦଂଶର ଘା' ବାହାରେ ହୁଏ, ମାତ୍ର ଏ ରୋଗରେ ଘା' ମୂତ୍ର ନଳୀ ଭିତରେ ହୁଏ ।

---





## ମୂତ୍ରକୃଚ୍ଛ୍ର ଓ ମୂତ୍ରାଘାତ

ଆୟୁର୍ବେଦ ମୂତ୍ରାଘାତ ଓ ମୂତ୍ରାକୃଚ୍ଛ୍ର କୁହି ଔପସର୍ଗିକ ମେହ-ରୋଗ ବର୍ଣ୍ଣନା କରେ । ଯଦ ମଳ ମୂତ୍ରର ବେଗ ରୋକିବା ବା ବୀର୍ଯ୍ୟପାତକୁ ରୋକିବା ଦୋଷରୁ ଏହି ରୋଗ ଉତ୍ପନ୍ନ ହୁଏ ତେବେ ତାହାକୁ ମୂତ୍ରାଘାତ ଏବଂ ଅନ୍ୟ କୌଣସି କାରଣ ଦୋଷରୁ ଯଦ ହୁଏ ତେବେ ତାହାକୁ ମୂତ୍ରକୃଚ୍ଛ୍ର କହନ୍ତି । ମୂତ୍ରାଘାତରେ ପ୍ରସ୍ରାବ ବନ୍ଦ ହୋଇଯାଏ, କିନ୍ତୁ ଦରଜ କମ ହୁଏ । ମୂତ୍ରକୃଚ୍ଛ୍ରରେ ପ୍ରସ୍ରାବ ବନ୍ଦ ହୁଏ ନାହିଁ ଓ ଅଧିକ ବେଦନା ହୁଏ । ମୂତ୍ରାଘାତ ୧୩ ପ୍ରକାର ହୋଇଥିବା କହନ୍ତି । ଯଥା—

୧—ବାତକୁଣ୍ଡଳିକା, ୨—ବାତଲଷ୍ଠୀ, ୩—ବାତବସ୍ତି ୪—ମୂତ୍ରାତୀତ, ୫—ମୂତ୍ରଜଠର, ୬—ମୂତ୍ରୋତ୍ସଙ୍ଗ, ୭—ମୂତ୍ରକ୍ଷୟ ୮—ମୂତ୍ରଗ୍ରନ୍ଥି, ୯—ମୂତ୍ରଶୁକ୍ର, ୧୦—ଉଷ୍ଣବାତ, ୧୧—ମୂତ୍ରସାଦ ୧୨—ବିଡ଼ବିଘାତ, ୧୩—ବସ୍ତିକୁଣ୍ଡଳିକା । ଏଗୁଡ଼ିକର ଲକ୍ଷଣ ନିମ୍ନରେ ଦିଆଗଲା ।

(୧)—ମୂତ୍ରସଞ୍ଚିତ ବାୟୁ ଏକତ୍ର ହୋଇ ମୂତ୍ର ବାହାରକୁ ଆସିବାର ଶକ୍ତିକୁ ରୋକିଦିଏ ଓ ମୂତ୍ରାଶୟରେ ବାୟୁ କୁଣ୍ଡଳାକାର ହୋଇ ବୁଲେ । ଏଥିଯୋଗୁ ଏହାକୁ ବାତକୁଣ୍ଡଳିକା କହନ୍ତି । ମଳମୂତ୍ରାଦିର ବେଗକୁ ବଳ ପୂର୍ବକ ବନ୍ଦ କରିବା ହେତୁ ବସ୍ତିରେ ପୀଡ଼ା ଜାତ ହୁଏ । ଏଣୁ ରୋଗୀକୁ ବାରମ୍ବାର ପ୍ରସ୍ରାବ ମାଡ଼େ । ପୀଡ଼ାହେତୁ ସେ ପୂର୍ଣ୍ଣ ପ୍ରସ୍ରାବ କରି ନ ପାରି ଥର ଥର କରି ଅଳ୍ପ ଅଳ୍ପକରେ ।
(୨)—ବାୟୁ କୁପିତ ହୋଇ ଗୁହ୍ୟ ଓ ମୂତ୍ରାଶୟରେ ପ୍ରବେଶ କରିବା ହେତୁ 'ବାତଲଷ୍ଠୀ' ହୁଏ ଓ ପୀଡ଼ା ମଧ୍ୟ ଦାରୁଣ ହୁଏ ।



(୩) ଯେଉଁମାନେ ଜଳ ପୂର୍ବକ ମୂତ୍ରକୁ ରୋଧ କରନ୍ତି ସେମାନଙ୍କର ବାତବସ୍ତି ହୁଏ । ଏହାର ପରିଣାମ ହେଉଛି ଯେ ବାୟୁ କୁପିତ ହୋଇ ମୂତ୍ରାଶୟର ମାର୍ଗ ବନ୍ଦ କରିଦିଏ । ପେଟ ଓ ମୂତ୍ରାଶୟରେ ଅସହ୍ୟ ବେଦନା ବୋଧହୁଏ । ଏହାର ଉପସର୍ଗ ବଢ଼ ଚଳେନ ।

(୪) ପ୍ରସ୍ରାବ କରିବା ସମୟରେ ଖୋଲା ଭାବରେ ମୂତ୍ର ବହିର୍ଗତ ନ ହୋଇ ଧୀରେ ଧୀରେ ଅଳ୍ପ ଅଳ୍ପ ହୁଏ । ଏହାକୁ ମୂତ୍ରାଘାତ କହନ୍ତି ।

(୫—ମୂତ୍ରଜଠରରେ ନାଭି ତଳେ ଦରଜ ହୁଏ । ଏହି ବେଗ ରୋଧ କରିବାରୁ ବାୟୁ କୁପିତ ହୋଇ ଏପରି ଘଟେ ।

(୬) ଲିଙ୍ଗର ଅଗ୍ର ଭାଗରେ କିମ୍ବା ମୂତ୍ରାଶୟରେ ପ୍ରସ୍ରାବ ଅଟକି ଯିବା ହେତୁ ରୋଗୀ ଯୋର କରି ପ୍ରସ୍ରାବ କଲେ ଲିଙ୍ଗାଗ୍ର କିମ୍ବା ମୂତ୍ରାଶୟ ଉଖମ ହୁଏ । ଏଣୁ ମୂତ୍ର ସହିତ ରକ୍ତପାତ ହୁଏ ଓ ବିଶେଷ କଷ୍ଟ ହୁଏ । ଏ ଲକ୍ଷଣକୁ ମୂତ୍ରୋତ୍ସଙ୍ଗ କୁହାଯାଏ ।

(୭)ଶରୀର ଥକାମରା ହୋଇଯାଏ । ତୃଷ୍ଣା ଅଧିକ ବଢ଼ିଯାଏ । ଏପରି ଦଶାରେ ପ୍ରସ୍ରାବ ଶୁଖିଯାଏ । କଳାପୋଡ଼ା ସହ ସାମାନ୍ୟ ପ୍ରସାବ ହୁଏ । ଏହାକୁ ମୂତ୍ରକ୍ଷୟ ବୁଝିବାକୁ ହେବ ।

(୮) ମୂତ୍ରାଶୟର ମୁହଁରେ ଗୋଟିଏ ଶ୍ଲେଷ୍ଠ ଗୋଟିକା ହୋଇ ତାହା ଅତ୍ୟନ୍ତ ଦରଜ ହୁଏ । ତାହାକୁ ମୂତ୍ରଗ୍ରନ୍ଥି ବୋଲାଯାଏ ।

(୯)ପ୍ରସ୍ରାବ ମୂତ୍ରାଶୟରେ ଭରି ରହିଥିବା ସମୟରେ, ତାକୁ ଅଟକାଇ ଯେ ମୈଥୁନ କରେ ତାକୁ ମୂତ୍ରଶୁକ୍ର ହୋଇଯାଏ । ଏଣୁ ପ୍ରସାବର ପୂର୍ବରୁ କିମ୍ବା ପରେ ଗୋଳିଆ ପାଣି ପରି ବୀର୍ଯ୍ୟ ପଡ଼େ ।





(୧୦)ଅତ୍ୟଧିକ ବ୍ୟାୟାମ କଲେ ଉଷ୍ଣବାତର ଉତ୍ପତ୍ତି ହୁଏ । ଅଧିକ ଖରାରେ ଯା'ଆସ କଲେ, ପାଦରେ ଅଧିକ ଚାଲିଲେ, ପିତ୍ତ କୁପିତ ହୋଇ ଯାଇ ମୂତ୍ରାଶୟ ଓ ଅଣ୍ଡକୋଷରେ ଜଳାପୋଡ଼ା କରାଏ । ପ୍ରସ୍ରାବର ରଙ୍ଗ ହଳଦିଆ ଓ ଲାଲ ହୋଇ ଯାଏ ଏବଂ ବାରମ୍ବାର ପ୍ରସ୍ରାବ ହୋଇ ସେହି ସମୟରେ କଷ୍ଟ ବୋଧ ହୁଏ ।

(୧୧)ମୂତ୍ରସାଦରେ ହଳଦିଆ, ଲାଲ, ଧଳା ଓ ଗାଢ଼ ପ୍ରସ୍ରାବ ହୁଏ ଏବଂ ପ୍ରସ୍ରାବ ତ୍ୟାଗ ସମୟରେ ଦରଜ ସହିତ ଜଳାପୋଡ଼ା ମଧ୍ୟ ହୁଏ । ପ୍ରସ୍ରାବ କରିବା ସ୍ଥାନ ଶୁଖିଗଲେ ସେଠାରେ ଧଳା ହଳଦିଆ କିମ୍ବା ମାଟିଆ ଦାଗ ପଡ଼ିଯାଏ ।

(୧୨)ସ୍ରାବର ବେଗକୁ ରୋଧ କଲେ ବସ୍ତିବାତ ନାମକ ମୂତ୍ରାଘାତ ଉତ୍ପତ୍ତି ହୁଏ । ବାୟୁ ମୂତ୍ରମାର୍ଗକୁ ଚାଲିଯାଏ । ପ୍ରସ୍ରାବ କରିବା ସମୟରେ ଅତ୍ୟନ୍ତ ପୀଡ଼ା ହୋଇ ମୂତ୍ରରେ ବହୁତ ଦୁର୍ଗନ୍ଧ ଜଣାଯାଏ ।

(୧୩)ଶୀଘ୍ର ଶୀଘ୍ର ଚାଲିଲେ, ଅତିରିକ୍ତ ପରିଶ୍ରମ କରିଲେ କିମ୍ବା ହଠାତ୍ କୌଣସି ଚୋଟ ଲାଗିଲେ ମୂତ୍ରାଶୟ ଉପରକୁ ଉଠି ଯାଏ ଏବଂ ଗର୍ଭପରି କଠିନ ବୋଧ ହୁଏ । ରୋଗୀର ପ୍ରସ୍ରାବ ରହି ରହି ବିନ୍ଦୁ ବିନ୍ଦୁ କରି ହୁଏ । ପୀଡ଼ା ସହ ଜଳା ପୋଡ଼ା କରି କମ୍ପ ହୁଏ । ମୂତ୍ରାଶୟ ଟାଣ ହୋଇଯାଏ ପେଟରେ ଦରଜ ବୋଧ ହୁଏ । ଏ ଲକ୍ଷଣକୁ ବସ୍ତିକୁଣ୍ଡଳିକା କହନ୍ତି ।

ମୂତ୍ରକୃଚ୍ଛ୍ର ଆଠ ପ୍ରକାର ଅଟେ । ଯଥା:—

(୧) ବାତଜ, (୨) ପାତଜ, (୩) କଫଜ, (୪) ସନ୍ନିପାତଜ (୫) ଶଲ୍ୟଜ, (୬) ଅସ୍ମରୀ, (୭) ଶୁକ୍ରଜ, ଓ (୮) ପୁଷ୍ପଜ ।



୧— ବାତଜ ମୂତ୍ରକୃଚ୍ଛ୍ର—ଉରୁ, ବେପଣ୍ଡା, ଲିଙ୍ଗ ଓ ଜଙ୍ଘରେ ପୀଡ଼ା ବୋଧହୁଏ । ମୂତ୍ର ବାରମ୍ବାର ଅଳ୍ପ ଅଳ୍ପକରି ହୁଏ ।

୨—ପିତ୍ତଜ ମୂତ୍ରକୃଚ୍ଛ୍ର—ପ୍ରସ୍ରାବର ରଙ୍ଗ ହଳଦି ବର୍ଣ୍ଣ ହୁଏ । ବହୁତ ଗରମ ଓ ବାରମ୍ବାର ହୁଏ ଏବଂ ମୂତ୍ରତ୍ୟାଗ ବେଳେ ଅତ୍ୟନ୍ତ ପୀଡ଼ା ବୋଧ ହୁଏ ।

୩—କଫଜ ମୂତ୍ରକୃଚ୍ଛ୍ର—ମୂତ୍ରାଶୟ ଓ ଲିଙ୍ଗରେ ଭାରି ଭାରି ବୋଧ ହୁଏ । ମୂତ୍ର ଚିକ୍କଣ ହୁଏ ଓ ତ୍ୟାଗ ସମୟରେ ଜଳା ଥୋଡ଼ା କଟେ ।

୪—ସନ୍ନିପାତଜ ମୂତ୍ରକୃଚ୍ଛ୍ର—ଏଥିରେ ଉପର ଲିଖିତ ୧, ୨, ୩ ନମ୍ବର ଲକ୍ଷଣ ଗୁଡ଼ିକ ସମ୍ମିଳିତ ଭାବରେ ଦେଖାଦିଏ । ଏହା ଅସାଧ୍ୟ ହେଲେ ହେଁ ଆରୋଗ୍ୟ ହେବାକୁ କଷ୍ଟସାଧ୍ୟ ଅଟେ ।

୫—ଶଲ୍ୟଜ ମୂତ୍ରକୃଚ୍ଛ୍ର—ଏହା କୌଣସି ଅସ୍ତ୍ର ଶସ୍ତ୍ର ଆଘାତର କୌଣସି ଚୋଟ ଲାଗିଲେ ଏହା ଉତ୍ପନ୍ନ ହୁଏ । ଏହାକୁ ମଧ୍ୟ ଘାତ ମୂତ୍ରକୃଚ୍ଛ୍ର କହାଯାଏ । ଏହାର ଉପଦ୍ରବ ୩ ନମ୍ବର ପରି ଅଟେ ।

୬—ଅଶ୍ମରୀ ମୂତ୍ରକୃଚ୍ଛ୍ର—ମୂତ୍ରାଶୟରେ ପଥର ଉତ୍ପନ୍ନ ହେବାରୁ ଏହି ରୋଗ ହୁଏ । ପଥର ଯୋଗୁ ମୂତ୍ର ବଡ଼ କଠିନରେ ବାହାରେ ଓ ଦାହ ହୋଇ କଷ୍ଟ ଦିଏ ।

୭—ଶୁକ୍ରଜ ମୂତ୍ରକୃଚ୍ଛ୍ର—ବୀର୍ଯ୍ୟ ଦୂଷିତ ହୋଇଯାଇ ମୂତ୍ରନଳି ଭିତରେ ଚାଲି ଯିବା ଦ୍ୱାରା ଏହି ରୋଗର ଉତ୍ପନ୍ନ ହୁଏ । ବସ୍ତି ଓ ଲିଙ୍ଗରେ କଠିନ ପୀଡ଼ା ହୁଏ । ପ୍ରସ୍ରାବ ସହିତ ବୀର୍ଯ୍ୟ ମଧ୍ୟେ ପଡ଼େ ।





୮—ପୁରୀଷଜନ୍ୟ ମୂତ୍ରକୃଚ୍ଛ୍ର—ଏହା ମଳ ବେଗ ରୋକିବା ହେତୁ ଏହାର ଉତ୍ପତ୍ତି ହୁଏ । ମଳର ବେଗ ରୋଧ କରିବାରୁ ବାୟୁର ଗତି ଉଲଟି ହୋଇ ପେଟରେ ଦରଜ ବୋଧ ହୁଏ ।



## ଔପସର୍ଗିକ ମେହର ଉତ୍ପତ୍ତିର କାରଣ ଓ ଲକ୍ଷଣ

ପ୍ରକୃତି ଦେବୀ ଯେଉଁ ଜ୍ଞାନ ପଶୁଙ୍କୁ ଦେଇଅଛନ୍ତି ସେ ଜ୍ଞାନ ମନୁଷ୍ୟଙ୍କୁ ଦେଇନାହାଁନ୍ତି । ପୁରୁଷପଶୁ ସ୍ତ୍ରୀପଶୁର ମୂତ୍ରେନ୍ଦ୍ରିୟ ଆଘ୍ରାଣ କରି ମୈଥୁନ କରିବାର ଯୋଗ୍ୟ କି ନା, ଏହା ଜାଣିପାରେ ଏବଂ ସେହି ଅନୁସାରେ ଆଚରଣ କରେ । କିନ୍ତୁ ଜୀବମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଅଭିମାନ କରି ମାନବ ଏତିକି ବିଷୟରେ ମଧ୍ୟ ଧାରଣା ରଖେନାହିଁ । ସେ ଶୁଦ୍ଧେଁ ଯେ କୌଣସି ପ୍ରକାରେ ବୀର୍ଯ୍ୟପାତ କରି ସୁଖ ଅନୁଭବ କରିବା ।

ନାରୀର ଋତୁ ବହୁଥିବା ସମୟରେ ମୈଥୁନ ଆଚରଣ କଲେ ଏହି ରୋଗ ଉତ୍ପନ୍ନ ହୁଏ । ଏଣୁ ଆମ ଶାସ୍ତ୍ରରେ ଋତୁମତୀ ସ୍ତ୍ରୀଗମନ ନିଷେଧ କରାଯାଇ ଅଛି ।

କିନ୍ତୁ ବେଶ୍ୟାମାନେ ଟଙ୍କା ରୋଜଗାର ଲାଳସାରେ ଋତୁ ସମୟରେ ମଧ୍ୟ ନାଗରଙ୍କୁ ଘରେ ରଖନ୍ତି । ସେହି ବହୁ ପୁରୁଷଗାମିନୀ ଦୋଷଯୁକ୍ତା ଯୋନି ଏବଂ ତତ୍ସହ ଋତୁକାଳ, ଏହି ଉଭୟ ଦୁର୍ଗୁଣ ଯୋଗୁ ପୁରୁଷଙ୍କୁ ଏହି ରୋଗ ଆକ୍ରମଣ କରିବା ଯଥେଷ୍ଟ ସମ୍ଭାବନା ।



ଏହି ରୋଗର ଉତ୍ପତ୍ତି ଲକ୍ଷଣ ସେ ଥିଲ ଚରବାର ପରଦିନ ଠାରୁ ଦଶଦିନ ମଧ୍ୟରେ ପ୍ରକାଶ ହୁଏ । ରୋଗ ଆରମ୍ଭରେ-ମୂତ୍ରନଳୀର ମୁହଁ ପାଖରେ କିଛି ଘଷି ଘଷି ଭାବ ଅନୁଭୂତ ହୁଏ ଓ ସାମାନ୍ୟ ଜଳାପୋଡ଼ା ବୋଧ ହୁଏ । ତତ୍ପରେ ରୋଗ କ୍ରମେ ବଢ଼ିବାକୁ ଲାଗେ । ମୂତ୍ର ଗନ୍ଧମ ବୋଧହୁଏ ଓ ଲିଙ୍ଗରୁ ପୂଜ ବହେ । ଏହି ପୂଜ ପ୍ରଥମେ ପତଳା ହୋଇ ପରେ ଗାଢ଼ ହୋଇ ଯାଏ । ଏହାର ରଙ୍ଗ ପ୍ରଥମାବସ୍ଥାରେ ଧଳା ହୁଏ, ତତ୍ପରେ କଷ୍ଟୁରିଆ ବା ଟିକିଏ ହଳଦିବର୍ଣ୍ଣ ହୋଇଯାଏ । ପୂଜ ପ୍ରାୟ ଇନ୍ଦ୍ରିୟର ମୁହଁରେ ଜମି ରହେ ଓ ଲିଙ୍ଗ ମୁଣ୍ଡର ଚର୍ମ ଏଥି ସହିତ ଲାଗି ରହେ । ଇନ୍ଦ୍ରିୟ ଫୁଲି ଯାଇ ସାମାନ୍ୟ ଲାଲବର୍ଣ୍ଣ ହୋଇ ଯାଏ । ଏହା ହେଉଛି ଆରମ୍ଭିକ ଲକ୍ଷଣ । ଏହି ପ୍ରକାର ୧୦।୧୨ଦିନ ଯାଏ ରହେ ଏବଂ ଏତେବେଳେ ରୋଗ ଲିଙ୍ଗ ମୁଖରେ ଆବଦ୍ଧ ଥାଏ ।

ତତ୍ପରେ କ୍ରମେ ରୋଗ ଭିତରକୁ ପ୍ରବେଶ କରେ । ମୂତ୍ର-ନଳୀ ଭିତର ଫୁଲିଯାଏ । ପ୍ରସାବ କରିବା ସମୟରେ କଷ୍ଟ ବୋଧ ହୁଏ । ଘା କ୍ରମେ କ୍ରମେ ଭିତରକୁ ମାଡ଼େ । ଏଣୁ ପ୍ରସ୍ରାବ ସମୟରେ ରୋଗୀକୁ ବଡ ବାଧେ, ତେଣୁ ସେ ମୂତ୍ରରୋଧ କରି ରହି ରହି କରି ଅଳ୍ପ ଅଳ୍ପ ପରିସ୍ରା କରେ । ସାରା ଲିଙ୍ଗ ଦରଜ ହୋଇ ଯିବା ହେତୁ ସେଥିରେ ଲୁଗା ଲାଗିଲେ ମଧ୍ୟ କଷ୍ଟ ଅନୁଭୂତ ହୁଏ ।

ସାରା ଇନ୍ଦ୍ରିୟ ଭିତର ଘା ହୋଇ ପୂଜ ହୋଇଯିବା ହେତୁ ଉତ୍ତେଜନା ସମୟରେ ତାହା ଆଉ ସିଧା ଭାବରେ ରହେ ନାହିଁ । ତାହା ଧନୁ ପରି ବଙ୍କା ହୋଇଯାଏ । ଲିଙ୍ଗ ଉତ୍ତେଜନା ସମୟରେ ମଧ୍ୟ ଭାରି କଷ୍ଟ ହୁଏ । ବୀର୍ଯ୍ୟପାତ ସମୟରେ ପ୍ରାଣ ଗଲା ଗଲା ପରି ବୋଧ ହୁଏ ।





କେତେକ ରୋଗ ପୁରୁଣା ହେଲେ ମୂତ୍ରାଶୟକୁ ମଧ୍ୟ ଆକ୍ରମଣ କରେ । ଲିଙ୍ଗର ମୂଳ ଅଣ୍ଡ ଦଉଡ଼ି କମିଯାଇ ଭିତର ଅଂଶରେ ଦୁଃଖ ହୁଏ । ଏଣୁ ପୁଜ ବାହାରିବା କମିଯାଏ । ଉଦ୍ଦେଶ୍ୟ ଫୁଲାଟିକେ କମି-ଯାଇ ଜଣା ଯୋଉଛି କମ ବୋଧ ହୁଏ । ଏ ସମୟରେ ରୋଗୀମାନେ ଯେ ତାହାର ରୋଗ କମି ଯାଉଅଛି, କିନ୍ତୁ ତା ନୁହେଁ । ଏ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ଯେ ଚିକିତ୍ସା କରା ନ ଯାଏ କିମ୍ବା ପୁଣି ବିଷୟ ଭୋଗରେ ମନ ବଳାଯାଏ ତେବେ ସେ ନିଜେ ଓ ତାର ସ୍ତ୍ରୀ ଏବଂ ଭବିଷ୍ୟତ ବଂଶଧର ଚିରଦିନ ପାଇଁ ନଷ୍ଟ-ସ୍ୱାସ୍ଥ୍ୟ ହୋଇଯାନ୍ତି ।

ଔପସର୍ଗିକ ମେହ ତୁଲ୍ୟ ଭୟଙ୍କର ରୋଗଗ୍ରସ୍ତ ହୋଇ କେତେ କେତେ ଲୋକ ପାଗଳ ହୋଇ ଯାଇଛନ୍ତି, କେତେ ଲୋକ ନପୁଂସକ ହୋଇ ଯାଇଛନ୍ତି ଓ କେତେକ ଅନ୍ଧ ହୋଇ ଯାଇ ସାରା ଜୀବନ କଷ୍ଟ ଭୋଗ କରିଛନ୍ତି । ପରିଶେଷରେ ମୃତ୍ୟୁ ଆସି ତାଙ୍କୁ ସେ ଯନ୍ତ୍ର-ଣାରୁ ମୁକ୍ତ କରେ । ଏହି ରୋଗ କେଉଁଠୁ ଯେଉଁ ସବୁ ଅନ୍ୟ ରୋଗର ଉତ୍ପତ୍ତି ହୁଏ ତା'ର ବିବରଣୀ ନିମ୍ନରେ ଦିଆଗଲା ।

## ପୁରାତନ ମେହ ( GLEET )

ଏଥିରେ ଯଦି ଗରମ ପଦାର୍ଥ ଅଧିକ ପରିମାଣରେ ଖିଆଯାଏ ତେବେ ପୁଜ ବେଶୀ ଚାଢ଼ ହୋଇଯାଏ । ଏହା ଯେଉଁ ଗାଢ଼ ପୁଜ ସ୍ରାବ ହୁଏ ତାହାକୁ ଅଜ ପୁଜ ବୋଲି ଧରିବାକୁ ହେବ ନାହିଁ । ତାହା ଦେହର ସାରାଂଶଗୁଡ଼ିକ ପୁଜ ଆକାରରେ ବାହାରି ଯାଉଛି ବୋଲି ଧରିବାକୁ ହେବ । କାରଣ ସେତେବେଳକୁ ରୋଗ ପୁରାତନ ହୋଇ ଅସ୍ଥି-ମଜ୍ଜାଗତ ହୋଇଥାଏ ।

———



## ପ୍ରସ୍ରାବରୋଧ

ପୁରାତନ ମେହ ପରେ ପ୍ରସ୍ରାବରୋଧ ରୋଗର ଉତ୍ପନ୍ନ ହୁଏ । ପ୍ରସ୍ରାବରୋଧକୁ ଇଂରାଜୀରେ ଷ୍ଟ୍ରିକ୍‌ଚର ଅଫ ୟୁରେଥ୍ରା ( tric ture of urethre ) କୁହାଯାଏ । ଏ ରୋଗରେ ମୂତ୍ରନଳି ଭିତରେ ଘାଆ ଓ ପୂଜରସକୁ ଶୁଖିଯାଏ ଏବଂ ମୂତ୍ରନଳି ଭିତର ମାଂସ ପେଶୀ ଭଳି ଫୁଲି ଉଠି ମୂତ୍ରମାର୍ଗ ରୋଧ କରିଦିଏ । ଏହାର ପରିଣାମ ସ୍ୱରୂପ ମୂତ୍ର ବାହାରକୁ ଆସିବାକୁ ବହୁକଷ୍ଟରେ ବାଟପାଏ । ପ୍ରସ୍ରାବର ଧାର ପତଳା ହୋଇଯାଏ । କେତେବେଳେ ୨।୩ ଧାର ହୋଇ ପ୍ରସ୍ରାବ ହୁଏ, କେତେବେଳେ ବା ବୁନ୍ଦା ବୁନ୍ଦା କରି ହୁଏ । ଏଥିରୁ ରୋଗୀ ବହୁକଷ୍ଟ ଅନୁଭବ କରେ । ରୋଗୀ କହୁଥାଏ ପୁଣି ସ୍ୱାମୀରେ ପରୀକ୍ଷା କରିବା ସମୟରେ । ଏ ସମୟରେ ଅନେକ ରୋଗୀ ପ୍ରସ୍ରାବ ଭୟରେ ପାଣି କମ୍ ପିଅନ୍ତି । ଏହା ଦ୍ୱାରା ଆହୁରି ଅସୁବିଧା ଘଟେ । ପ୍ରସ୍ରାବ ଭିତରେ ଜମିଯିବା ହେତୁ ରୋଗ ଗୁରୁତ୍ତର ବଢ଼ିଯାଏ । ଏ ଅବସ୍ଥାରେ ଡାକ୍ତରମାନେ ରବର ନଳି ପ୍ରବେଶ କରାଇ ପରୀକ୍ଷା କରନ୍ତି ।

---

## ବାଗୀ ( BUBO )

ଏ ରୋଗ ମଧ୍ୟ ଏହି ଉପଦଂଶିକ ମେହ ରୋଗରୁ ଉତ୍ପନ୍ନ ହୁଏ । ଯେତେବେଳେ ଲିଙ୍ଗେନ୍ଦ୍ରିୟ ଫୁଲି ଯାଇ ଲସିଦିଏ ଓ ଧରଜ ହୁଏ, ସେହି କୋଷରୁ ଗିଲଟି ମଧ୍ୟ ଫୁଲିଯାଏ । ଏହାକୁ ବାଗୀ କହନ୍ତି । ଉପଦଂଶ ରୋଗରେ ମଧ୍ୟ ଏହି ବାଗୀ ପଡ଼େ । ଡାକ୍ତର ମେକ୍‌ଫିଡ଼ନ୍ କହନ୍ତି—"ଉପଦଂଶ ଘାରେ କଷ୍ଟିକ ଲଗାଇବା ହେତୁ





ଓ ଔପସର୍ଗିକ ରୋଗ ଯୋଗୁ ଇନ୍ଦ୍ରିୟରେ ବାରମ୍ବାର ଚିରକାଶ୍ରୀ ହେବା ହେତୁ ବାଗୀ ହୋଇଯାଏ” ।

ଯଦି ଲୋକ ବଳବାନ ଓ ମଜଭୁତ ହୋଇଥାଏ ତେବେ ତାର ପ୍ରାୟ ବାଗୀ ଏହେନାହିଁ । କାହାରି କାହାର ଏହି ବାଗୀରେ ମଧ୍ୟ ପୂଜ ହୋଇଯାଏ । ଏହା ବିଶେଷ କଷ୍ଟଦାୟକ ଅଟେ ।

---

## ବାଗୀ କେତେ ପ୍ରକାର ହୁଏ ?

ଏହା ୩ ପ୍ରକାର । ଅଚମ୍ବିକ, ମାଧ୍ୟମିକ, ଓ ସ୍ବାଭାବିକ । ଅଚମ୍ବିକ ବାଗୀ ଅକାନ୍ତ ହେବା ସମୟଠାରୁ ତୃତୀୟ କିମ୍ବା ଷଷ୍ଠ ଦିନ ମଧ୍ୟରେ ଏହା ଦୃଷ୍ଟି ପ୍ରକଟ ହୋଇଯାଏ । ମାଧ୍ୟମିକ କୌଣସି ବିଶେଷ କାରଣରୁ ପ୍ରକାଶ ପାଏ, ପୁଣି ସ୍ବାଭାବିକ କ୍ରମଶଃ ନିଜର ପରାକ୍ରମ ଦେଖାଇ ପ୍ରକାଶିତ ହୁଏ । ଏ ତିନୋଟି ମଧ୍ୟରୁ ସ୍ବାଭାବିକ ହେଉଛି ସବୁଠାରୁ ଭୟାନକ ।

ଅଚମ୍ବିକ ବାଗୀରେ ଗିଲ୍‌ଟି ଖୁବ୍ ଫୁଲିଯାଏ ଓ ଦରଜହୁଏ । ଗିଲ୍‌ଟି ଉପରେ ହାତ ଦେଲେ ଗରମ ବୋଧ ହୁଏ । ଉପର ଚମଡ଼ା ଲାଲବର୍ଣ୍ଣ ହୁଏ । ରୋଗୀ ଚଲାବୁଲା କରି ପାରେ ନାହିଁ, ହଲଚଲ ହେଲେ ମଧ୍ୟ କଷ୍ଟ ହୁଏ ।

ମାଧ୍ୟମିକ ପ୍ରକାର ବାଗୀ କ୍ରମେ ଅଳ୍ପେ ଅଳ୍ପେ ବଢ଼େ । କିନ୍ତୁ ଦରଜ ହୁଏ ନାହିଁ ବା ଗିଲ୍‌ଟିର ରଙ୍ଗ ବଦଳେ ନାହିଁ । ତାଉପରେ ଗରମ ବୋଧହୁଏ ଏବଂ ଗିଲ୍‌ଟିର ରଙ୍ଗ ଟିକିଏ ନାଲିମା ଅଳ୍ପ ଦେଖାଯାଏ । କିଛିଦିନ ପରେ ସେଥିରେ ପୂଜ ଉତ୍ପନ୍ନ ହୋଇ ପାଚିଯାଏ ଏବଂ ଫାଟି ପୂଜସ୍ରାବ ହୁଏ ।



ସ୍ୱାସ୍ଥ୍ୟଭଙ୍ଗ ବାଗେ ରକ୍ତ ଟେଜସ୍ପ୍ୟାନ୍ ହୋଇ ବଢ଼ି ଉଠେ, ଦରଜ ମଧ୍ୟ ବଶେଷ ହୁଏ । ଏହି କାରଣରୁ ରୋଗୀକୁ ଜ୍ୱର ହୁଏ । ଖୁବ ଖୋଷଲାଗେ, ଶରୀରେ ନିଦ ହୁଏ ନାହିଁ । ଗିଲ୍‌ଟିର ଉପର ଚମଡ଼ା ଢଳଢଳ ଓ ଶେଷରେ ମଇଲାରଙ୍ଗ ହୋଇଯାଏ । ରୋଗୀ ବଡ଼ ଦୁର୍ବଳ ହୋଇପଡ଼େ ।



## ବାଗୀର ପଥ୍ୟାପଥ୍ୟ

ଏହି ରୋଗରେ ସବୁଠାରୁ ଶ୍ରେଷ୍ଠ ଉପାୟ ହେଉଛି ୨।୩ଦିନ କିଛି ନ ଖାଇ ଉପବାସ କରିବା କିନ୍ତୁ ପାଣି ବହୁତ ପିଇବା ଦରକାର । ପରିଶ୍ରମ ଅଧିକ କରିବା ଉଚିତ ନୁହେଁ । ଏହା ଦ୍ୱାରା ପୀଡ଼ା କମ୍ ହୋଇ ଯାଇ ଗିଲ୍‌ଟି ଫୁଲା ମଧ୍ୟ କମିଯାଏ । ବାଗୀ ପାଚି ଯାଇ ସେଥିରୁ ପୂଜ ବାହାରି ଗଲେ ବଡ ଶାନ୍ତି ମିଳେ । ପୂଜ ବାହାରିବା ମୁହଁ ଯଦି ଛୋଟ ହୋଇଯାଏ ତେବେ ପୋଲଟିସ ପ୍ରଭୃତି ବାନ୍ଧି ଘଡ଼ କରିଦେବା ଦରକାର । ଫାଟି ପୂଜ ବାହାରିବା ପରେ ସାଧାରଣ ଭଳି ପରି ଚିକିତ୍ସା କଲେ ଭଲହୁଏ । ଉପଦଂଶ ଯୋଗୁ ଯେଉଁ ଅଷ୍ଟାକ୍ତ ଗିଲଟିର ଉତ୍ପନ୍ନ ହୁଏ, ତାହା ଭଲ ହେବା ଅସମ୍ଭବ ହୋଇଯାଏ ।



## ବାଗୀର ଯୌଗିକ ପ୍ରକ୍ରିୟା

୧—ପଞ୍ଚଡମ୍ବୁର କ୍ଷୀର ଗିଲ୍‌ଟି ଉପରେ ଲଗାଇ ତା ଉପରେ ପତଳା ଅଲେଖା କାଗଜ ଲଗା ହେବ । ଏଥିରେ ଉପକାର ମିଳେ ।





୨—ଛତିଆନା କ୍ଷୀର ଲଗାଇଲେ ଆରାମ ବୋଧ ହୁଏ ।

୩—ଫେଣୀ ଓ ହଳଦି ପାଣି କମ୍ବା ଦୁଧରେ ଘୋରି, ଗରମ କରି ବାନ୍ଧିଲେ ଆଶ୍ଚର୍ଯ୍ୟରୂପେ ଫଳ ମିଳେ ।

୮—ନଶାଦଲ ଓ ଯବକ୍ଷାର ପ୍ରତ୍ୟେକରୁ ସମାନ ଲେଖା ନେଇ ଥଣ୍ଡା ପାଣିରେ ଗୋଳାଇ ଦିଅ । ଏଥିରେ ପରିଷ୍କାର ବସ୍ତ୍ରଖଣ୍ଡ ଭିଜାଇ ଫୋଟକି ଉପରେ ରଖିଲେ ଆରାମ ମିଳେ ।

୪—ଲବାରେଲେଡେବନ (ଏକ ହକିମି ଔଷଧର ନାମ), କୁନ୍ଦରୁ ଖୋଟି ଓ ଗୋଗଲ, ଏ ତିନିଟି ସମାନ ଭାଗରେ ନେଇ ଗୁଅଘିଅରେ ଫେଲି ଦେବ । ଏହି ମଲମକୁ ଫୋଟକରେ ଲଗାଇଲେ ହୁଏତ ବସିଯିବ ନଚେତ୍ ପାଚି ଫୁଟି ବାହାରିଯିବ ।

## ବାଗୀର ହୋମିଓପ୍ୟାଥିକ୍ ଚିକିତ୍ସା

୬—ଆରମ୍ଭିକ ଅବସ୍ଥାରେ **ମକକାର,** ତଥା ମଧ୍ୟମାବସ୍ଥାରେ **ମକଆୟୋଡାଇଡ୍** ଲାଭପ୍ରଦ ଅଟେ ।

୭—ଯଦି ବାଗୀ ଖୁବ୍ ବଢ଼ିଯାଏ **ନାଇଟ୍ରିକଏସିଡ୍** ଦେବା ଦରକାର ।

୮—ଉକ୍ତ ଔଷଧ ଯଦି ଅକୃତକାର୍ଯ୍ୟ ହୁଏ ତେବେ **କାଲି-ଆୟୋଡ଼ାଇଡ଼ମ** ଦେବ ।

୯—ଫୋଟକି ଯଦି ଟୁକ ଲାଲ, ଗରମ, ଓ ଦରଜ ବୋଧହୁଏ ତେବେ **ଏପିସ୍** ଦେବା କର୍ତ୍ତବ୍ୟ ।

୧୦—ମାଂସ ଯଦି ଭିତର ହୁଏ **ହିପରସଲ୍‌ଫ୍** ପୁଣି **ସାଇଲିଶିୟା** ଦେବା ହିତକର ।



୧୧—ଯଦି ଲିଙ୍ଗରେ ପୀଡ଼ା ବୋଧ ହୁଏ ଓ ଗୁହ୍ୟଦେଶ ନିକଟରେ କୁଣ୍ଡିଆ ହେବାର ଜଣାଯାଏ, ବିଲଟିରେ ଦରଜ ବୋଧହୁଏ ଓ ଲଣ୍ଡି ଦେଉଥାଏ ଏ ଜୋ ଦେବା ଉଚିତ ।

୧୨—ରୋଗୀ ହେବାର ଲକ୍ଷଣ ପ୍ରକାଶ ପାଇଲା ମାତ୍ରେ **କେମ୍ଫୁର ନେଗ୍ରା** ଦେଲେ ଅଦ୍ଭୁତ ଉପକାର ମିଳେ, ଏହାର ପ୍ରୟୋଗ ବାହାର ଓ ଭିତର ଉଭୟ ସ୍ଥାନରେ ଲଗାଯାଏ ।

୧୩—ଯଦି ରୋଗୀ ପାଣିକର ଫାଟିଯାଏ ତେବେ **କେଣ୍ଡୁଲା** ବା **ହାଇଡ୍ରାଷ୍ଟିସ୍** ରେ ଫଣା ଲଗାରେ ଉତ୍ତ ପ୍ରସ୍ତୁତ କରି ଭିଜାଇ ଘାରେ ରଖିବା ଉଚିତ । ନିୟମିତ ଭାବରେ ଉତ୍ତ ବଦଳାଇବା ଓ ଘ ଅଳ୍ପ ଧୋଇବା ଦରକାର ।



## ଆମବାତ ଗଣ୍ଠିବାତ

## ( Gonorrohoeal Rheumatism )

ଔପସର୍ଗିକମେହର ଅନ୍ତ ଏକ ଉପ୍ସ୍ନାନକ ପରିଣାମ ଆମବାତ ବା ଗଣ୍ଠିବାତ । ଯେତେବେଳେ ଏହି ମେହର ବିଷ ରକ୍ତରେ ମିଳାଇ ଶରୀରର ସନ୍ଧିସ୍ଥଳମାନଙ୍କରେ ପହଞ୍ଚିଯାଏ ସେତେବେଳେ ଏହି ବାତ ଉତ୍ପତ୍ତି ହୁଏ । ଏହି ରୋଗ ହାଡ଼ର ଯୁକ୍ତ ସ୍ଥାନମାନଙ୍କରେ ହୁଏ । ସ୍ତ୍ରୀ ଅପେକ୍ଷା ପୁରୁଷମାନଙ୍କୁ ଏହା ବେଶୀ ଆକ୍ରମଣ କରେ । ଔପସର୍ଗିକମେହ ରୋଗର ପ୍ରୌଢ଼ାବସ୍ଥାର ଆରମ୍ଭରେ ଏହି ଗଣ୍ଠିବାତ ରୋଗର ଉତ୍ପତ୍ତି ହୁଏ । ଏଥିରେ ରୋଗୀକୁ ଜ୍ୱର ହୁଏ, ଶରୀରସ୍ଥ ଅସ୍ଥିର ଯୋଡ଼ାସ୍ଥାନ ଗୁଡ଼ିକ ବାତାକ୍ରାନ୍ତ ହୋଇ କଷ୍ଟ ଦିଏ । ଏହି ରୋଗରୁ ଉତ୍ପତ୍ତି ଗଣ୍ଠିବାତ





ଓ ଅନ୍ୟ ପ୍ରକାର ଗଣ୍ଠିବାତରେ ଅନେକ ଫରକ୍ ଅଛି । ଏଥିରେ ଦରଜ ହୋଇ ଫୁଲିଯାଏ କିନ୍ତୁ ପୂଜ ହୁଏ ନାହିଁ । ଏହା ଦେଖିଲେ ଅନୁମାନ ହୁଏ ଯେ, ଏହା ମେହରୁ ଉତ୍ପନ୍ନ ଗଣ୍ଠିବାତ । ଏହା ସାଧାରଣ ଗଣ୍ଠିବାତ ଅପେକ୍ଷା ବିଶେଷ କଷ୍ଟଦାୟକ । କୌଣସି କୌଣସି ଚିକିତ୍ସକ କୁହନ୍ତି ଯେ ପ୍ରସ୍ରାବ ବାହାର କରିବା ସମୟରେ ଯେଉଁ ରକ୍ତର ନଳି ପ୍ରବେଶ କରାଯାଏ, ସେଇଥିରୁ ଏ ବାତର ଉତ୍ପତ୍ତି ହୁଏ । ଏ ରୋଗର ଉତ୍ପତ୍ତି ହେବାର ଜାଣିଲେ ଆଉ ସେପରି ପ୍ରସ୍ରାବ କରାଇବ ନାହିଁ ।



## ଗଣ୍ଠିବାତର କବିରାଜି ଔଷଧ

୧—ଶହେ ଗୋଟି କାଗଜି ଲେମ୍ବୁର ରସ ବାହାର କରି ଏଥିରେ ଏକତୋଳା ଶଙ୍ଖୁଆ ( ବିଷ ) ପକାଇ ଖଲରେ ଖଲି ହେବ । ଭଲ ଭାବରେ ଗୋଟି ଗୋଲି ତିଆରି କରିବାର ଉପଯୁକ୍ତ ହେଲେ ମୁଗ ଆକାରରେ ଗୋଲି ପ୍ରସ୍ତୁତ କରି ନେବ । ପ୍ରତି-ଦିନ ଗୋଟିଏ ଗୋଲି ସଙ୍ଗ ପାଣି ସହିତ ସେବନ କରିବ ।

୨—ଶଙ୍ଖୁଆ ଏକତୋଳା, ଗୁଜୁରାତି ଏକତୋଳା, ଅକରକରା ଏକତୋଳା, ଲବଙ୍ଗ ଏକତୋଳା, ଶାଚୀପାନ ଶଏ, ଏସବୁକୁ ଭଲ ଭାବରେ ଖଲି ମୁଗ ଅକାରରେ ଗୋଲି ପ୍ରସ୍ତୁତ କରି ନିଅ । ସକାଳେ ଓ ସନ୍ଧ୍ୟାରେ ପାଣି ସହିତ ଗୋଟିଏ କରି ଗୋଲି ସେବନ କର । ଘିଅ ଦୁଧ ଖୁବ ଖାଅ, କିନ୍ତୁ ମୁଗ ଡାଲି କଦାପି ଖାଇବ ନାହିଁ ।



୩—ନିମ୍ନରେ ଲେଖା ହୋଇଥିବା ଜନିଷ ଗୁଡ଼ିକରେ ମାଲିସ ସକାଶେ ତେଲ ତିଆରି କରି ନେବ । ବିଶୁଦ୍ଧ ଗାଈତେଲ ଏକପାଅ, ବିଶୁଦ୍ଧ ମହୁଲ, ଦୋଠଲ, ମାଲ୍‌କାଙ୍ଗଣୀ ଓ ଧାତୁରି ପତ୍ର, ପ୍ରତ୍ୟେକରୁ ୨ ତୋଲା କରି ଏ ସବୁକୁ ନିଆଁରେ ବସାଅ । ଯେତେବେଳେ ଦେଖିବ ଔଷଧ ସବୁ ପୋଡ଼ିଯିବ, ତାହା ଉତାରି କପଡ଼ାଛଣା କରିନେବ । ଏ ତେଲ ମାଲିସ କଲେ ବଡ଼ ଉପକାର ମିଳେ ।



## ଆମବାତର ହୋମିଓପାଥିକ ଚିକିତ୍ସା

୪—ଅକୋନାଇଟ୍ ଗଣ୍ଠିବାତ ପାଇଁ ଏକ ବଡ଼ ଉପଯୋଗୀ ଔଷଧ । ଦରଜ ଆରମ୍ଭ ହେଲାମାତ୍ରେ ଏହା ଦେବା ଆବଶ୍ୟକ

୫—ଦରଜ ଅଧିକ ହୋଇଗଲେ ବେଟେରେଟ୍ରମ୍ ବିରାଇଡ୍ ଦେବା ଠିକ୍ ହେବ ।

୬—ଯଦି କୌଣସି ଶସ୍ତ୍ରରେ ମାରିଲା ଭଳି ପୀଡ଼ା ହୁଏ, ତେବେ ମେଜେରିୟମ ଦେବା ଦରକାର ।

୭—ଥରି ଥରି ବୋଧ ହେବା, ରାତି ପଡ଼ିଲା ପରି ଜଣା ଯିବା, ଶୋଇଲେ ଅଧିକ ଦରଜ ବୋଧ ହେବା, କିନ୍ତୁ ବୁଲିବୁଲି ଚାଲିଲେ ଦରଜ କମ୍ ହୋଇଯିବା; ଏସବୁ ଲକ୍ଷଣରେ କାଲି-ହାଇଡ୍ରୋ ୟୋଡ଼ିକମ୍ ଦେବା ଉଚିତ ।





## କୋଷପ୍ରଦାହ ବା କୋଷଫୁଲା

ଏହି ରୋଗରେ ଅଣ୍ଡକୋଷ ( Prostate glands )ରୁ ଏକ ପ୍ରକାର ଶ୍ୱେତ ବର୍ଣ୍ଣର ତରଳ ପଦାର୍ଥ ବାହାରେ । ଲୋକେ ବୁଝି ନପାରି ଏହାକୁ ଧାତୁ ବୋଲି ମନେ କରନ୍ତି । ଯଥାର୍ଥ ଧାତୁ ବାହାରେ ଏଥିରେ ଏହି ପ୍ରୋଷ୍ଟେଟ୍ ଗ୍ଲାଣ୍ଡର ରସ ଅଧିକ ପରିମାଣରେ ଥାଏ । ଔପସର୍ଗିକ ମେହ ରୋଗ କାରଣରୁ ଅଣ୍ଡକୋଷରେ ଦୋଷ ଉତ୍ପନ୍ନ ହୁଏ । ଏହି ରୋଗକୁ ଇଂରାଜୀରେ ପ୍ରୋଷ୍ଟେଲାଇଟିସ (Prostalitis ) କହନ୍ତି । ଏହି ମେହ ରୋଗର ବିଷ ଅଣ୍ଡକୋଷରେ ପହଞ୍ଚିଗଲେ ବାରମ୍ବାର ପ୍ରସ୍ରାବ ଲାଗେ, ମୂତ୍ରଧାର ପତଳା ହୋଇଯାଏ ଓ ଅତି କଷ୍ଟରେ ବାହାରକୁ ବାହାରେ । ପ୍ରସ୍ରାବ ବନ୍ଦ ବନ୍ଦ ହୋଇ ପଡ଼ୁଥିବାରୁ ବାହାରେ, ପୁଣି କେତେବେଳେ କେତେବେଳେ ସବୁଥର ବନ୍ଦ ହୋଇଯାଏ । ମୂତ୍ରାଶୟ ଓ ଗୁହ୍ୟ ଦେଶରେ ଭାର ଭାର ବୋଧହୁଏ । ଝାଡ଼ା ଫେରିବା ସମୟରେ ବଡ଼ କଷ୍ଟ ହୁଏ । କାରଣ ମଳମୂତ୍ରର ଭାର ଏହି ଗ୍ଲାଣ୍ଡର ଉପରେ ପଡ଼ିବାରୁ ଗ୍ରନ୍ଥିସବୁ ବଢ଼ିଯାଏ । ୩ ଦିନ ପରେ କଷ୍ଟ ଟିକେ କମିଯାଏ । ଏକ ସପ୍ତାହ ବାଦେ ରୋଗୀକୁ ଜ୍ୱର ହୁଏ । ମୂତ୍ରାଶୟରେ କିଏ ଯେପରି ଶସ୍ତ୍ରରେ ଚିରୁଛି, ସେହିପରି ଜଣାଯାଇ ବିଶେଷ ବେଦନା ହୁଏ । ପୂଜ ବାହାରିବାକୁ ଆରମ୍ଭକରେ ।

ରୋଗ ପୁରୁଣା ହୋଇଗଲେ ବାରମ୍ବାର ପ୍ରସ୍ରାବ ହୋଇ ସେଥିରେ ଶ୍ୱେତ ଓ ଚିକଣା ପଦାର୍ଥ ବାହାରି ଯାଏ । ପ୍ରସ୍ରାବ କରିବାର ଆରମ୍ଭରୁ ପରେ ଜଳାପୋଡ଼ା ହୁଏ ଓ ଟିକିଏ ଟିକିଏ ପ୍ରସ୍ରାବ ହୁଏ । ଅଣ୍ଡକୋଷ ଓ ଗୁହ୍ୟଦେଶ ଦରଜ ଲାଗେ । ରୋଗୀର ଛାତିହାଡ଼ ଦୁର୍ବଳ ହୋଇଯାଏ, ରୋଗୀର ମନରେ ଦୁର୍ବଳତା ଆସେ

# କାମ-ବିଜ୍ଞାନ ୨ୟ

[ ନଂ: ୨୭ ]



ଗର୍ମୀ ରୋଗର କୀଟାଣୁ ।

( ୩୬୭ ପୃଷ୍ଠା ଦ୍ରଷ୍ଟବ୍ୟ )



[ ନଂ: ୨୮ ]

ବାହ୍ୟାଭ୍ୟନ୍ତର ଫିରଙ୍ଗ ରୋଗ ।

( ୩୬୭ ପୃଷ୍ଠା ଦ୍ରଷ୍ଟବ୍ୟ )



ଓ ଶାରୀରିକ ଶକ୍ତି ବଡ଼ବଡ଼ ହ୍ରାସ ହୁଏ । ମୂତ୍ର ଧାରଣ ଲାଗେ । ପରିଣାମରେ ଘଟେ ନପୁଂସକତା ।

ଯେଉଁ ଲୋକମାନେ ସହବାସ ସମୟରେ ବୀର୍ଯ୍ୟପାତକୁ ବଳାତ୍କାରରେ ରୋଧ କରିବାକୁ ଚେଷ୍ଟା କରନ୍ତି, ଏ ରୋଗ ପ୍ରାୟ ସେମାନଙ୍କୁ ହୁଏ । ୟୁରୋପର ସଭ୍ୟ ସମାଜ ( ! ! ) ସ୍ତ୍ରୀ ସହିତ ସହବାସ କରିବା ସମୟରେ ବୀର୍ଯ୍ୟପାତ ହେବା ବେଳେ ଗର୍ଭ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ଲିଙ୍ଗକୁ ବାହାର କରି ଅଣି ଶୁକ୍ରକୁ ରୋଧ କରିବାର ଯତ୍ନ କରନ୍ତି । ଏପରି କଲେ ଏ ରୋଗର ଉତ୍ପତ୍ତି ହୁଏ । ସେହିପରି ମଧ୍ୟ ସ୍ୱପ୍ନଦୋଷ ସମୟରେ ଯଦି ନିଦ ଭାଙ୍ଗିଯାଏ ଓ ଲୋକ ଲିଙ୍ଗକୁ ଜବରଦସ୍ତି ଦବାଇ କରି ବାହାରି ଆସୁଥିବା ବୀର୍ଯ୍ୟକୁ ରୋଧ କରେ ତାହାର ମଧ୍ୟ ଏହିରି ରୋଗର ଉତ୍ପତ୍ତି ହେବାର ସମ୍ଭାବନା ।

———

## ଅଣ୍ଡକୋଷ ଦାହ ( Epididymitis )

ଔପସର୍ଗିକ ମେହର କୀଟାଣୁ ମୂତ୍ରନଳୀ ଦେଇ ବୀର୍ଯ୍ୟାଶୟରେ ପ୍ରବେଶ କଲେ ଅଣ୍ଡକୋଷ ଦାହ ଉତ୍ପନ୍ନ ହୁଏ । ଏଥିରେ ବୃଷଣକୁ ହେବ ଏହି ସମୟଟି ହେଉଛି ରୋଗର ଅନ୍ତିମ ଦଶା । ଏଥିରେ ଅଣ୍ଡକୋଷ କଠିନ ହୋଇଯାଏ । ଛୁଇଁଲେ ପୀଡ଼ା ଲାଗେ । ମୂତ୍ରମାର୍ଗ ଦେଇ ପୂଜ ପଡ଼ିବା ବନ୍ଦ ହୋଇ ଯାଏ । ସ୍ୱପ୍ନଦୋଷ ଇତ୍ୟାଦି ଏହାର ଲକ୍ଷଣ ।

———

## ନେତ୍ରାନ୍ଧତା ( Gonorrhoeal Opthalmia )

ଔପସର୍ଗିକ ମେହର କୀଟାଣୁ ଚକ୍ଷୁରେ ପ୍ରବେଶ କଲେ ଚକ୍ଷୁ ଫୁଟି ଯିବାର ସମ୍ଭାବନା । ଅନେକ ଥର ଯଦି ପୂଜହାତ ଆଖିରେ ବାଜେ





ତେବେ ଅଖି ଖରାପ ହୋଇ ଯାଏ । ଏଣୁ ପୁଙ୍ଗହାତ ବା ପୁଜ ଲାଗିଥିବା କୌଣସି ବସ୍ତ୍ରଖଣ୍ଡରେ ମୁହଁ ପୋଛିବା ଆଦୌ ଉଚିତ ନୁହେଁ । ଶତ ଶତ ଅନଭିଜ୍ଞ ରୋଗୀ ନିଜର ଭୁଲ୍ କାରଣରୁ ଅନ୍ଧ ହୋଇ ବସି ଅଛନ୍ତି । ଏହି ନେତ୍ରାନ୍ଧତା ରୋଗର ତିନୋଟି ଅବସ୍ଥା ହୁଏ ।

୧—ପ୍ରଥମ ଅବସ୍ଥାରେ ଅଖିର ପଲକରେ କୁଣ୍ଡେଇ ହୁଏ, ପାଣି-ଝରେ, ଦେଖିବାକୁ କଷ୍ଟ ବୋଧହୁଏ ଓ ଅଖି ଲାଲ ପଡ଼ିଯାଏ । ପଲକ ଫୁଲି ଉଠେ । ଅଉ ମଧ୍ୟ ଏଥିଯୋଗୁ ଜ୍ୱର ହୋଇ ମୁଣ୍ଡରେ ଦରଜ ବୋଧ ହୁଏ । ଶୋଷ ମଧ୍ୟ ବେଶୀ ହୁଏ ।

୨—ଦ୍ୱିତୀୟ ଅବସ୍ଥାରେ ଅଖିରୁ ଯେଉଁ ପାଣିବୁହେ ତାହା ଗାଢ଼ ଓ ଗୋଳିଆ ରଙ୍ଗ ହୋଇଯାଏ । ଅଖିର ଶ୍ୱେତ ଭାଗ, ଯେ କି ପୂର୍ବରେ ଲାଲ ପଡ଼ିଥିଲା, ତାହା ଫୁଲିଯାଇ ଅଖିରୁ ନେତ୍ର ବୋହିବାକୁ ଲାଗେ । ଅଖିର ତଳଭାଗ ଜଳାପୋଡ଼ା କରେ ଓ ବହୁତ ଦରଜ ହୁଏ ।

୩—ଯଦି ଏ ସମୟରେ ଉପଯୁକ୍ତ ଚିକିତ୍ସା ନ ହୁଏ ତେବେ ରୋଗ ତୃତୀୟ ଅବସ୍ଥାରେ ପହଞ୍ଚି ଅଖି ଫୁଟି ଯାଇ ବାହାରକୁ ବାହାରି ପଡ଼େ । ତାପରେ ସବୁ ବେଦନା ଦୂର ହୋଇ ମନୁଷ୍ୟ ଅନ୍ଧ ହୋଇ ବସେ ।

---

## ନେତ୍ରାନ୍ଧତାର ଚିକିତ୍ସା

ଜୀବାଣୁ ଚକ୍ଷୁରେ ପ୍ରବେଶ କରି ଅଛି, ଏହା ଜାଣିଲା ମାତ୍ରେ ଜୀବାଣୁ ନାଶକ ଲୋସନ ଦ୍ୱାରା ଅଖିକୁ ଧୋଇ ଦେବ । ପରିଷ୍କାର ନରମ କନା ବା ସ୍ପଞ୍ଜ ଗରମ ପାଣିରେ ବୁଡ଼ାଇ ଅଖି ଧୋଇବ



ହିତକର ଅଟେ । ଲୁଣ, ଲଙ୍କା, ତେଲ, ଚଟା ଓ ଗରମ ପ୍ରକୃତିର ଖାଦ୍ୟ ପଦାର୍ଥ ଖାଇବା ଅନୁଚିତ । ଅନ୍ଧାର ଘରେ ଶାନ୍ତିପୂର୍ଣ୍ଣ ଭାବରେ ବିଶ୍ରାମ କରିବା ଆବଶ୍ୟକ ।

(କ)-ତ୍ରିଫଳା (ଅଁଳା, ହରିଡ଼ା ଓ ବାହାଡ଼ା ସମାନ ଭାଗରେ ନେଇ) ପାଣିରେ ଅଖିକୁ ଭଲକରି ଧୋଇଲେ ଭଲ ହୁଏ ।

(ଖ)-ପିଚିକିରି ଏଗ୍ରେନ, ପାଣି ଏକ ଅଉନସ, ଏହାକୁ ଏକତ୍ର କରି ଦିନରେ ୨।୩ବାର ଏଥିରେ ଅଖିକୁ ଧୌତ କରିବ ।

(ଗ)-ଗୋଟିଏ ଅଖି ଯଦି ଏହି ରୋଗରେ ଆକ୍ରାନ୍ତ ହୋଇଥାଏ, ତେବେ ଅନ୍ୟ ଅଖିଟିକୁ ଚଷମା ଦେଇ ବଞ୍ଚାଇବାକୁ ଚେଷ୍ଟା କରିବା ନିତାନ୍ତ ଦରକାର, ନଚେତ୍ ସେ ଅଖିଟିକୁ ମଧ୍ୟ ଅନ୍ୟ ଅଖିର ଦଶା ଘଟିବାର ସମ୍ଭାବନା ।



## ଔପସର୍ଗିକ ମେହ କ'ଣ ଛୁଆଁ ରୋଗ ?

ହଁ, ଏହା ଛୁଆ ରୋଗ ଅଟେ । ଏ ରୋଗୀ ଯେଉଁଟି ପ୍ରସାବ କରିଥିବ, ସେଠାରେ ଯଦି ସଙ୍ଗେ ସଙ୍ଗେ ସ୍ୱସ୍ଥ ମନୁଷ୍ୟ ପ୍ରସାବ କରେ ତେବେ ଏହି ରୋଗ ହେଉଇବାର ସମ୍ଭାବନା । ରୋଗୀ ସଙ୍ଗେ ବସାଉଠା, ଖାଇବା ପିଇବା, ତା'ର ଲୁଗାପଟା ଆଦି ଛୁଇଁବା ଦ୍ୱାରା ମଧ୍ୟ ଏହି ରୋଗ ସଂକ୍ରମିତ ହୁଏ । ଆମ ଜାଣିବାରେ ଏପରି ଗୋଟିଏ ଘଟଣା ଘଟିଅଛି । ଔପସର୍ଗିକ ମେହଗ୍ରସ୍ତ ପିତାର ଲୁଗପଟା ଛିଇବା ଦ୍ୱାରା ୧୨।୧୪ବର୍ଷରୁ ଗୋଟିଏ ବାଳକକୁ ଏହି ରୋଗ ଆକ୍ରମଣ କରିଥିଲା । ମୂଳ ପିତା ଓ ଆଉ ପଢ଼ାଏ ସନ୍ଦେହ କଲେ ଯେ ସେ





ବାଲକ ବେଳୁଁ କୁଯୋନି ସଂସର୍ଗ କରି ଏହା ଅର୍ଜନ କରିଅଛି । ଅଥଚ ସେ ବାଳକ ଥିଲା ସମ୍ପୂର୍ଣ୍ଣ ନିର୍ଦୋଷ ।



## ଔପସର୍ଗିକ ମେହ କାହିଁକି ହୁଏ ?

୧—ଏହି ରୋଗ ଉତ୍ପତ୍ତିର ମୂଳ କାରଣ ହେଉଛି ବେଶ୍ୟାଗମନ । ଅନ୍ୟାନ୍ୟ ଯେଉଁସବୁ କାରଣରୁ ଏହି ରୋଗ ହୁଏ ତାହା ନିମ୍ନରେ ଦିଆଗଲା—

୨—ଦୂଷିତ ଯୋନି ସ୍ତ୍ରୀ ସହବାସ,ପ୍ରମେହ ରୋଗଗ୍ରସ୍ତା ନାରୀ ସହିତ ସହବାସ, ନିରୋଗ ହେଲେ ମଧ୍ୟ ଋତୁମତୀ ସ୍ତ୍ରୀ ସହିତ ସହବାସରୁ ଏ ରୋଗ ହୋଇପାରେ ।

୩—ବ୍ୟଭିଚାରିଣୀ ସ୍ତ୍ରୀ ସହିତ ସହବାସ, ସହବାସ ସମୟରେ ସ୍ତ୍ରୀର ରଜ ପୁରୁଷ ବୀର୍ଯ୍ୟ ଅପେକ୍ଷା ଅଧିକ ତୀବ୍ରଭାବରେ ସ୍ଖଳନ ହେଲେ ଓ ଉପଦଂଶ ରୋଗପୀଡ଼ିତା ସ୍ତ୍ରୀ ସହିତ ମୈଥୁନ କଲେ ଏ ରୋଗ ମଧ୍ୟ ହୋଇପାରେ ।

୪—ଅତି ଇନ୍ଦ୍ରିୟ-ପରାୟଣ ହେଲେ, ଅତିରିକ୍ତ ପରିମାଣରେ ମଦ୍ୟ ପାନ କଲେ, ଶରୀର ଦୁର୍ବଳ ହୋଇଗଲେ, ପଥଶ୍ରମ ଓ ଗଣ୍ଠିବାତରୁ ମଧ୍ୟ ଏ ରୋଗ ହୋଇପାରେ ।

୫—ଯକୃତ ଦାହ ଓ ପିତ୍ତର ପ୍ରବଳତାରୁ, ବୀର୍ଯ୍ୟ ନିଷ୍କାସନ ସମୟରେ କୌଣସି କାରଣରୁ ମୂତ୍ରନଳୀରେ ଅଟକି ଗଲେ, ମୈଥୁନ କାର୍ଯ୍ୟରେ ଲିପ୍ତଥାଇ ଠିକ୍ ବୀର୍ଯ୍ୟପାତ ପୂର୍ବରୁ କାର୍ଯ୍ୟରୁ ହଟି ଆସିଲେ, ବୀର୍ଯ୍ୟପାତ ସମୟରେ ଶୋକ, ଭୟ ଅଥବା ଲଜ୍ଜା ହେତୁ ଲିଙ୍ଗର ଉତ୍ତେଜନା



ବନ୍ଦ ହୋଇ ଗଲେ ଏବଂ ସ୍ୱପ୍ନଦୋଷ ସମୟରେ ଲିଙ୍ଗ ଭିଡ଼ ଧରି ପିନ୍ଧିଥିଲେ ଏ ରୋଗ ହୋଇପାରେ ।

୬—ଉତ୍ତେଜକ ଔଷଧ ସେବନ କଲେ, ପ୍ରସ୍ରାବ ରୋଧ କଲେ, ଗୁରୁପାକ ଓ ଉତ୍ତେଜକ ଦ୍ରବ୍ୟ ସେବନ କଲେ ବଳବର୍ଦ୍ଧକ ଓ ଉତ୍ତେଜକ ଦ୍ରବ୍ୟ ପ୍ରୟୋଗ କରି ଔଷଧ ବ୍ୟବହାର ସମୟରେ ବ୍ୟଭିଚାର କଲେ ଏ ରୋଗ ଘଟିପାରେ ।

୭—ଅତି ବ୍ୟାୟାମ, ଅତି ଭୋଜନ, ଅଜୀର୍ଣ୍ଣ, ଅତି ଅଧିକ ଜୋରରେ ଦୌଡ଼ିଲେ, ବହୁ ପରିମାଣ ନିଶା ଖାଇଲେ, ଅତିରିକ୍ତ ନାଚିଲେ, ଅଧିକ ସାଇକେଲ କିମ୍ବା ଘୋଡ଼ା ଚଢ଼ିଲେ ମୂତ୍ରଦାହ ହୋଇପାରେ । ମୂତ୍ରଦାହର ଉପଯୁକ୍ତ ଚିକିତ୍ସା ନ ହେଲେ ତାହା ମେହରେ ପରିଣତ ହୋଇପାରେ ।

୮—ଅସ୍ୱାଭାବିକ ମଧ୍ୟ ହସ୍ତମୈଥୁନ, ପଶୁମୈଥୁନ ଇତ୍ୟାଦି ଅସ୍ୱାଭାବିକ ଉପାୟରେ ବୀର୍ଯ୍ୟପାତ କଲେ ଏହି ରୋଗ ଉତ୍ପନ୍ନ ହେବାର ସମ୍ଭାବନା ।



## ନାରୀଙ୍କୁ କ'ଣ ଔପସର୍ଗିକ ମେହ ହୁଏ ?

ହଁ, ପୁରୁଷ ପରି ସ୍ତ୍ରୀକୁ ମଧ୍ୟ ଏହି ଔପସର୍ଗିକ ମେହ ଆକ୍ରମଣ କରେ । କିନ୍ତୁ ପୁରୁଷମାନଙ୍କ ପରି ସେମାନଙ୍କର ଏତେ ଅଧିକ ବେଦନା ହୁଏ ନାହିଁ । କାରଣ ସେମାନଙ୍କର ମୂତ୍ରମାର୍ଗ ଚୌଡ଼ା ଓ ବୃହତ । ତଥାପି ଜଳା ପୋଡ଼ା କମ୍ ବେଶୀ ହୁଏ । ସ୍ତ୍ରୀମାନଙ୍କର ଏ ରୋଗ ଶୀଘ୍ର ଭଲ ହୁଏ ନାହିଁ । ପ୍ରଥମେ ଯୋନି, ତା'ପରେ ମୂତ୍ର ମାର୍ଗ, ଏବଂ ଶେଷରେ ଗର୍ଭାଶୟରେ ଏ ରୋଗ ପ୍ରବେଶ କରି ସ୍ତ୍ରୀକୁ ବନ୍ଧ୍ୟା କରି ଦିଏ ।







## ରୋଗୀର ପଥ୍ୟାପଥ୍ୟ

ରୋଗୀ ପଥ୍ୟାପଥ୍ୟ ନିୟମ ମାନି ଚଳିବା ବିଶେଷ ପ୍ରୟୋଜନ । ଭାଙ୍ଗ ଆଦି ଯେ କୌଣସି ପ୍ରକାର ନିଶା ଦ୍ରବ୍ୟ, ବିଡ଼ି, ସିଗ୍ରେଟ୍, ଗୁଣ୍ଡାଖି ଆଦି ସେବନ ନିଷେଧ । ହାତୀ, ଘୋଡ଼ା ସାଇକେଲ ଆଦି ଚଢ଼ିବା ପରିତ୍ୟାଗ କରିବ । ଗୁରୁପାକ ଦ୍ରବ୍ୟ, ତେଲ ଘିଅ ଆଦିରେ ପ୍ରସ୍ତୁତ ଦ୍ରବ୍ୟ, ଗୁଡ଼, ତେଲ, ଲଙ୍କା, ଖଟା, ବିଲକୁଲ୍ ଖାଇବା ଉଚିତ ନୁହେ । ଲୁଣ ଯେତେ କମ ପରିମାଣରେ ଖିଆଯାଇ ପାରେ । ମାଂସ, ମାଛ, ଡିମ୍ବ, ପ୍ୟାଜ, ରସୁଣ; ଏ ସବୁ ଜିନିଷ ମଧ୍ୟ ବର୍ଜନ କରିବ । ଝାଡ଼ା ଓ ପରିସ୍ରାର ବେଗ କେବେ ରୋଧ କରିବ ନାହିଁ । ଅତି ପରିଶ୍ରମ, ଅତି ବ୍ୟାୟାମ, ଅଧିକ ଖରାରେ ଭ୍ରମଣ ଇତ୍ୟାଦି କରିବା ନିଷେଧ । ଉପବାସ କରିବା ଆଦୌ ଠିକ ନୁହେଁ । ଦୁଧ, ଦହି, ଅମୃତ ଭାତ, ଜହ୍ନି, କଖାରୁ, ପିଠା, ଗୁଆ, ଅଳଇଚ, ଖର୍ଜୁର, ପୁରୁଣା ଗୁଡ଼, ଶାଳିଧାନର ଚାଉଳ ଆଦି ଥଣ୍ଡା ଦ୍ରବ୍ୟ ସେବନ କରିବ । ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ରକ୍ଷା କରିବ । ସର୍ବଦା ଗରମ ପାଣି କରି ପ୍ରତିଦିନ ଖୁବ୍ ସ୍ନାନ କରିବ । ଯଦି ଦେହରେ ଚଳେ ତେବେ ଥଣ୍ଡା ଜଳହିଁ ସ୍ନାନ ପାଇଁ ବିଶେଷ ଉପଯୋଗୀ । ଏ ରୋଗରେ ବେଶୀ ପରିମାଣରେ ଜଳ ପାନ କରିବା ବିଶେଷ ହିତକର ।



## ଇନ୍ଦ୍ରିୟ ଜୁଲାପ

ଏହି ରୋଗୀରେ ଝୁଲ୍ ପରିସ୍ରା ହୋଇ ମୂତ୍ରାଶୟ ଓ ମୂତ୍ରନଳୀକୁ ଶୁଦ୍ଧ କରିବାକୁ ଆବଶ୍ୟକ ହେଲେ ନିମ୍ନଲିଖିତ ଦ୍ରବ୍ୟ ସେବନ କରିବ ।



୧—ଗାଈଦୁଧ ସେ ୩ ଭଟ୍ଟେ ଛଟାସେର ପାଣି ମିଳାଇ ଅଧପାଅ ଚଣା ଡାଲକୁ ପାଣିରେ ଭିଜାଇ ଛାଟି ଏଥି ସହିତ ମିଳାଇଦେବ । ଏହି ପାଣିକୁ ଦିନକ ଭିତରେ ଯେପରି ପିଅଯାଏ, କିନ୍ତୁ ବସି ରହିବ ନାହିଁ ସବୁବେଳେ ବୁଲାଚଲା କରୁଥିବ ।

୨—ଗୋଣ୍ଡ଼ା ଇସବ୍‌ଗୋଲ, ମିହିଦାନା, ଏ ସବୁଥିରୁ ଯେ କୌଣସି ଗୋଟିଏ ନେଇ ରାତିରେ ଭିଜାଇ ଦିଅ । ସକାଳୁ କପଡ଼ା ଛଣା କରି ତାହା ପିଇଦେବ ।

୩—ସମ ପରିମାଣରେ ଗୋଦୁଗ୍ଧ ଓ ଜଳ, ଏ ଦୁହିଁଙ୍କୁ ମିଶ୍ରି ଭଲ ଭାବରେ ଫେଣ୍ଟି ପାନ କରିବ । କିନ୍ତୁ ଏଥିରେ ମିଠା ଦେବ ନାହିଁ ।

---

## ଔପସର୍ଗିକ ମେହନାଶକ ଆୟୁର୍ବେଦୀୟ ଯୋଗ

୧—ଚନ୍ଦନ ତେଲ ତୋଳା ଓ ଗନ୍ଧ ବିରଜାତେଲ ଏକତୋଳା, ଦୁହିଁଙ୍କୁ ମିଳାଇ ରଖ । ସେଥିରୁ ୧୦ । ୨୦ ବିନ୍ଦୁ ସାମାନ୍ୟ ପରିମାଣ ଚିନିରେ ପକାଇ ଖାଇଦିଅ । ତାହା ଉପରେ କଞ୍ଚା ଗୋଦୁଗ୍ଧ ଏକପାଅ କିମ୍ବା ଅଧସେର ପିଇଦେବ । ଦୁଧ ଅଭାବରେ ପାଣି ମଧ୍ୟ ପିଅ ଯାଇପାରେ ।

୨—ପିପ୍‌ପଳବୃକ୍ଷର ପତ୍ର ଏକତୋଳା ନେଇ ଅଧପାଅ ପାଣି ସହିତ ବାଟ । ଏଥିରେ ଦୁଇତୋଳା ମିଶ୍ରି ମିଳାଇ ପାନକର ।

୩—ତ୍ରିଫଳା ତୋଳା, ଶିଳାଜିତ ଛତୋଳା, ଗୋଖୁର ତୋଳା ଏକାଠି ମିଳାଇକରି ସକାଳେ ଓ ସନ୍ଧ୍ୟାରେ ସେବନ କରିବ । ଏହା ଦ୍ୱାରା ଛଅଦିନରେ ରୋଗ କମିଯାଏ ।





୪—ମୀଫଳା ପାଣି ସହିତ ରାତରେ ଚଣାକୁ ଭିଜାଇ ରଖିବ । ସକାଳୁ ତାହା ଛାଣି ପାନ କରିବ ।

---

## ମେହନାଶକ ପିଚକାରୀ

ରୋଗରେ ମୂତ୍ରନଳରେ ପୂଜ ଜମିଯାଇ ମୂତ୍ର ବାହାରିବାରେ ବିଶେଷ କଷ୍ଟ ହୁଏ । ଏଥିପାଇଁ ପିଚକାରୀ ଦେବାର ବ୍ୟବସ୍ଥା ଅଛି । ପିଚକାରୀ ନେଇ ସାରିଲା ପରେ ଅଳ୍ପ ପ୍ରସ୍ରାବ କରିବ ନାହିଁ । ପୂଜକୁ ପ୍ରସ୍ରାବ କରିବା ଆବଶ୍ୟକ । ଏହାପରେ ସନ୍ଧ୍ୟା ସକାଳେ ଦିନକୁ ଦୁଇଥର ପିଚକାରୀରେ ମୂତ୍ରନଳୀ ଧୌତ କରିବ ।

ଶ୍ୱେତଚନ୍ଦନ ଘୋରି ପାଣିରେ ମିଳାଇ ସେଥିରେ ପିଚକାରୀ ଦିଆଯାଏ । ବାଂଟି ଫିଟ୍‌କିରି ଗୋଟିଏଲା ଥଣ୍ଡାପାଣିରେ ମିଳାଇ ମଧ୍ୟ ପିଚକାରୀ ଦିଆ ଯାଇପାରେ । ବାଂଟି ଅଫିମ ଓ ଗୋଟିଏଲା କର୍ପୂର ପାଣିରେ ମିଶାଇଲେ ପିଚ୍‌କାରୀ ପାଣିର ଉପଯୋଗୀ ହୁଏ ।



## ହୋମିଓପ୍ୟାଥିକ ଚିକିତ୍ସା

୧—ଔପସର୍ଗିକ ମେହ ଆରମ୍ଭିକ ଲକ୍ଷଣ ଦେଖାଦେଲେ **ଅକୋନାଇଟ୍** ଦେବ । ଏହା ସହିତ **କେନାବିସ** ଦେଲେ ଫୁଲା କମିଯାଏ ଓ ପୂଜବାହାରିବା ବନ୍ଦହୁଏ ।

୨—ଜଳାପୋଡା କିମ୍ବା ଦରଜ ବନ୍ଦକରିବାକୁ ହେଲେ **କେନ୍ଥେରିସ** ଉପଯୁକ୍ତ ଔଷଧ । ରୋଗର କୀଟାଣୁ ମୂତ୍ରାଶୟକୁ ବଢ଼ିବା ସମୟରେ ଏ ଔଷଧ ଅଧିକ ଉପଯୋଗୀ ।

# କାମ-ବିଜ୍ଞାନ ୨ୟ

[ ନଂ: ୧୯ ]



ମାତା ପିତାର ପାପର ଫଳ ଭୋଗୁଥିବା ଏକ ଅଭାଗା ବାଳକ,
ଉପ୍ଥାନଙ୍କ ଫିରଙ୍ଗ ରୋଗରେ ଆକ୍ରାନ୍ତ ହୋଇଛି ।

( [illegible] ପୃଷ୍ଠା ଦ୍ରଷ୍ଟବ୍ୟ )



୩—ପ୍ରସ୍ରାବ କରିବା ସମୟରେ ଝିର୍ ଦରଜ ବୋଧହେବା, ଜଳାପୋଡ଼ା ହେବା ଓ ପ୍ରସ୍ରାବ ରୁନ୍ଧହୋଇ ଯିବା ପରି ବୋଧ ହେଲେ **ଅକେଣ୍ଟମ୍ ନାଇଟ୍ରି କମ୍** ଉପଯୋଗୀ ।

୪—ପ୍ରସ୍ରାବ ରୁନ୍ଧହୋଇ ମୂତ୍ରେନ୍ଦ୍ରିୟରେ ପୀଡ଼ା ହେଲେ ଏବଂ ଲିଙ୍ଗଠାରୁ ମଳାଶୟ ପର୍ଯ୍ୟନ୍ତ ଦରଜ ହେଲେ **ନକ୍ସ ଭମିକା** ଦିଅ ।

୫—ଧ୍ୱଜ ବହୁପରିମାଣରେ ସ୍ଥାନହୋଇ ଶରୀର ଶିଥିଳ ହୋଇ ଜୀର୍ଣ୍ଣ ଶକ୍ତି କମିଗଲେ **ଶମାଫଲ୍** ଉପଯୁକ୍ତ ଔଷଧ ।

୬—ରୋଗ ବେଶଯାଇ ଅଛି, ଅଣ୍ଡ ଫୁଲି ଯାଇଅଛି, ମୂତ୍ରନଳି ରୁନ୍ଧ ହୋଇ ଯାଇଅଛି, ନୀଳ କିମ୍ବା କଳା ରକ୍ତ ବାହାରୁଛି ଏପରି ଲକ୍ଷଣରେ **ପଲସେଟିଲା** ଉପଯୁକ୍ତ ଔଷଧ ।

୭—ଲିଙ୍ଗ ଲାଲ ହୋଇ ଯାଇଅଛି, ଉତ୍ତେଜିତ ରହୁଅଛି, ଛୁଇଁଲେ ଦରଜ ବୋଧ ହେଉଅଛି, ଜଳାପୋଡ଼ା ହେଉଛି, ପତଳା ଧାରରେ ପ୍ରସ୍ରାବ ହେଉଛି, ନାନାପ୍ରକାର ରଙ୍ଗର ପୂଜ ବହୁଛି, ଏହାର ଉପଯୁକ୍ତ ଔଷଧ **ମର୍କକାର** ।

୮—ମୂତ୍ରାଶୟରେ ସୂଚୀ ବିନ୍ଧିଲା ଭଳି ବେଦନା ହୋଇ ମଳଦ୍ୱାର ପର୍ଯ୍ୟନ୍ତ ତାହା ବୋଧ ହେବା, ଲିଙ୍ଗ ଓ ଅଣ୍ଡକୋଷକୁ ଛୁଇଁଲେ ଦରଜ ବୋଧହେବା, ମଇଳା ପାଣି ପରି ପତଳା ପୂଜ ବାହାରିବା ହେଲେ ଏ ସବୁ ଲକ୍ଷଣରେ **ମେଜେରିୟମ୍** ଦେବା ଦରକାର ।

୯—ରୋଗ ପୁରୁଣା ହୋଇ ମିଥ୍ୟା ପ୍ରସ୍ରାବ ବୋଧହେଲେ, ରୋଗୀର ଦୁର୍ବଳତା ଅସି ତଦ୍ୱାରା ମୂର୍ଚ୍ଛା ହେଉଥିଲେ, **ହାଇଡ୍ରାଷ୍ଟିସ୍** ଦିଆଯାଏ।

୧୦—ଯଦି ଦେଖାଯାଏ ଯେ କୌଣସି ପ୍ରକାର ଔଷଧ କାମ ଦେଖାଉ ନାହିଁ, ରୋଗୀ ଟିକେ ଶାନ୍ତି ବୋଧକରି ପାରୁନାହିଁ, ସବୁବେଳେ ବେଦନା ବୋଧ କରୁଅଛି ତେବେ **ସଲଫର** ଦେବା ଆବଶ୍ୟକ ।

୧୧—ଯଦ୍ୟପି ମୂତ୍ରନଳରେ ଘା ହେବାର ସନ୍ଦେହ ହୁଏ, ରୋଗ ଅଧିକ ପୁରୁଣା ହୋଇ ଯାଇଥାଏ ତେବେ **ଏସେଲ୍‌ପିୟୁସ ସିରିୟା** ସେବନ କରାଇବ ।

୧୨—ଯଦି ପୂଜ ଇତର ହଳଦିଆରଙ୍ଗ ହୋଇ ଅଧିକ ପରିମାଣରେ ବୋହୁଥାଏ ତେବେ **ହାଇଡ୍ରାଷ୍ଟିସ** ଦେବା ଉଚିତ ।

୧୩—ଲିଙ୍ଗମୁଣ୍ଡିର ଉପରେ ମେଞ୍ଚା ଯଦି ଉଠିଯାଏ ତେବେ **ଥୁଜା** ଦେବା ବିଧେୟ ।

୧୪—ପ୍ରସ୍ରାବ ଯଦି ନ ଆସି ପାରୁଥାଏ ତେବେ **ଏପିସ** ଦେବା ଦରକାର ।

୧୫—ଔପସର୍ଗିକ ମେହ କାରଣରୁ ଯଦି ଗଣ୍ଠିବାତର ଲକ୍ଷଣ ପ୍ରକାଶ ପାଏ ତେବେ **ଅକୋନାଇଟ** ଢା'ର ଉପାଦେୟ ଔଷଧ ।



## ଔପସର୍ଗିକ ମେହର ପ୍ରାକୃତିକ ଚିକିତ୍ସା

ଏହି ରୋଗରେ ଶାରୀରିକ ବିଶ୍ରାମ ଖୁବ୍ ପ୍ରୟୋଜନ । ଗରମ ମସଲା, ରାଗଦ୍ରବ୍ୟ, ଲୁଣ, ମଦ୍ୟଆଦି ଏକବାରେ ତ୍ୟାଗ କରିବା ଆବଶ୍ୟକ । ଅଧିକ ଜଳପାନ କରିବା ବିଧେୟ । କାମୋତ୍ତେଜକ କଥାବାର୍ତ୍ତାରୁ ଦୂରରେ ରହିବା ଉଚିତ । ଏହିରୋଗ ଆକ୍ରମଣ କରିବାର ଜାଣିଲେ ଗୁରୁପାକ ଦ୍ରବ୍ୟ ସେବନ ନିଷେଧ । ଉପବାସ



କଲେ ଶରୀରର ଉଷ୍ଣତା ଯଦି ନ କମିଯାଏ ତେବେ ଦୁଇ ଏକଦିନ ଉପବାସ ରହିବ । ଉପବାସ କାଳରେ ଖୁବ୍ ପାଣି ପିଇବା ଆବଶ୍ୟକ । ବ୍ୟାୟାମ ଏକବାର ପରିତ୍ୟାଜ୍ୟ । ଥଣ୍ଡା ପାଣିରେ ଲୁଣ ପକାଇ ବସ୍ତ୍ରଖଣ୍ଡ ଭିଜାଇ ତାର ପଟି ଲିଙ୍ଗ ଉପରେ ଦେବ । କୌଣସି ଔଷଧ ନ ପକାଇ କେବଳ ଥଣ୍ଡାପାଣିର ପିଚକାରୀ ନେଲେ ଜଳାପୋଡ଼ା କମିଯାଏ । ଜଳାପୋଡ଼ା କମି ଗଲାପରେ ଗରମ ପାଣିର ପିଚକାରୀ ନେବା ଦରକାର । ପ୍ରସ୍ରାବ କରିବା ସମୟରେ ଯଦି କିଛି କଷ୍ଟ ବୋଧହୁଏ ତେବେ ଅଣ୍ଡକୋଷ ସମେତ ଲିଙ୍ଗକୁ ଥଣ୍ଡାପାଣିରେ ବୁଡ଼ାଇ ରଖ ।

ଯଦି ବାଗୀ କିମ୍ବା ଗଲିଟି ବାହାରିବାର ଜଣାଯାଏ ତେବେ ଥଣ୍ଡାପାଣିର ପଟି ତା ଉପରେ ଦିଅ । ଏହା ଦ୍ୱାରା ତାହା ବସିଯାଏ । ବିଡ଼ି, ସିଗ୍ରେଟ୍, ଚା, କଫି, ମଦ, ମାଂସ, ଏ ସବୁ ଖାଇବ ନାହିଁ । ଦିନରେ ଦୁଇଥର ଛଡ଼ା ଅଧିକ ଖାଇବା ଅନୁଚିତ । ସପ୍ତାହରେ ଥରେ ବାଷ୍ପସ୍ନାନ କରିବା ଦରକାର । ଥଣ୍ଡାପାଣିରେ ପେଟସ୍ନାନ ଓ ଦୈନିକ ଥ ୨।୩ର ଇନ୍ଦ୍ରିୟ ସ୍ନାନକଲେ ବହୁ ଉପକାର ମିଳେ ।

---

## ବାଷ୍ପ ସ୍ନାନ ବିଧି

ଗୋଟିଏ ବନ୍ଦଘରେ ଖଣ୍ଡେ ଦଉଡ଼ିଆ ଖଟ ପକାଇ ସେଥିରେ କୌଣସି ପ୍ରକାର ବିଛଣା ବିଛାଇବ ନାହିଁ । ତା'ର ଉପରେ ରୋଗୀ ସମ୍ପୂର୍ଣ୍ଣ ଲଙ୍ଗଳା ହୋଇ ଉପରମୁହାଁ ଭାବରେ ଶୋଇବ । ତତ୍ପରେ ତା ଉପରେ ଖଣ୍ଡେ କମ୍ବଳ ବା କୌଣସି ଖଣ୍ଡେ ମୋଟା ଚଦର ଏପରି ଭାବରେ ଘୋଡାଇ ଦେବ ଯେପରି ତାହା





ଗୁହ ପାଖରେ ମାଟିକୁ ସ୍ପର୍ଶ କରେ । ଢାକୁଣି ଥିବା ପାତ୍ରରେ ଗରମ ପାଣି କରି ଖଟତଳେ ରୋଗୀର ଅଣ୍ଟା ପାଖକୁ ଗୋଟିଏ ପାତ୍ର ଓ ଅନ୍ୟ ଗୋଟିଏ ପାଦ ପଟେ ତଳେ ରଖି ତା'ର ଢାକୁଣି ଖୋଲି ଦିଅ, ଯେପରି ବାଷ୍ପ ରୋଗୀର ଦେହରେ ବାଜେ ଓ ବାହାରକୁ ବାହାରି ନ ଆସିପାରେ । ଏଥିପାଇଁ ଗୁହଗୋଟି ପାତ୍ର ପ୍ରୟୋଜନ । ଅନ୍ୟ ଦୁଇଟି ପାତ୍ର ଆଣି ରୋଗୀର ଖଟତଳେ ରଖି ଏ ଦୁଇ ପାତ୍ର କାଢ଼ି ନେଇ ଯିବାକୁ ହେବ । ବାଷ୍ପପାତ୍ର ରୋଗୀର ବେକଠାରୁ ଗୋଡ଼ ପର୍ଯ୍ୟନ୍ତ ସଜାଇ ରଖିବାକୁ ହେଉଥିବ । ଏ କାର୍ଯ୍ୟ ପାଇଁ ଚୌଡ଼ା-ମୁହାଁ ପାତ୍ରର ଆବଶ୍ୟକ । ଏହିପରି ୨୦।୨୫ ମିନିଟ କାଳ ବାଷ୍ପସ୍ନାନ କରିବା ବିଧି ( ୧୦ ନମ୍ବର ଚିତ୍ର ଦେଖ ) । ଏହାପରେ ଶୀତଳ ଜଳରେ ରୋଗୀ ସ୍ନାନ କରିବା ଉଚିତ । ବସିକରି ମଧ୍ୟ ଏହିପରି ସ୍ନାନ କରାଯାଏ । ଏଥିପାଇଁ ବେତବୁଣା ଚୌକି ଦରକାର ଓ ଦୁଇଟି ପାତ୍ର ଆବଶ୍ୟକ ( ୧୧ ନମ୍ବର ଚିତ୍ର ଦେଖ ) । ମୋଟ ଉପରେ କଥା ହେଉଛି ବାଷ୍ପସ୍ନାନ ବେଳେ ଖଟ ସହ ଏପରି ଭାବରେ ମୋଟା କମ୍ବଳ ଦ୍ୱାରା ଘୋଡ଼ାଇ ଦେବ, ବାଷ୍ପ ଯେପରି ପଦାକୁ ବାହାରି ନ ଯାଏ । ବାଷ୍ପସ୍ନାନ ବେଳେ ମୁହଁ ମଧ୍ୟ ଘୋଡ଼ାଇ ରଖିବା ଆବଶ୍ୟକ । ଅସହ୍ୟ ବୋଧ ହେଲେ କେତେକ ମିନିଟ ବାଦ୍ ମୁହଁରୁ କାଢ଼ି ଦିଆଯାଇ ପାରେ । ବାଷ୍ପ ସ୍ନାନ ପରେ ଥଣ୍ଡା ଜଳରେ ସ୍ନାନ ନିତାନ୍ତ ପ୍ରୟୋଜନ ।

———

## ପେଟସ୍ନାନ Hip Baths

ବଜାରରେ ପେଟ ସ୍ନାନ କରିବା ପାଇଁ ଏକ ପ୍ରକାର ଟବ୍ ମିଳେ । ନିଜର ଶରୀର ଅନୁସାରେ ଗୋଟେ ବଡ଼ ଯେ କୌଣସିଟିରୁ



ଗୋଟିଏ ସଂଗ୍ରହ କର । ଏଥିରେ ଥଣ୍ଡା ପାଣି ଭର୍ତ୍ତିକର । ଯେପରି ବସିଲେ ତୁମ୍ଭର ନାଭି ଉପର ପର୍ଯ୍ୟନ୍ତ ପାଣିରେ ବୁଡ଼ିଯାଏ । କିନ୍ତୁ ବରଫ ଦ୍ୱାରା ଥଣ୍ଡା ହୋଇଥିବା ପାଣି ଏଥି ସକାଶେ ବଡ଼ କ୍ଷତିକର । କେବଳ ଶରୀରକୁ ଥଣ୍ଡା ବୋଧ ହେଉଥିବା ଭଳି ପାଣିର ପ୍ରୟୋଜନ ।

ଟବରେ ପାଣି ଭର୍ତ୍ତିକରି ତା ଭିତରେ ବସ । ଯେପରି କି ଜଙ୍ଘ, ପେଟ ଓ ନାଭି ପାଣିରେ ବୁଡ଼ି ରହି ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ବାହାରେ ରହେ (୧୭ ନମ୍ବର ଚିତ୍ର ଦେଖ) । ପାଣିରେ ବସିକରି ମୋଟା ତଉଲିଆ ଦ୍ୱାରା ନାଭି ଓ ନାଭିତଳକୁ ଧୀରେ ଧୀରେ ଘଷି ହୁଅ । କିନ୍ତୁ ଯେପରି ଜୋରରେ ରଗଡ଼ି ନ ହୁଏ । ପେଟସ୍ନାନ ବାୟୁ ଯାତାୟାତ ହେଉଥିବା ଖୋଲା ଘରେ କରିବାକୁ ହୁଏ । ଯେ ପର୍ଯ୍ୟନ୍ତ ଶରୀରରେ କମ୍ପ ନ ଆସିଛି, ସେ ପର୍ଯ୍ୟନ୍ତ ଏହି ସ୍ନାନ କରୁଥିବ । ଆରମ୍ଭ ସମୟରେ ଅଧିକ ସମୟ ସ୍ନାନ ନ କରି ଧୀରେ ଧୀରେ ପ୍ରତିଦିନ ସମୟ ବଢ଼ାଉଥିବ ।

ରୋଗୀ ଯଦି ଦୁର୍ବଳ ହୋଇଥାଏ ୧୬ ନମ୍ବର ଚିତ୍ରରେ ଥିବା ଗୋଡ଼ ଭିଜାଇବାର ପ୍ରଣାଳୀ ଦେଖ ଏବଂ ଦୁର୍ବଳରୋଗୀର ପାଦ ଓ ଶିର କମ୍ବଳ ଦ୍ୱାରା ଢାଙ୍କି ଦେବା ଉଚିତ ।

ସ୍ନାନ ସମାପ୍ତ ହେଲେ ଶରୀରକୁ ଭଲ ଭାବରେ ପୋଛିପୋଛି କରିଦେଇ ଶୁଷ୍କ ବସ୍ତ୍ର ଓ ଜାମା ପିନ୍ଧି ଭ୍ରମଣ କରିବାକୁ ଚାଲି ଯିବା ଉଚିତ । ଭ୍ରମଣ ସମୟରେ ବାୟୁ ସନ୍ତରଣ (Air weeming) ଅର୍ଥାତ୍ ହାତ ହଲାଇ ଖୁବ୍ ଜୋରରେ ଚାଲିବା ଉଚିତ । ଯଦି ଭ୍ରମଣ କରିବାକୁ ରୋଗୀ ନ ପାରେ ତେବେ ଖୋଲା ପବନରେ





ବ୍ୟାୟାମ କଲେ ସୁଫଳ ମିଳେ । ରୋଗୀ ଯଦି ଅଶକ୍ତ ହୋଇ ଥାଏ ତେବେ ଗରମ ବସ୍ତ୍ର ଘୋଡ଼ି ହୋଇ ଚୁପ୍ ହୋଇ ଶୋଇ ରହିବ । ଏହା ଦ୍ୱାରା ମଧ୍ୟ ଶରୀରରେ ଉତ୍ତାପ ଆସି ଯାଏ ।

## ଇନ୍ଦ୍ରିୟ ସ୍ନାନ (Sirz baths)

ଏହି ସ୍ନାନ ହିପ୍‌ବାଥ ସମୟରେ ମଧ୍ୟ କରି ଯାଇପାରେ । ଖାଲି ଇନ୍ଦ୍ରିୟ ସ୍ନାନ କରିବାକୁ ଯଦି ଆବଶ୍ୟକ ହୁଏ ତେବେ ଟବରେ ପାଣିଭରି ସେଥି ଭିତରେ ଗୋଟିଏ ନିଚୁ କାଷ୍ଠାସନ ପକାଇ ତା ଉପରେ ବସି ଯେପରି ଲିଙ୍ଗ ଓ ଅଣ୍ଡକୋଷ ପାଣିରେ ଲାଗି ରହିବ । ଖଣ୍ଡିଏ ପରିଷ୍କାର ନରମ ତଉଲିଆରେ ଲିଙ୍ଗାଗ୍ର ଭାଗକୁ ଧୀରେ ଧୀରେ ଧୁଅ । ଏପରି ଧୀରେ ଧୀରେ ଧୋଇବ ଯେପରି ଛୁଣ୍ଡି ନ ଯାଏ । ଆବଶ୍ୟକ ଅନୁସାରେ ୧୦।୩୦ ମିନିଟ ଏପରି କରାଯାଇ ପାରେ ।

ସ୍ତ୍ରୀଲୋକ ମଧ୍ୟ ଏପରି ସ୍ନାନ କରିପାରେ । ସେ ସେହିପରି କାଷ୍ଠାସନରେ ବସି ନରମ ତଉଲିଆ ବା ଖୋଲାହାତ ଦ୍ୱାରା ପାଣି ଛାଟି ଯୋନିଦ୍ୱାର ଓ ଯୋନିପ୍ରଣାଳୀର ଚାରିପାଖ ଧୀରେ ବିସ୍ତାର କରି ଦେଇବା ଆବଶ୍ୟକ । କିନ୍ତୁ ମନେ ରଖିବାକୁ ହେବ ଯେ ମାସିକଧର୍ମ ସମୟରେ ସ୍ତ୍ରୀ ପକ୍ଷରେ ଉକ୍ତ ସ୍ନାନ ସମ୍ପୂର୍ଣ୍ଣ ନିଷେଧ ।

ଔପସର୍ଗିକ ମେହରୋଗୀ ପକ୍ଷରେ ଏହି ଉଭୟ ପ୍ରକାର ସ୍ନାନ ବିଶେଷ ହିତକର । ଏଥିରେ ଧୀରେ ଧୀରେ ରୋଗ ସ୍ଥାୟୀ ଭାବରେ ଆରୋଗ୍ୟ ହୋଇଯାଏ ।

—*—

## ସ୍ୱପ୍ନଂରଶ୍ମି ଚିକିତ୍ସା ଓ ରୋଗିପ୍ରସ୍ତୁତ ପ୍ରଣାଳୀ

ଗୋଟିଏ ବଡ଼ ନୀଳ ରଙ୍ଗର ବୋତଲ ଆଣ । ତାହାକୁ ଚୂର୍ ପରିଷ୍କାର ଭାବରେ ଧୋଇ ଦିଅ ଯେପରି ସେଥିରେ କୌଣସି



ପ୍ରକାର ମଇଳାର ଦାଗ ନ ରହେ । ସ୍ୱଚ୍ଛ ପାଣିଥିଲି ପରିଷ୍କାର ବସ୍ତ୍ର ଖଣ୍ଡକୁ ଚାରି ଚଉତ କରି ବୋତଲରେ ପାଣିକୁ ଛାଣି ଦିଅ । କୂଅ, ନଈ ବା ପୁଷ୍କରିଣୀର ପରିଷ୍କାର ଜଳ ଏଥି ପକ୍ଷେ ଉପଯୋଗୀ । ଯେଉଁ ରଙ୍ଗର ବୋତଲ ସେହି ରଙ୍ଗର କାଚର କର୍କ ଦ୍ୱାରା ବୋତଲକୁ ବନ୍ଦ କରି ଦିଅ । ଯଦି ସେହି ରଙ୍ଗର ଟିପି ନ ମିଳେ ତେବେ ସାଧାରଣ ଟିପି ଲଗାଇ ଭଲ ଭାବରେ ବନ୍ଦ କରିଦେବ । ସେହି ବୋତଲକୁ କୌଣସି ଖଣ୍ଡ କାଠର ତକ୍ତା ଉପରେ ଖରାରେ ରଖ । ଦିନ ୧୦ଟା ଠାରୁ ୫ଟା ପର୍ଯ୍ୟନ୍ତ ଏହା ଖରାରେ ରଖିବାକୁ ହେବ । କିନ୍ତୁ ମନେ ରଖିବାକୁ ହେବ ଯେ, ଏହି ସାତ ଘଣ୍ଟା ସେ ବୋତଲ ଯେମିତି ଖରା ଖାଏ । ସେହି ୭ ଘଣ୍ଟା ମଧ୍ୟରେ ବାଦଲ କିମ୍ବା ଅନ୍ୟ କୌଣସି ଛାୟା ଯେପରି ସେ ବୋତଲ ଉପରେ ନ ପଡ଼େ । ତାପରେ ଖଣ୍ଡେ ନୀଳବର୍ଣ୍ଣର କାଗଜରେ ଉକ୍ତ ବୋତଲକୁ ଗୁଡ଼ାଇ ଦୀପ ବା ଲଣ୍ଠନ ବା ଉପର ଆଲୁଅ ନ ପଡ଼ୁଥିବା ଘରରେ ଏକ ଅନ୍ଧାରୁଆ ସ୍ଥାନରେ ରଖିଦିଅ । ପ୍ରତିଦିନ ପାନକୁ ୨୪ ତୋଲା ହିସାବେ ଦିନକୁ ୩ ପାନ ସେବନ କର । କାଚ ଗିଲାସରେ ଏ ଜଳ ସେବନ କରିବାକୁ ହୁଏ ।

ଆବଶ୍ୟକ ମନେକଲେ ଏଥିରେ ଅନ୍ୟ ପାଣି ମିଳାଇ ହାଲୁକା କରି ସେବନ ମଧ୍ୟ କରା ଯାଇପାରେ । ଏ ରୋଗ ପକ୍ଷେ ହଳଦିଆ ରଙ୍ଗ ବୋତଲର ପାଣି ମଧ୍ୟ ଲାଭଦାୟକ ଅଟେ । ଏହା ମଧ୍ୟ ଉପରୋକ୍ତ ପ୍ରକାରେ ପ୍ରସ୍ତୁତ କରାଯାଏ ।







# ଚତୁର୍ଦ୍ଦଶ ଅଧିକରଣ

## ଉପଦଂଶ ( SYPHILIS )

"Syphilis is a hard creditor—a creditor that does not accord grace to any one."

"It is estimated that one out of every ten adult people suffers or has at one time suffered from syphilis........."

—Dr. J. Dulbery. M. D. J. P.

ଭାରତରେ ଗର୍ମି ରୋଗୀ ସଂଖ୍ୟା ପ୍ରାୟ ଦୁଇ କୋଟିରୁ କମ୍ ହେବ ନାହିଁ । ଏହି ରୋଗ ପୂର୍ବେ ଭାରତରେ ନ ଥିଲା । ଉପଦଂଶ ଆମ ଦେଶୀୟ ରୋଗ ହୋଇ ପାରେ, କିନ୍ତୁ ଗର୍ମି ରୋଗକୁ ଆମ ଦେଶରେ ଫିରଙ୍ଗ ରୋଗ ବୋଲି କୁହାଯାଏ । ଜାଣେ ଇଂରେଜ-ମାନେ ଭାରତ ଆସିବା ଦିନଠାରୁ ଏହା ଆମ ଦେଶରେ ସଂକ୍ରମିତ ହୋଇଅଛି । କବିରାଜମାନେ ଏହି ଗର୍ମୀ ବା ଫିରଙ୍ଗ ରୋଗକୁ ଭିନ୍ନ ଉପଦଂଶ ରୋଗ ବୋଲି ଅଲଗାଲି କହନ୍ତି ଅଛନ୍ତି । ଏଥିରୁ ଜଣାଯାଏ ଉପଦଂଶ ଓ ଗର୍ମୀରୋଗ ଏକ ରୋଗ ନୁହେଁ ।

ଗର୍ମୀ ବଡ ଅସାଧ୍ୟ ରୋଗ । ଏହା ପୁରାତନ ହୋଇଗଲେ ଆରୋଗ୍ୟ ହେବାର ସମ୍ଭାବନା ଖୁବ୍ କମ । ଯେଉଁ ମାତା ବା ପିତା କିମ୍ବା ମାତାପିତା ଉଭୟ ଏ ରୋଗାକ୍ରାନ୍ତ, ସେମାନଙ୍କ ସନ୍ତାନ ସନ୍ତତି କେବେହେଁ ନିରୋଗ ହୋଇ ଜନ୍ମ ହେବ ନାହିଁ । ସେ

[ ନଂ: ୬୦ ]



ଲିଙ୍ଗଶିରର ଅଗ୍ରଭାଗରେ ଓ ଅଣ୍ଡକୋଷରେ
ଫିରଙ୍ଗ ବ୍ରଣ ।
( ୩୫୭ ପୃଷ୍ଠା ଦ୍ରଷ୍ଟବ୍ୟ )

[ ନଂ: ୬୧ ]



ଲିଙ୍ଗରେ ବାହ୍ୟ ଫିରଙ୍ଗ ।
( ୩୫୭ ପୃଷ୍ଠା ଦ୍ରଷ୍ଟବ୍ୟ )



ଅଜାଣରୁ ରୋଗର ଉତ୍ପତ୍ତି ଥାଏ । ମାତା ପିତାଙ୍କ ପାପ ଫଳ କିପରି ସନ୍ତାନ ଉପରେ ପ୍ରତିଫଳିତ ହୁଏ ତା'ର ଏକ ନମୁନା ୧୯ ନମ୍ବର ଶବରେ ଦେଖନ୍ତୁ ।



## ଉପଦଂଶ ଓ ଫିରଙ୍ଗ ରୋଗ ମଧ୍ୟରେ ପାର୍ଥକ୍ୟ

ଉପଦଂଶ ରତିରୋଗ ନିଶ୍ଚୟ କିନ୍ତୁ ଏହା ଗର୍ମୀ ବା ଫିରଙ୍ଗ ରୋଗଠାରୁ ଭିନ୍ନ ଅଟେ । ପ୍ରାଚୀନ ଭାରତରେ ବେଶ୍ୟା ବି ଥିଲେ ଓ ବେଶ୍ୟାଗାମୀ ପୁରୁଷ ମଧ୍ୟ ଥିଲେ । ମାତ୍ର ସେମାନଙ୍କର ଅଗୁର ବ୍ୟବହାର, ଭାବ ଭଙ୍ଗୀ, ଏପରି ଉଚ୍ଚକୋଟିର ଥିଲା ଯେ ଗର୍ମୀ ଭଳି ଉତ୍ପାତକ ବ୍ୟାଧିର ସୃଷ୍ଟି ହୋଇ ପାରି ନ ଥିଲା । କିନ୍ତୁ ଭାରତକୁ ବିଦେଶୀମାନଙ୍କ ଆଗମନ ସଙ୍ଗେ ସଙ୍ଗେ ଏହି ଫିରଙ୍ଗ ରୋଗ ଆମ ଦେଶରେ ଆସନ ପାତି ବସିଅଛି, ଯାହାକି ବର୍ତ୍ତମାନ କୋଟି ସଂଖ୍ୟା ଲୋକଙ୍କ ଦେହରେ ସଂକ୍ରମିତ ହୋଇ ସାରିଲାଣି ।

ଗର୍ମୀରୋଗରୁ ଅନେକ ପ୍ରକାର ଅନ୍ୟ ରୋଗର ଉତ୍ପତ୍ତି ହୁଏ । ଯଥା:—ଗଣ୍ଠିବାତ ଓ ପାଗଳାମି ଆଦି । ଉପଦଂଶରୁ ମାତା-ପିତାର ସନ୍ତାନକୁ ମୂର୍ଚ୍ଛା, ଗଣ୍ଡମାଳା, ଓ ଉନ୍ମାଦ ରୋଗ ମଧ୍ୟ ହୋଇ ଯାଇପାରେ । ଫିରଙ୍ଗ ରୋଗ ଶରୀରରେ ପ୍ରବେଶ କଲେ ଶରୀରର ହାଡ଼ ବହୁତ ଦୁର୍ବଳ ହୋଇଯାଏ, ଟିକିଏ ମାଡ଼ ଅଘାତରେ ତାହା ଭାଙ୍ଗିଯାଇ ପାରେ ।

ଆମର ଆୟୁର୍ବେଦ ଗ୍ରନ୍ଥରେ ଉପଦଂଶ ରୋଗ ଉତ୍ପତ୍ତିର ଅନେକ କାରଣ ଦେଖିବାକୁ ମିଳେ । ମାଧବକର ନିଦାନରେ ବର୍ଣ୍ଣିତ ଅଛି ଯେ ପାଞ୍ଚଟି କାରଣରୁ ଉପଦଂଶ ରୋଗ ହୋଇପାରେ,





ଯଥା—ହାତରେ କୌଣସି ଚୋଟ ଲାଗିଲେ, ନଖ ଦାନ୍ତ କଣ୍ଟୁ ନହୁରୁଣୀ ଲାଗିଗଲେ, ଯାନ୍ତରେ କିଛି ଆଘାତ ଲାଗିଲେ, ମୈଥୁନ କରିଲା ପରେ ଲିଙ୍ଗକୁ ଧୋଇ ନ କଲେ, ଅତ୍ୟନ୍ତ ସ୍ତ୍ରୀ ସମ୍ଭୋଗ କଲେ, କଚଡ଼ା ବାଳଯୁକ୍ତା ସ୍ତ୍ରୀକୁ ମୈଥୁନ କଲେ, କ୍ଷାର କିମ୍ବା ଗରମ ଜଳରେ ଲିଙ୍ଗ ଧୋଇଲେ।

ଫିରଙ୍ଗ ବା ଗର୍ମୀ ରୋଗ ସ୍ତ୍ରୀ ଓ ପୁରୁଷ ଉଭୟଙ୍କୁ ହୋଇ-ପାରେ। କିନ୍ତୁ ଉପଦଂଶ କେବଳ ପୁରୁଷମାନଙ୍କୁ ହୋଇ ଥାଏ। ଉପରେ ବର୍ଣ୍ଣିତ କାରଣ ଛଡ଼ା ଆଉ କେତୋଟି କାରଣରୁ ମଧ୍ୟ ଉପଦଂଶ ରୋଗ ଆକ୍ରମଣ କରେ। ଯଥା—ଅତି ବ୍ରହ୍ମଚର୍ଯ୍ୟ ରଖିଲେ, ବ୍ରହ୍ମଗୃହିଣୀ କିମ୍ବା ରଜସ୍ୱଲା ସ୍ତ୍ରୀ ସହବାସ କଲେ, ବାଯୁ କିମ୍ବା ମୂତ୍ରର ବେଗ ଧାରଣ କଲେ, ଏହା ଉତ୍ପନ୍ନ ହୋଇ ଥାଏ, କିନ୍ତୁ ଫିରଙ୍ଗ ବା ଗର୍ମୀ ରୋଗ ଏ ସବୁ କାରଣରୁ ଉତ୍ପନ୍ନ ହୁଏ ନାହିଁ। ଏହା କେବଳ ଦୁଷିତଯୋନି ବା ଦୁଷିତଲିଙ୍ଗ ସହ-ବାସରେ ଉତ୍ପନ୍ନ ହୁଏ ବୋଲି ଚିକିତ୍ସାବିଦ୍‌ମାନଙ୍କର ମତ। ଆଉ ମଧ୍ୟ ଏହି ଗର୍ମୀରୋଗ ଅତ୍ୟନ୍ତ ଭୟାନକ ସଂକ୍ରାମକ ବ୍ୟାଧି, ଅର୍ଥାତ୍ ଛୁଆଁ ରୋଗ। ଉପଦଂଶ ରୋଗରେ ରୋଗୀର ଶୋଥ (ଫୁଲା) ଉତ୍ପନ୍ନ ହୁଏ। କିନ୍ତୁ ଫିରଙ୍ଗ ରୋଗରେ ଫୁଲାଯିବା ଏହାର ମୁଖ୍ୟ କାରଣ ନୁହେଁ। ଉପଦଂଶ କିମ୍ବା ଫିରଙ୍ଗ ଏହା ଭଲ ଭାବରେ ଚିକିତ୍ସା କଲେ ସୁଫଳ ମିଳେ।

---

## ଉପଦଂଶର ପ୍ରକାର ଭେଦ

ଉପଦଂଶ ପାଞ୍ଚ ପ୍ରକାର ଅଟେ। ୧—ବାତଜ, ୨—ପିତ୍ତଜ, ୩—କଫଜ, ୪—ସନ୍ନିପାତଜ ଓ ୫—ରୁଧିର ସଜାତେ।



**ବାତଜ ଲକ୍ଷଣ**—ଲିଙ୍ଗ ଉପରେ କଳା ରଙ୍ଗର କୁଣ୍ଡିଆ ଦେଖାଯାଏ, ସବୁବେଳେ ବେଦନା ହୁଏ । ଲିଙ୍ଗ ସରୁ ହେଲେ ଉତ୍ତେଜିତ ରହେ ।

**ପିତ୍ତଜ ଲକ୍ଷଣ**—ଲିଙ୍ଗ ଉପରେ ହଳଦିଆ ରଙ୍ଗର କୁଣ୍ଡିଆ ହୋଇ ଏଥିରୁ ପାଣି ବହେ ଓ କୁଣ୍ଡେଇଲେ ଜଳା ପୋଡ଼ା କରେ ।

**କଫଜ ଲକ୍ଷଣ**—ସାରା ଓ ବଡ଼ ବଡ଼ କୁଣ୍ଡିଆ ହୁଏ, ଫୁଲଯାଏ କୁଣ୍ଡେଇ ହୁଏ ଓ ଗାଢ଼ ପୂଜସ୍ରାବ ଘଟେ ।

**ସନ୍ନି ପାତଜ**—ଉପରୋକ୍ତ ତିନି ପ୍ରକାର ଲକ୍ଷଣ ଏକାବେଳେ ଦେଖାଦେଲେ ଏହା ଅସାଧ୍ୟ ହୋଇ ଉଠେ ।

**ରୁଧିର ପ୍ରକାଶେ**—କୁଣ୍ଡିଆ କଳା ଦେଖାଯାଏ, କୁଣ୍ଡେଇ ହେଲେ ରକ୍ତ ବାହାରେ, ଜଳାପୋଡ଼ା କରେ, ପୁଣି ପିତ୍ତଜ ଲକ୍ଷଣ ପ୍ରକାଶ ପାଏ । ଏହା ରୁଧିର ଦୋଷରୁ ଘଟେ ବୋଲି ଜାଣିବାକୁ ହୁଏ ।

ଉପଦଂଶାଗ୍ରସ୍ତ ରୋଗୀ ଯଦି ସ୍ତ୍ରୀସହବାସ କରେ ସେଥିରେ ସ୍ତ୍ରୀରତି ସର୍ବନାଶ ହୁଏ, କିନ୍ତୁ ପୁରୁଷର ଲିଙ୍ଗ କଟିକଟି ସଡ଼ିବାକୁ ଆରମ୍ଭ କରେ । ସେଥିରେ ପୋକ ପଡ଼ିଯାନ୍ତି । ଏ ରୋଗୀ ଆଉ ଭଲ ହେବାର ଆଶା ନ ଥାଏ । ମୃତ୍ୟୁମୁଖରୁ ତା'ର ଆଉ ନିସ୍ତାର ନ ଥାଏ ।

ଏଥିର ମଧ୍ୟ ଉପଦଂଶ ରୋଗ ପୁରୁଣା ହୋଇଗଲେ ସାରା ଶରୀରରେ ବିସ୍ଫୋଟକ ବାହାରି ଯାଏ । ତାହା କ୍ରମେ ଘାହୋଇ ପରିଣତ ହୋଇ ପୂଜ ଲସି ବହେ । ଅସ୍ଥି ମଧ୍ୟ ଖରାପ ହୋଇଯାଏ,





ମୁଣ୍ଡରୁ ବାଳ ଉପୁଡ଼ି ଯାଏ । ଦେହର ସନ୍ଧିସ୍ଥାନ ଗୁଡ଼ିକ ଦରଜ ଲାଗେ । ପିନସ ରୋଗ ମଧ୍ୟ ଆକ୍ରମଣ କରେ, ଏହାର ଶେଷ ପରିଣତି କୁଷ୍ଠରୋଗ ।



## ଗର୍ମି ବା ଫିରଙ୍ଗ ରୋଗର ପ୍ରକାର ଓ ଭେଦ

ଏହା ତିନି ପ୍ରକାର ଅଟେ । ବାହ୍ୟ, ଅଭ୍ୟନ୍ତର ଓ ବାହ୍ୟାଭ୍ୟନ୍ତର ।

୧—ବାହ୍ୟ, ଅର୍ଥାତ୍ ବାହାର ପିରଙ୍ଗ । ଲିଙ୍ଗରେ ଘା' ଭଳି ହୁଏ । ଏହା ମଧ୍ୟ ଦରଜ ଲାଗେ ଏବଂ କ୍ରମେ କ୍ରମେ ଖାଇଯାଏ । ନ୨୧ମ୍ବର ଚିତ୍ର ଦେଖ । ଏହାର ଚିକିତ୍ସା ସହଜ ସାଧ୍ୟ ଅଟେ ।

୨—ଅଭ୍ୟନ୍ତର, ଅର୍ଥାତ୍ ଭିତର ଫିରଙ୍ଗ, ଯାହାକି ଶରୀରର ଭିତରେ ରହେ । ରୋଗକୀଟାଣୁ ରକ୍ତରେ ମିଶି ରକ୍ତ ଦୂଷିତ କରେ । ଏଥି ଯୋଗୁ ଶରୀରରେ ଚକା ଚକା ଦାଗ ଓ ବ୍ରଣ ଇତ୍ୟାଦି ଉତ୍ପତ୍ତି ହୁଏ । ନ୧୮ମ୍ବର ଚିତ୍ର ଦେଖ । ଏହାର ଚିକିତ୍ସା କଷ୍ଟସାଧ୍ୟ ।

୩—ବାହ୍ୟାଭ୍ୟନ୍ତର, ଅର୍ଥାତ୍ ବାହାର ଓ ଭିତର ଉଭୟ ଦିଗକୁ ଏହା ଆକ୍ରମଣ କରେ । ଏଥିରେ ଶରୀର ସଢ଼ିଯାଏ । ମୁଣ୍ଡରୁ ବାଳ ଉପୁଡ଼ି ଯାଏ । ମୂର୍ଚ୍ଛା ଓ ଉନ୍ମାଦନା ଜନ୍ମେ । ଘା'ରୁ ପୂଜ ରକ୍ତସ୍ରାବ ହୋଇ ଦୁର୍ଗନ୍ଧ ହୁଏ । ଏହା ଏକବାରେ ଦୁଃସାଧ୍ୟ ଅବସ୍ଥା ।



## ଗର୍ମୀ ରୋଗର ଆରମ୍ଭିକ ଅବସ୍ଥାର ପରିଣତି

ଗର୍ମୀ ରୋଗର କୀଟାଣୁ ଶରୀରରେ ପ୍ରବେଶ କରି ଶରୀରରେ ବଢ଼ିବାକୁ ଲାଗେ । ୧୭ନମ୍ବର କୀଟାଣୁ ଚିତ୍ର ଦେଖ । ଏହି କୀଟାଣୁ



ଏକ ପ୍ରକାର ବିଷ ରକ୍ତରେ ମିଶାଇ ଦିଏ । ସେଥିରୁ ଆରମ୍ଭ ହୁଏ ତା'ର କାର୍ଯ୍ୟକାରକା ଶକ୍ତି । କ୍ରମେ ଶରୀର ଦୁର୍ବଳ ହୋଇଯାଏ, ଶକ୍ତିର ହ୍ରାସଘଟେ, ପରିପାକ ଶକ୍ତି ମନ୍ଦ ହୋଇଯାଏ, ଶରୀରର ହାଡ଼ସବୁ ଖୁଣିଯାଇ ପୋରନ୍ଧ୍ରା ହୋଇଯାଏ ଏବଂ ନାକ ବସିଯାଏ ।

ଏହା ପ୍ରଥମେ ଆରମ୍ଭ ହୁଏ କୌଣସି ଦୂଷିତଯୋନି ସହବାସରୁ । ସହବାସର ୩୨ ଦିନଠାରୁ ୧୪ଶ ଦିନ ମଧ୍ୟରେ ଏହି ରୋଗ ଫୁଟି ବାହାରି ପଡ଼େ । କେବେ କେବେ ମଧ୍ୟ ଏହା ଅନ୍ତୁର ଡ଼େରରେ ଆକ୍ରମଣ କରେ । ମୈଥୁନର ଅଢ଼ାଇମାସ ମଧ୍ୟରେ ଏହା ମଧ୍ୟ ବାହାରିବାର ଦେଖା ଯାଇଅଛି ।

ଗର୍ମୀ ରୋଗର କୀଟାଣୁ ଯେଉଁ ପଥଦେଇ ଶରୀରରେ ପ୍ରବେଶ କରେ ସେଠାରେ ଗୋଟିଏ ବ୍ରଣ ହୁଏ । ଏହି ବ୍ରଣ ଲିଙ୍ଗ ମୁଣ୍ଡି ପାଖରେ କିମ୍ବା ଅଣ୍ଡକୋଷ ଦେହରେ ହୋଇ ଧୀରେ ଧୀରେ ବଢ଼ିବାକୁ ଆରମ୍ଭ କରେ । ଏହା କ୍ରମେ ବ୍ରଣରୁ ଘା ପାଲଟି ଯାଏ । ୨୦ନମ୍ବର ଛବି ଦେଖ ।

ଏହି ପ୍ରକାର ବ୍ରଣ ପୁରୁଷର ଲିଙ୍ଗ ମୁଣ୍ଡରେ ବା ଅଣ୍ଡ କୋଷରେ ଏବଂ ସ୍ତ୍ରୀର ଯୋନିମୁଖରେ ହୁଏ । ଏହି ବ୍ରଣରୁ କୌଣସି ପ୍ରକାର ପୂଜ ବୁହେ ନାହିଁ କିମ୍ବା ଜଳାପୋଡ଼ା କରେ ନାହିଁ । କେବଳ ପାଣି ଭଳିଆ କସି ଦିଏ । କେଉଁ କେଉଁ ସ୍ଥଳେ କସି ମଧ୍ୟ ଦିଏ ନାହିଁ । ଉପରେ ଟିକିଏ ଫୁଲି ଉଠେ ଓ ଦରଜ ହୁଏ ।

—❋—





## ମାଧ୍ୟମିକ ଦଶା

ରୋଗ ଆରମ୍ଭ ହେବାର ୩।୪ମାସ ପରେ ମାଧ୍ୟମିକ ଦଶାର ଉପସ୍ଥିତ ହୁଏ । ଏ ଅବସ୍ଥାରେ କାହାକୁ କାହାକୁ ଜ୍ୱର ହୁଏ । ଶରୀରରେ ବ୍ରଣ ସବୁ ବାହାରେ । ମୁଣ୍ଡ ଦରଜ ହୁଏ, ଶରୀର କୁଣ୍ଡାଇ ହୋଇ କ୍ଷୁଧା କମିଯାଏ । ମୁହଁ ଓ ଜିଭରେ ଘା'ହୋଇ ଆଖି ଦରଜ ହୁଏ । ଶରୀରର ସନ୍ଧି ସ୍ଥାନରେ ପୀଡ଼ା ଅନୁଭୂତ ହୋଇ ମୁଣ୍ଡର ବାଳ ସବୁ ଝଡ଼ି ପଡ଼େ । ତତ୍‌ପରେ ମୂର୍ଚ୍ଛା, ସ୍ନାୟୁଶୂଳ, ଷୟ ଏପରିକି କୁଷ୍ଠ ରୋଗର ଉତ୍ପତ୍ତି ହୁଏ । ଗର୍ମୀ ଘା'ର ପୁଜ ସବୁ ସଫା ନ କଲେ ଏହା ଶରୀରର ଅନ୍ୟ ସ୍ଥାନରେ ଲାଗିଲେ ଘା'ହୋଇ ଯାଏ । ଏହା ମାଧ୍ୟମିକ ଦଶାର ଭୋଗପାଳ ୮ ମାସରୁ ୨୪ ମାସ ପର୍ଯ୍ୟନ୍ତ ।

ଏପରି ଅବସ୍ଥା ହେଲେ ସୁଦ୍ଧା ପୁରୁଷ ଲଜ୍ଜାରେ ଏହା ବାହାରେ ପ୍ରକାଶ କରେ ନାହିଁ । ସ୍ତ୍ରୀ ମଧ୍ୟ ଆକ୍ରାନ୍ତ ହୋଇ ଏହାକୁ ଲୁଚାଏ । କିନ୍ତୁ ଯେତେବେଳେ ଉପରୋକ୍ତ ଦୁଇ ଓଷ୍ଠ ଫୁଲି ଯାଇ ଦୁର୍ଗନ୍ଧଯୁକ୍ତ ଜଳସ୍ରାବ ହୁଏ, ସେତେବେଳକୁ ଆଉ ଲୁଚାଇବାର ଉପାୟ ରହେ ନାହିଁ ।

## ରୋଗର ଅନ୍ତିମ ଅବସ୍ଥା

ଅନ୍ତିମ ଅବସ୍ଥା ଉପସ୍ଥିତ ହେଲେ ସର୍ବନାଶ ଉପସ୍ଥିତ ହୁଏ । ବାହାର ଭିତର ସାରା ଶରୀର ଗର୍ମୀରେ ସଢ଼ିଯାଏ । ଯକୃତ, ହୃଦ-ଯନ୍ତ୍ର, ଧମନୀ ଆଦିରେ ରୋଗ ପ୍ରବେଶ କରି ତା'ର କାର୍ଯ୍ୟକାରିତା ଶକ୍ତି କମାଇ ଦିଏ । ତାଳୁ ସଢ଼ିଯାଇ ଫାଟିଯାଏ । ପେନସ ରୋଗଭଳି ନାକ ଦବି ଯାଏ । ଜିହ୍ୱା ଫାଟିଯାଏ । ଅଣ୍ଡକୋଷ ଫୁଲିଯାଇ ଦରଜ



ହୁଏ ଓ ଲିଙ୍ଗ ସଢ଼ିଯାଏ । ଶେଷରେ ରୋଗୀ ମୃତ୍ୟୁ ମୁଖରେ ପଡ଼େ ।
ଏହି ରୋଗରୁ ଲାଗି, ଗଣ୍ଠିବାତ ପ୍ରଭୃତି ମଧ୍ୟ ଉତ୍ପନ୍ନ ହୁଏ ।

———○———

## ସାବଧାନତା

୧—ଉପଦଂଶ ଓ ଫିରଙ୍ଗ ଆଦି ରୋଗର ଚିକିତ୍ସା ଆରମ୍ଭ କରିବା ପୂର୍ବରୁ ଜୁଲାପ ନେଇ କୋଷ୍ଠ ପରିଷ୍କାର କରିବା ଉଚିତ ।

୨—ଖାଇବା ଓ ଲଗାଇବା ଦୁଇ ପ୍ରକାର ଔଷଧ ବ୍ୟବହାର କରଣୀୟ ।

୩—ଅଧିକ ମାତ୍ରା ଔଷଧ ପ୍ରୟୋଗ କଲେ ଗଣ୍ଠିବାତ ହୋଇଯିବାର ସମ୍ଭାବନା ଅଛି ରୋଗୀ ମରିଯିବାର ଆଶଙ୍କା ଥାଏ ।

୪—ଏ ସବୁ ରୋଗରେ ପାରା, ରସ କର୍ପୂର, ହିଙ୍ଗୁଳ ଆଦିରେ ପ୍ରସ୍ତୁତ ଔଷଧ ସେବନ କରିବା ଠିକ୍ ନୁହେଁ ।

୫—ଯଦି ଔଷଧରେ ପାରା, ହିଙ୍ଗୁଳ, ଗନ୍ଧକ ଆଦି ଆବଶ୍ୟକ ପଡ଼େ ତେବେ ସେ ଗୁଡ଼ିକ ଭଲ ଭାବରେ ଶୋଧନ କରି ନେବା ଉଚିତ ।

୬—ପ୍ରଥମେ ସାଧାରଣ ଔଷଧ ପ୍ରୟୋଗ କରନ୍ତୁ । ଯଦି ଭଲ ନ ହୁଏ ତେବେ ଅନ୍ୟ ଔଷଧ ବ୍ୟବହାର କରିପାର ।

୭—ପଥ୍ୟାପଥ୍ୟ ପ୍ରତି ବିଶେଷ ଦୃଷ୍ଟି ରଖିବ । କୁପଥ୍ୟ କଲେ ମାନେ ସବୁ ଗୁଡ଼ ଗୋବର ହୋଇଯାଏ ।

————

## ଉପଦଂଶ ନାଶକ ଯୋଗ

୧—ରସକର୍ପୂର ତୋଳା, ଲବଙ୍ଗ ତୋଳା ପୁରୁଣା ଗୁଡ଼ ମଞ୍ଜା ଏ ସବୁକୁ ଖୁବ୍ ସୂକ୍ଷ୍ମ ଭାବରେ ଚୂର୍ଣ୍ଣ କରି ମୁଗ ପରି ବଟିକା ତିଆରି କରିବ । ପ୍ରତିଦିନ ଗୋଟିଏ ଗୋଲି ପାଣି ସହିତ ଖାଇଦେବ ।





୨—ଅମୃତେଲର ରସ, ଛେଳି ଦୁଧରେ ମିଳାଇ ଦେଲେ ଉପକାର ହୁଏ ।

୩—ଘା'ଉପରେ ଡାଳିମ୍ବ ଛେଲର ଚୂର୍ଣ୍ଣ ପକାଇଲେ ଘା'ଶୁଖି ଯାଏ ।

୪— ଶ୍ୱେତ ଜଣାଅର ମଞ୍ଜିକୁ ପାଣିରେ ଘୋରି ଲଗାଇଲେ ଅସାଧ୍ୟ ଉପଦଂଶ ଭଲ ହୋଇ ଯାଏ । ପରେ ହସ୍ତ ଭଲଭାବରେ ଧୋଇବ । ହାତ ଯେପରି ତୁଣ୍ଡରେ ନ ବାଜେ ।

୫—ଭାଖଗ୍ଗ ଝଉର ଚୋଂଲା, ପିପଳ ମୂଳ ଚୋଂଲା ଓ ପିତ୍‌ପଳ ଚୋଂଲା. ଏ ଓ୍ୱକୁ ପାଣିରେ ଭିଜାଇ ଦିଅ । ଭିଜିଗଲା ପରେ ପାଣିକୁ ଛାଣି ନେଇ କୁଟି କରି ପାଣି ସହିତ ଖଲ ଦିଅ । ଏହା ବ.ଦ୍ ଏଥିରେ ନାଗଲ୍ଲ ପାନର ରସକୁ ପକାଇ ଘୋଟ । ହରଡ଼ ଅକୃତ ଗୋଳି ପ୍ରସ୍ତୁତ କର । ସକାଳେ ଓ ସନ୍ଧ୍ୟାରେ ଏକ ଏକ ପାନ ଖାଅ । ଲୁଣ ଖାଇବ ନାହିଁ । ଖାଦ୍ୟ ହିସାବରେ ଘିଅ ଓ ଗହମ ରୁଟି ପ୍ରଶସ୍ତ ।

୬—ଦୁଧିଆ ଘାସ ଆଣି ଶୁଖାଇ ଛାଲରେ, ବଣି ଗଞ୍ଜେଇ ପିଇଲା ପରି ପିଅ । ଏହିପରି ଏକ ସପ୍ତାହ ମଧ୍ୟରେ ୫।୬ଥର ପିଇବ । ପାନ ରେ ସାଥରେ ଶୋଇବ ନାହିଁ । ଏଥିରେ ଉପଦଂଶ ଭଲ ହୋଇ ଯାଏ ।

୭—ପିତ୍ତଜ ଉପଦଂଶର ଘା'ରେ ଗ ଫଲାର୍ ସୂକ୍ଷ୍ମ, ଚୂର୍ଣ୍ଣ ମହୁ ସହିତ ମିଳାଇ ପକାଇଲେ ଆରାମ ହୁଏ ।

— —

କାମ-ବିଜ୍ଞାନ ୨ୟ

[ ନଂ: ୨୨ ]



ଲିଙ୍ଗରେ କୋମଳ ବ୍ରଣ ।

( ୩୬୭ ପୃଷ୍ଠା ଦ୍ରଷ୍ଟବ୍ୟ )



## ଫିରଙ୍ଗ ନାଶକ କେତେକ ଯୋଗ

୧—ଜୁଆଣୀର ଭୂସି, ଖୋରଷ୍ଟ, ଗୋଲମରିଚ, ପ୍ରତ୍ୟେକଙ୍କୁ ସମଭାଗରେ ନେଇ ପାଣିରେ ଘୋଟ । ସେଥିରେ ଛୋଟ ଛୋଟ ଗୋଲି ପ୍ରସ୍ତୁତ କରି ସେବନ କର ।

୨—୦୨ ମା ତୋପ୍‌ଚିନି ଚୂର୍ଣ୍ଣ ମହୁ ସହିତ ଚାଟି ଖାଇଲେ ଫିରଙ୍ଗ ରୋଗ ଦୂର ହୁଏ ।

୩—୧ ଫଳାକୁ କଡ଼େଇରେ ଭାଜି ପୋଡ଼ିଦେବ । ତାହାକୁ ଚୂର୍ଣ୍ଣକରି ସେ ଚୂର୍ଣ୍ଣକୁ ମହୁ ସହିତ ମିଳାଇ ମଲମ ପ୍ରସ୍ତୁତ କରିବ । ଏ ମଲମ ଗର୍ମୀ ଘା'ରେ ଲଗାଇଲେ ଘା' ଶୁଖି ଯାଏ ।

୪—ଚିକିନିଗୁଆ ଘୋରିକରି ଘା'ରେ ଲଗାଇଲେ ଉପକାର ମିଳେ ।



## ହୋମିଓପ୍ୟାଥିକ ଚିକିତ୍ସା

୧—ବ୍ରଣ ଯଦି ଲାଲଦିଆ ପଡ଼ି ଦବି ଯାଉଥାଏ, ଲସି ଦେଉଥାଏ ତେବେ **ମର୍କଂ-କାରଂ** ଦେବା ଦରକାର ।

୨—ଯଦି ବ୍ରଣର ପାଖ ସବୁ ଉଚ୍ଚ ହୋଇଥାଏ, ରକ୍ତ ବାହାରିବାର ଲକ୍ଷଣ ଦେଖାଯାଉଥାଏ ତେବେ **ଏସିଡ୍ ନାଇଟ୍ରିକ୍** ପ୍ରତ୍ୟକ୍ଷ ଫଳପ୍ରଦ ଅଟେ । ଯେଉଁ ରୋଗୀ ପାରଦ ଖାଇବା ଦୋଷରୁ ଏପରି ଅବସ୍ଥା ହୋଇଥାଏ ତାହା ପକ୍ଷେ ଉକ୍ତ ଔଷଧ ବିଶେଷ ହିତକାରୀ ।

୩—ଲିଙ୍ଗମୁଣ୍ଡ ଉପର ଚମଡ଼ା ବ୍ରଣ ଫୁଲି ଉଠିଥିବା କାରଣରୁ ଯଦି ପଛକୁ ହଟାଇ ନହୁଏ ତେବେ **ଏକୋନାଇଟ୍** ଉପଯୋଗୀ ।

୪—ପାର ସେବନ କରିବା ହେତୁ ଯଦି ଦାନ୍ତ ଖୁବ ଦୋହଲି ଯାଇ ଢିଲା ହୋଇଯାଏ ଓ ଚୁଲିଲା ମାଢ଼ି ସେଥିରୁ ରକ୍ତ ବୁହେ ତେବେ ଆର୍ସେନିକମ୍ ଟା'ର ଉପଯୁକ୍ତ ଔଷଧ ।

୫—ଘାରୁ ଯଦି ବହୁ ପରିମାଣରେ ପୂଜ ଦେଉଥାଏ ସେପରି ସ୍ଥଳେ **ସାଇଲେସିଆ** ପ୍ରଯୁଜ୍ୟ ।

୬—ଫିରଙ୍ଗ ରୋଗ ଗ୍ରସ୍ତ ଦୁର୍ବଳ ରୋଗୀ ପାଇଁ **ସଲଫର** ଉପଯୁକ୍ତ ଔଷଧ ।

୭—ଚର୍ମ ଉପର ଗର୍ମୀ ଘା' ଯଦି କ୍ଷୁଦ୍ରାକୃତି ହୁଏ ଓ ରଙ୍ଗ ସଫା ହୁଏ ତେବେ ସେହିପରି ସ୍ଥଳେ **ଥୁଜା** ଦେବ ।

୮—ଉପଦଂଶ ରୋଗ ଆକ୍ରମଣ କରିବାର ଆଶଙ୍କା ହେଲେ ବା ଆକ୍ରମଣର ଆରମ୍ଭ ହେଲେ **ମର୍କ° ସାଲ°** ଏହାର ଉପଯୁକ୍ତ ଔଷଧ ।

୯—ପାରଦର ନାଶ କରିବା ପକ୍ଷେ **ହେପ୍ସଲ୍ଫର୍** ପରମୋତ୍ତମ ଔଷଧ ।

୧୦—ଫିରଙ୍ଗ ଓ ଉପଦଂଶର ଭେଦ, ଏହି ଦୁଇଟିର କୀଟାଣୁ **ସିନାବେରସ୍** ସେବନ ଦ୍ୱାରା ନଷ୍ଟ ହୋଇଯାଏ ।

୧୧-ମୁଖ କିମ୍ବା କଣ୍ଠଦେଶରେ ଘା ହୋଇଗଲେ **ଷ୍ଟିଲଂଜିୟା** ଦେବ ।

୧୨-ରାତ୍ରୀ ସମୟରେ ହାଡ଼ ଭିତରେ ଦରଜ ବୋଧ ହେଲେ **ମେଜେରିୟମ୍** ଉପଯୁକ୍ତ ।




୧୩—ମୁଣ୍ଡରେ, ହାତରେ ଓ ଦେହର ସନ୍ଧିମାନଙ୍କରେ ଦାହକ ବୋଧ ହେଲେ ଫସ୍ଫାଇଟ୍‌ଟୋଲେକ୍ସା ଦବା ଉଚିତ। ଉକ୍ତ ଔଷଧ ଗଣ୍ଠିବାତରେ ମଧ୍ୟ ଉପକାରୀ।

୧୪—ଯଦି ରୋଗ ବହୁତ ବଢ଼ିଯାଇ ଅକ୍ଷି କାନ ଆଦି ଇନ୍ଦ୍ରିୟମାନଙ୍କର ଶକ୍ତି ଦୁର୍ବଳ ହୋଇଯାଏ ଓ ରୋଗୀକୁ ଜୀବନ ଭାର ବୋଧ ହୁଏ ତେବେ ଆରାମ୍ ମେଟାଲ କମ୍‌ରେ ଉପକାର ହୁଏ।

—*—

## ଫିରଙ୍ଗ ରୋଗର ପ୍ରାକୃତିକ ଚିକିତ୍ସା

ଔଷଧ ସେବନ ଦ୍ୱାରା ଫିରଙ୍ଗରୋଗ ଇତ୍ୟାଦି ଜନନେନ୍ଦ୍ରିୟ ସମ୍ବନ୍ଧୀୟ ରୋଗ ସମ୍ପୂର୍ଣ୍ଣରୂପେ ଭଲ ହୁଏ ନାହିଁ ବୋଲି କେତେକ ଚିକିତ୍ସକଙ୍କ ମତ। ଔଷଧ ସେବନ ଦ୍ୱାରା ଏ ରୋଗ ସାମୟିକ ଦବିଯାଏ, କିନ୍ତୁ ସମୟ ପାଇଲେ ପୁଣି ତାହାର ଦେଖାଦିଏ। ମାତ୍ର ସେମାନେ କୁହନ୍ତି ସ୍ନାନ ଚିକିତ୍ସା ଦ୍ୱାରା ଗର୍ମୀରୋଗ ସମୂଳେ ନାଶ ହୁଏ। ପ୍ରଥମେ ପ୍ରଥମେ ରୋଗ କିଛି ବଢ଼ିବାର ଜଣାଯାଏ, କିନ୍ତୁ ଏଥିରେ ଭୟ କରିବାର କାରଣ ନାହିଁ। ଜଳଚିକିତ୍ସା ଦ୍ୱାରା ଉଦ୍ଭୂତ ଙ୍କର ଫିରଙ୍ଗରୋଗର ବୀଜାଣୁ ସମୂଳେ ନଷ୍ଟହୋଇ ଯାଇ ଭବିଷ୍ୟତ ବଂଶଧରମାନଙ୍କୁ ଅଳ୍ପ ସଂକ୍ରମଣ କରିପାରେ ନାହିଁ।

୧—ପ୍ରଥମେ ପ୍ରଥମେ ପ୍ରତିଦିନ ବାଷ୍ପ ସ୍ନାନଗ୍ରହଣ କରି ଦିନ ଭିତରେ ଦୁଇବାର ପେଟସ୍ନାନ କରିବା ଆବଶ୍ୟକ। (ପୃ ୩୪୬।୩୦୮ ବାଷ୍ପସ୍ନାନ ଓ ପେଟସ୍ନାନ ଦେଖ।)

୨-ଦିନ ଭିତରେ ପ୍ରତି ତିନିଘଣ୍ଟାବାଦ ଅତ୍ୟନ୍ତ ଥଣ୍ଡାପାଣିରେ ଇନ୍ଦ୍ରିୟ ସ୍ନାନକର। (ଇନ୍ଦ୍ରିୟସ୍ନାନ(Stiz baths ପୃ୩୫୦ପୃ। ଦେଖ)





୩—ଫିରଙ୍ଗରୋଗର ବ୍ରଣ ଉପରେ ଶୁଷ୍କ ପଙ୍କମାଟିର ପଟି ଚଢ଼ାଇବା ଦରକାର ।

୪—ଯଦି ମାଟିପଟି ପ୍ରୟୋଗରେ ବ୍ରଣରେ କଷ୍ଟ ବୋଧହୁଏ ତେବେ ନରମ ବସ୍ତ୍ରଖଣ୍ଡର ପାଣିପଟି ଦେବା ଉଚିତ । ମଧ୍ୟେ ମଧ୍ୟେ ପାଣିପଟିକୁ ବଦଳାଇ ଦେବା ଆବଶ୍ୟକ ।

୫—ଉତ୍ତାପବର୍ଦ୍ଧକ ଖାଦ୍ୟଠାରୁ ଦୂରରେ ରହିବ । ଉତ୍ତେଜକ ଭୋଜନ ଏଥି ପ୍ରତି ବଡ଼ ଅହିତକାରୀ । ପରିଷ୍କାର ଥଣ୍ଡାପାଣିରେ କାଗଜିଲେମ୍ବୁ ରସ ଦେଇ ପିଇଲେ ଭୋକ ବଢ଼ାଏ । ଭୋକ ଲାଗିଲେ ଦହି, ଛେନା, ମିଶ୍ରି, ଗୁଡ଼ ଓ ସର୍ବତ ଦେବା ଉଚିତ । ଅଙ୍ଗୁର ବେଦନା ନାସପାତି, ସେଓ ଆଦି ଫଳ ଉପଯୁକ୍ତ ଖାଦ୍ୟ । ରୋଗ କିଛି କମ୍ ହୋଇଗଲେ ଲଘୁପାକ ଖାଦ୍ୟ ଆହାର କରିବ ।



## ସୂର୍ଯ୍ୟକିରଣ ଚିକିତ୍ସା

**ବାତଜ ଉପଦଂଶରେ**—ହଳଦିଆ ବୋତଲରେ ତିଆରି କରାଯାଇଥିବା ପାଣି ଦିନରେ ତିନିପାନ ଖାଇବ । ପ୍ରତି ଏକପାନର ପରିମାଣ ତୋ ୨ୟଲା । ଅହୁରି ମଧ୍ୟ ହଳଦିଆ ବୋତଲ ପାଣିରେ ଘାଆକୁ ଧୋଇ ସେହି ପାଣି ଭିଜା କନାରେ ଜଳପଟି ଦେବ । ଗୋଟିଏ କାନର ବତୀକୁ ସେହି ପାଣିରେ ଭିଜାଇ ଲିଙ୍ଗମୁଖରେ ରଖିଲେ ଉପକାର ହୁଏ ।

**ପିତଜ ଉପଦଂଶରେ**—ଈଷତ୍ ନୀଳରଙ୍ଗର ବୋତଲରେ ପାଣି ତିଆରି କରି ନେବ । ଏହି ପାଣିର ପଟି ଘା'ଉପରେ ଦେବ ଏବଂ ସେ ପାଣିରୁ ୬ପାନ କରି ପ୍ରତିଦିନ ସେବନ କରିବ ।



**କଫଜ ଉପଦଂଶରେ**—ଗାଢ଼ ନୀଳବର୍ଣ୍ଣ ବୋତଲର ପାଣି ପ୍ରସ୍ତୁତକରି ଘା'ଉପରେ ଘଷିଦେବ ଓ ପ୍ରତିଦିନ ପାନ କରି ଖାଇବ ।

**ସୂଚନା**—ଯେ କୌଣସି ଉପଦଂଶ ରୋଗର ଚିକିତ୍ସା ହେଉନା କାହିଁକି, ପ୍ରଥମ ଗୃହ ଦିନ ହଳଦିଆ ରଙ୍ଗର ବୋତଲପାଣି ପ୍ରତିଦିନ ପାନ ଖାଇଲାପରେ, ଉପରୋକ୍ତ ଉପଚାର ଆରମ୍ଭ କଲେ ଶୀଘ୍ର ଫଳଲାଭ ହୁଏ ।

ଯେ କୌଣସି ରଙ୍ଗ ବୋତଲର ପାଣି ପ୍ରସ୍ତୁତ କରିବାକୁ ହେଲେ, ତା'ର ପ୍ରସ୍ତୁତ ପ୍ରଣାଳୀ ୩୫୦ ପୃଷ୍ଠା ସୂର୍ଯ୍ୟରଶ୍ମି ଚିକିତ୍ସାରେ ଦ୍ରଷ୍ଟବ୍ୟ ।

ଏହିସବୁ ପ୍ରାକୃତିକ ଚିକିତ୍ସାରେ ଖାଦ୍ୟପେୟରେ ବହୁତ ସାବଧାନ ହେବାକୁ ହୁଏ । କେବଳ ସାତ୍ତ୍ୱିକ ଓ ଲଘୁପାକ ଭୋଜନ କରିବା ଉଚିତ । ଉତ୍ତେଜକ ପଦାର୍ଥ କଦାପି ଗ୍ରହଣ କରିବା ଉଚିତ ନୁହେଁ । ବିଡ଼ି, ସିଗାରେଟ, ଗୁଡ଼ାଖୁ, ଗୁହା, ଭାଙ୍ଗ ଓ ମଦଆଦି ସବୁ ପ୍ରକାର ନିଶାଦ୍ରବ୍ୟ ପରିତ୍ୟାଜ୍ୟ । ରାଗ, ମସଲା, ତେଲ, ଗୁଡ଼, ଖଟା ଆଦି ବନ୍ଦ କରିଦେବା ବିଧେୟ ।



## ଦେହରେ ଯଦି ଦାଗ ଫୁଟିଯାଏ

ଚିକିତ୍ସକମାନେ ଫିରଙ୍ଗ ରୋଗରେ ଯେଉଁ ସବୁ ଔଷଧ ଦିଅନ୍ତି ସେଥିରେ ପାରଦର ଭାଗ ଥାଏ । ଯଦି ଏହା ପରି ବନ୍ଦ ନ ହୋଇଥାଏ, ଶରୀରରେ ଫାଟି ପଡ଼ିବାକୁ ବାହାରି ପଡ଼େ । ଏଥିପାଇଁ କାମନାଶାରେ ଅନ୍ଧହୋଇ ଫିରଙ୍ଗ ରୋଗ ଅର୍ଜନ କରିଥିବା

ରୋଗୀମାନଙ୍କର ଯାଗ୍ରବନ୍ତ ନିବାରଣାର୍ଥେ କେତେକ ଔଷଧ ନିମ୍ନରେ ଦିଆଗଲା ।

୧—ଶୁଦ୍ଧ ଗନ୍ଧକ ୩।୮ ରତି ଗାଈ ଘିଅ ସହିତ କିଛି ଦିନ ସେବନ କଲେ ପାଗ୍ରବନ୍ତ ଦୂର ହୋଇ ଯାଏ ।

୨—ଗାଲ ଚେଲ ୧୦।୧୫ ଟୋପା ଦୁଗ୍ଧରେ ପକାଇ ଖାଇଲେ ପାଗ୍ରଦୋଷ ଶାନ୍ତ ହୁଏ ।

୩—କଲରା ମଞ୍ଜି ପାଣିରେ ବାଟି ସେବନ କଲେ ପାଗ୍ର ବନ୍ତ ଦୂର ହୁଏ ।

୪—କେବଳ ଶୁଦ୍ଧ ଗନ୍ଧକ ସେବନ କଲେ ମଧ୍ୟ ପାଗ୍ର ଦୋଷ ନାଶ ହୁଏ ।

---

## କୋମଳ ବ୍ରଣ ( SOFT CHANCRE )

ଏହି ବ୍ରଣ ଫିରଙ୍ଗ ବା ଉପଦଂଶ ରୋଗର ବ୍ରଣ ସହିତ ପ୍ରାୟ ମିଳିଯାଇ ରୋଗୀ ମନରେ ଆତଙ୍କ ସୃଷ୍ଟି କରେ ଓ ଚିକିତ୍ସକଙ୍କୁ ମଧ୍ୟ ଭ୍ରମରେ ପକାଏ । କୋମଳ ବ୍ରଣ ଏକ ସ୍ଥାନୀୟ ରୋଗ । ଏହା ଗୁପ୍ତେନ୍ଦ୍ରିୟର ଆଖପାଖରେ ହୋଇଥାଏ । ଗର୍ମୀ ପରି ଏହାର ପ୍ରଭାବ ସାରା ଶରୀରରେ ପଡ଼େ ନାହିଁ । ଏହାର କୀଟାଣୁ କେବଳ ଘା'ରେ ଆବଦ୍ଧ ରହେ । ତା'ର ରକ୍ତରେ ମିଶିବାର କ୍ଷମତା ନ ଥାଏ । କାରଣ ଗର୍ମୀ ଆଦି କୀଟାଣୁ ପରି ଏତେ ଭୟାବହ ଓ ବିଷାକ୍ତ ନୁହେଁ । ଏହା ମଧ୍ୟ ଏକ ସଂକ୍ରାମକ ବ୍ୟାଧି । ଏହି କୀଟାଣୁ ଦ୍ୱାରା ଯେଉଁ ବ୍ରଣ ଉତ୍ପନ୍ନ ହୁଏ ତାହା ପୁରୁଷେନ୍ଦ୍ରିୟର ଶିଶ୍ନ ଧାରରେ ଓ ସ୍ତ୍ରୀ ଯୋନି ମୁଖରେ ଦେଖା ଯାଏ । ରୋଗ ସଂକ୍ରମିତ ହେବାର ୨।୩ ଦିନରେ ବ୍ରଣ



ବଢ଼ି ଯାଏ ଓ ୪।୫ ଦିନେ ପୂଜ ହୋଇଯାଏ । ଏହି ବ୍ରଣରେ ଆକାର ଗୋଲ ଓ ଭିତର ଗମ୍ଭୀର ହୋଇଯାଏ । ଶୁଖିବେଳେ ପୂଜରେ ଦୃଷ୍ଟି ରହେ ( ନ ୨୨ମ୍ବର ଚିତ୍ର ଦେଖ । ) ଏହି ରୋଗ ସ୍ଥାୟୀରୋଗ ନୁହେଁ କିମ୍ବା ଭବିଷ୍ୟତ ବଂଶଧର ଉପରେ ଏହାର କୌଣସି ପ୍ରଭାବ ପଡେ ନାହିଁ । ଏହି ରୋଗ ହେଲେ ଆରୋଗ୍ୟ ନ ହେବା ପର୍ଯ୍ୟନ୍ତ ସ୍ତ୍ରୀସମ୍ଭୋଗ ନିଷେଧ । କୌଣସି ଦୂଷିତଯୋନି ସହବାସରେ ଏହା ଗର୍ମୀରେ ମଧ୍ୟ ପରିଣତ ହୋଇ ଯାଇ ପାରେ ।



## ଚିକିତ୍ସା

ଏହି ରୋଗରେ ସଂକ୍ରମିତ ହେଲେ ଇନ୍ଦ୍ରିୟକୁ ସବୁବେଳେ ପରିଷ୍କାର ରଖିବା କର୍ତ୍ତବ୍ୟ । ମଇଳା ଲୁଗା କେବେହେଁ ପିନ୍ଧିବ ନାହିଁ । କିମ୍ବା ହାତକୁ ନ ଧୋଇ ତାହା ସ୍ପର୍ଶ କରିବ ନାହିଁ ।

୧—କାର୍ବୋଲିକ୍ ଏସିଡ଼ରେ ତୁଳା ବୁଡ଼ାଇ ବ୍ରଣ ଉପରେ ଲଗାଅ । ଏହାଦ୍ୱାରା ଜୀବାଣୁ ପୋଡ଼ି ନଷ୍ଟ ହୋଇଯାଏ ।

୨—ଯଦି ବ୍ରଣ ପାଚିକରି ଘା'ହୋଇ ଯାଏ ତେବେ ସେ ଘା'କୁ ଗରମ ଜଳରେ ଭଲକରି ଧୋଇ ଶୁଖିଲା କନାରେ ପୋଛି ଭଲ କରି ପୋଛି ନିଅ । ସେ ଘା'ରେ ଆୟୋଡୋଫର୍ମ ପାଉଡ଼ର ପକାଇ ପତଳା କନା ତାହା ଉପରେ ରଖିଦିଅ । ଅଥବା ଭଲ ପଟି ବାନ୍ଧି ଦିଅ । ଦିନକୁ ଦୁଇଥର ପଟି ବଦଳାଇବା ଉଚିତ ।







# ପଞ୍ଚଦଶ ଅଧିକରଣ

## ସ୍ତ୍ରୀ ମାନଙ୍କର ଗୁପ୍ତ ରୋଗ

ଅପ୍ରାକୃତିକ ମୈଥୁନ, ଅତିମୈଥୁନ, ଓ ବାଲ୍ୟବିବାହ ଆଦି କାରଣ ହେତୁ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କୁ କେତୋଟି ବିଶେଷ ରୋଗ ଆକ୍ରମଣ କରେ । ଯଥା—ପ୍ରଦର, ହିଷ୍ଟିରିଆ (ମୂର୍ଚ୍ଛା) ରଜୋହୀନତା, ବାଧକ ଇତ୍ୟାଦି । ବିବାହ ବିଜ୍ଞାନ ଷୋଡ଼ଶ ପରିଚ୍ଛେଦରେ ଏ ସବୁ ରୋଗ ବିଷୟରେ ବିସ୍ତୃତ ଆଲୋଚନା ଓ ତତ୍ସଂକ୍ରାନ୍ତ ଔଷଧାବଳୀ ସମ୍ବନ୍ଧେ ବିଶେଷ ଭାବରେ ବର୍ଣ୍ଣନା କରା ଯାଇ ଅଛି । ମାତ୍ର କେତୋଟି ବିଷୟ ନେଇ ଏ ଅଧିକରଣ ଆମ୍ଭେମାନେ ଶେଷ କରିବୁ ।

### ହିଷ୍ଟିରିଆ (ମୂର୍ଚ୍ଛା)

ଆୟୁର୍ବେଦ ତନ୍ତ୍ରରେ ଏହାକୁ ଯୋଷାପସ୍ମାର କୁହାଯାଏ । ପ୍ରଦର ଓ ହିଷ୍ଟିରିଆ ଉଭୟ ରୋଗର ବହୁତ ସମ୍ପର୍କ ଅଛି । ଏହି ରୋଗରେ ମୂର୍ଚ୍ଛା, ଅଣ୍ଟା ଓ ତଳପେଟ ଦରଜ ବୋଧହୁଏ । ଶାସ୍ତ୍ରର ଗତିରେ ଅସ୍ଥିର ଆଦି ମୁଖ୍ୟ ଉପଦ୍ରବ ଅଟେ । ଏ ସମୟରେ ରୋଗିଣୀ ଅଦ୍ଭୁତ ବାଜେ କଥା ବକିବାକୁ ଲାଗେ । ଏଣୁ ମୂର୍ଖଲୋକେ ଡାଆଣୀ ଭୂତ ପ୍ରେତ ଲାଗିଛି ବୋଲି ଭାବି ଠିକ୍ ଉପଚାର ନ କରି ଝଡ଼ା, ଫୁଙ୍କା, ଯାଦୁ, ମନ୍ତ୍ରଯନ୍ତ୍ର ଇତ୍ୟାଦିରେ ଲାଗିପଡ଼ନ୍ତି । ଏହା ଦ୍ଵାରା ରୋଗିଣୀର ବିଶେଷ କ୍ଷତି ଘଟେ ।



ହିଷ୍ଟେରିଆ ଆରମ୍ଭ ହେବା ପୂର୍ବରୁ ଗଳାରେ ଦରଜ, ସଜ୍ଞାନାଶ, ମାନସିକ ଗ୍ଲାନି ଆଦିର ଲକ୍ଷଣ ପ୍ରକାଶ ପାଏ । କୌଣସି କୌଣସି ରୋଗିଣୀର ତଳପେଟରୁ ଏକ ଗୋଲାକାର ପଦାର୍ଥ ଉପରକୁ ଉଠିବାର ଦେଖାଯାଏ । ଏ ସମୟରେ ରୋଗିଣୀର ପୁରୁଷ ସହିତ କଥାକଥା କରିବାକୁ, ଆଲିଙ୍ଗନ ତଥା ଭୋଗ କରିବାର ବାସନା ପ୍ରବଳ ହୋଇ ଉଠେ । ମାନସିକ ବିକାରରୁ ମଧ୍ୟ ହିଷ୍ଟେରିଆ ଉତ୍ପନ୍ନ ହୋଇଥାଏ । ଅତିମୈଥୁନ କିମ୍ବା ଅପ୍ରାକୃତିକ ମୈଥୁନ ଦ୍ୱାରା ଯେଉଁ ସ୍ତ୍ରୀଲୋକମାନଙ୍କର ଦୁର୍ବଳତା ଉପସ୍ଥିତ ହୋଇ ଅଛି ଏବଂ କାମପୀଡିତା ନାରୀ ଯେ କି ମୈଥୁନରେ ଚରମ ତୃପ୍ତି ପାଇ ପାରେନି, ଏପରି ସ୍ତ୍ରୀଲୋକକୁ ମଧ୍ୟ ଏହି ରୋଗ ଆକ୍ରମଣ କରେ । ଏହି ରୋଗ ଧନୀ ଲୋକମାନଙ୍କ ଗୃହରେ ପ୍ରାୟ ବେଶୀ ଦେଖାଯାଏ । ସୁନ୍ଦରୀ, ସୁକୁମାରୀ ଓ କମ୍ ବୟସର ସ୍ତ୍ରୀ ବିଧବା ହୋଇଗଲେ କିମ୍ବା ନିର୍ବଳ ବା ନପୁଂସକ ସ୍ୱାମୀ ସହିତ ବିବାହ ହୋଇଗଲା ପରେ ପ୍ରାୟ ଏହି ରୋଗ ଆକ୍ରମଣ କରିପାରେ । ଏ ସବୁ କାରଣ ଅପୂର୍ଣ୍ଣ ମୈଥୁନ କିମ୍ବା ବିନା ମୈଥୁନରୁ ହିଁ ଜନ୍ମେ ।

୧—ବେହୋସ ଅବସ୍ଥାରେ ଥଣ୍ଡା ପାଣିର ଛିଟା ମୁହଁକୁ ଦେଲେ ମୂର୍ଚ୍ଛା ଭଙ୍ଗ ହୁଏ ।

୨—ଜାଇଫଳ ଚୂର୍ଣ୍ଣକର ଦୁଇ ଚିଣ୍ଟିରେ ନାକରେ ଦିଅ ଦେଲେ ମଧ୍ୟ ମୂର୍ଚ୍ଛା ଭଙ୍ଗ ହୁଏ ।

୩—ଚୂନ ଓ ନିଶାଦଳ ସମ ଭାଗରେ ଚୂର୍ଣ୍ଣ କରି ଗୋଟିଏ ଶିଶିରେ ପୂରାଇ ରଖ । ଏହାକୁ ଭଲ ଭାବେ ହଲାଇ ମିଳାଇ ଦିଅ । ତାପରେ ଠିପିଖୋଲି ରୋଗିଣୀକୁ ଶୁଙ୍ଘାଇଦେଲେ ମୂର୍ଚ୍ଛା ଛାଡେ ·





## କେତେକ ଯୌଗିକ ଔଷଧ

୩— କସ୍ତୁରୀ ଭୈରବ ୨ ରତି, ସଞ୍ଜୀବନୀ ବଟି ୨ ରତି, ଶୁଦ୍ଧ ଲୌହଭସ୍ମ ୨ ରତି, ଅଭ୍ର ଭସ୍ମ ୧ ରତି, ବ୍ରାହ୍ମୀ ଚୂର୍ଣ୍ଣ ୦ ରତି, ଏହି ସବୁ ମହୁ ସହିତ ମିଳାଇ ଚଟାଇ ଦେଲେ ଭଲ ହୁଏ ।

୪— ଅଶୋକାରିଷ୍ଟ ନାମକ ଆୟୁର୍ବେଦ ପ୍ରସିଦ୍ଧ ଏକ ପ୍ରକାର ଔଷଧ ଏଥି ପାଇଁ ବଡ଼ ହିତକାରୀ ।

୫— ୨।୧ ରତି ମୁକ୍ତାଭସ୍ମ ମଧୁ ସହିତ ଖାଇଲେ ଉପକାର ହୋଇଥାଏ ।

୬— ବାରମ୍ବାର ମୂର୍ଚ୍ଛା ହେବାର ଲକ୍ଷଣ ପ୍ରକାଶ ପାଇଲେ ଏକତୋଳା କପୂର ରସ ସହିତ ଏକ ରତି ସିଦ୍ଧ ମକରଧ୍ୱଜ ଘୋରି ସକାଳେ ଓ ସନ୍ଧ୍ୟାରେ ଦେବା ଉପକାରୀ ।

ହିଷ୍ଟିରିଆ ଗ୍ରସ୍ତ ରୋଗିଣୀକୁ ସର୍ବଦା ପ୍ରସନ୍ନ ଏବଂ ସନ୍ତୁଷ୍ଟ ରଖି ତା'ର ମନେ ବିକାର ଦୂର କରିବାକୁ ଚେଷ୍ଟା କରିବ । ମୈଥୁନ ସର୍ବତୋଭାବରେ ପରିତ୍ୟଜ୍ୟ । ଖାଦ୍ୟ ସାତ୍ତ୍ୱିକ ଓ ଲଘୁପାକ ହେବା ଆବଶ୍ୟକ ।

## ନକଲି ହିଷ୍ଟିରିଆ

ଯେଉଁ ସ୍ତ୍ରୀଲୋକର ସ୍ୱାମୀ ନପୁଂସକ ବା ଦୁର୍ବଳ, କିନ୍ତୁ ନାରୀ ବିଶେଷ କାମାତୁରା, ସେ ଧୀରେ ଧୀରେ ବେହୋସ ହୁଏ, କିନ୍ତୁ ସହସା ପଡ଼ିଯାଇ ଆଘାତପ୍ରାପ୍ତ ହୁଏ ନାହିଁ, ଔଷଧ ଦେଲେ ତାହା ସେବନ ନକରି ମୁହଁରୁ କାଢ଼ି ଫୋପାଡ଼ି ଦିଏ, ପୁରୁଷ ସ୍ପର୍ଶରେ ଆନନ୍ଦ ଅନୁଭବ କରେ । ଏପରି ରୋଗିଣୀକୁ ଲୋକେ ଭୂତ ପ୍ରେତ ଲାଗିଛି ବୋଲି ବିଶ୍ୱାସ କରି ନାନାଦି ପ୍ରକାର ଦୁର୍ଦ୍ଦ



ଦ୍ରବ୍ୟର ଧୂପଦେଇ ରୋଗିଣୀକୁ ଚେପେଟା ଘାତ କରିବାକୁ କୁଣ୍ଠା-
ବୋଧ କରନ୍ତୁ ନାହିଁ । ଏହାର ଔଷଧ କିଛି ନାହିଁ । ପରିବାରର
ଲୋକେ ମୁହଁକୁ ପାଣି ଛାଟିବା, ଶୁଆଇ ରଖି ମିଠା କଥା ଓ ମିଠା
ବ୍ୟବହାର ଦ୍ୱାରା ରୋଗିଣୀର ସାଧାରଣ ଅବସ୍ଥା ଫେରି ଅସେ ।

## ହରିତ୍ ପୀଡା

କୌଣସି କଠିନ ବସ୍ତୁ ଦ୍ୱାରା ଅପ୍ରାକୃତିକ ମୈଥୁନ କଲେ ଏହି ରୋଗର ଉତ୍ପତ୍ତି ହୋଇଥାଏ । ଗାଜର, ମୂଳା, ପେନ୍‌ସିଲ୍, ବାଇଗଣ, ମହମବତୀ ଆଦି ଦ୍ୱାରା ହସ୍ତମୈଥୁନ ଏହାର ଉତ୍ପତ୍ତିର କାରଣ । ଏହି ରୋଗ ଆକ୍ରମଣ କଲେ ଶରୀର ଶିଥିଳ ଓ ଶ୍ୱେତ ବା ହଳଦିଆ ପଡ଼ିଯାଏ । ଋତୁ ଠିକ୍ ସମୟରେ ସ୍ରାବ ହୁଏ ନାହିଁ । ଶରୀରର ଉତ୍ତାପ କମିଯାଏ । ଆଖିର ପଲକ ଫୁଲି ଉଠେ । ଆଖି-ତଳେ କଳାଦାଗ ପଡ଼ିଯାଏ । ଓଷ୍ଠ ଶେତା ପଡ଼ିଯାଇ ବିବର୍ଣ୍ଣ ହୋଇ-ଯାଏ । ନାଡ଼ିର ଗତି ଶିଥିଳ ହୁଏ । ରୋଗିଣୀକୁ ଅଜୀର୍ଣ୍ଣ ଓ କୋଷ୍ଠ-ବଦ୍ଧ ରୋଗ ଆକ୍ରମଣ କରେ । ସ୍ୱଭାବ ମଧ୍ୟ ରୁକ୍ଷ ହୋଇ ଉଠେ ।

## ଯୌଗିକ ଚିକିତ୍ସା

୧—ଲଜ୍ଜାବତୀର ମୂଳର ରସ ତୋଳା ଓ ଲୁଣି ଭିଜା ହୋଇଥିବା ପାଣିରୁ ତୋଳା ଏକତ୍ର କରି ସେବନ କରାଅ ।

## ପ୍ରାକୃତିକ ଚିକିତ୍ସା

ଜନେନ୍ଦ୍ରିୟ ସମ୍ବନ୍ଧୀୟ, ଜରାୟୁ ସମ୍ବନ୍ଧୀୟ ଓ ଗର୍ଭାଶୟ ସମ୍ବନ୍ଧୀୟ ବିକାରରେ ହିପ୍ ବାଥ୍, ସିଟ୍‌ଜ ବାଥ୍ ନେବା ଲାଭ-





ଦାୟକ ଅଟେ । ଏହା ଔପସର୍ଗିକ ମେହ ପ୍ରକରଣରେ ବର୍ଣ୍ଣିତ ହୋଇଅଛି ଦେଖ ।

## ରଙ୍ଗ ଚିକିତ୍ସା

ଗାଢ଼ ନୀଳବର୍ଣ୍ଣ ବୋତଲ ପାଣି ୧କ ପାନକୁ ୨୪ ତୋଳା ହିସାବରେ ଦିନରେ ଚାରିଥର ସେବନ କରାଅ । ଇତର ନୀଳବର୍ଣ୍ଣ ବୋତଲ ପାଣିରେ ପରିଷ୍କାର ବସ୍ତ୍ର ଭିଜାଇ ନାଭିତଳେ ରଖ । ସନ୍ଧ୍ୟାକାଳରେ ରୋଗିଣୀର ଦୁଇପାଦ ଥଣ୍ଡା ପାଣିରେ କିଛି ସମୟ ବୁଡ଼ାଇ ରଖ । ଯଦି ଅନୁମିତ ହୁଏ ଯେ, ମାସିକ ଧର୍ମ ଖରାପ ହୋଇଥିବା ହେତୁ ରୋଗିଣୀଙ୍କୁ ଦୁଷ୍ଟିରୋଗ ହୋଇଅଛି ତେବେ ନାରଙ୍ଗିରଙ୍ଗ ବୋତଲର ପାଣି ପ୍ରୟୋଗ କରିବା ଆବଶ୍ୟକ । ଏହି ସବୁ ବୋତଲ ପାଣି ପ୍ରସ୍ତୁତର ପ୍ରକ୍ରିୟାବଳୀ ଔପସର୍ଗିକ ମେହ ଅଧିକରଣରେ ଦେଖ ।



## ସାବଧାନତା

ଗୃହର ଗୃହଲକ୍ଷ୍ମୀମାନଙ୍କୁ ନିବେଦନ ସେମାନେ ନିମ୍ନ-ଲିଖିତ ବିଷୟ ଗୁଡ଼ିକ ପ୍ରତି ଯଦି ଧ୍ୟାନ ଦେବେ ତେବେ ସେମାନଙ୍କ ସଂସାର ସ୍ୱର୍ଗୀୟ ଆନନ୍ଦରେ ଭରପୂର ହୋଇ ଉଠିବ ।

ରୋଗ ଉତ୍ପତ୍ତି ହୋଇଗଲା ପରେ ଔଷଧ ପ୍ରୟୋଗ ଓ ସେବା ଶୁଶ୍ରୁଷା କରିବା ଅପେକ୍ଷା ରୋଗ ଯେପରି ପ୍ରବେଶ ନ କରିବ ଏଥି ପ୍ରତି ବିଶେଷ ସାବଧାନ ହେବା ଉଚିତ । କିନ୍ତୁ ଅଧିକାଂଶ ଗୃହିଣୀ ଏଥି ପ୍ରତି ବଡ଼ ଉଦାସୀନା ଦେଖାଯାନ୍ତି । ଲୋକେ କହନ୍ତି, ଗର୍ଭ ଦୋଷରୁ



ରୋଗ, ଶୋକ, ଦୁଃଖ ଆଦି ଲୋକେ ଭୋଗନ୍ତି । କିନ୍ତୁ ଏଥି ସହିତ ଭାବିବା ଦରକାର ପ୍ରତ୍ୟେକ ରୋଗ ଉତ୍ପତ୍ତିର ଗୋଟିଏ ମୂଳ କାରଣ ଅଛି, ଯାହାକି ଆମ୍ଭେମାନେ ନିୟମିତ ଆହାର ବିହାର ଦ୍ୱାରା ସହଜରେ ଏଡ଼ି ଦେଇ ପାରନ୍ତି । ଯେତେ ପ୍ରକାର ରୋଗ ଲୋକେ ଭୋଗନ୍ତି, ତାହା ସେମାନଙ୍କର ଭୁଲର ପରିଣାମ ଛଡ଼ା ଆଉ କିଛି ନୁହେଁ । ଏହି ଧରନ୍ତୁ, ପାଣିପବନ, ଖାଦ୍ୟ ଆଦି ପ୍ରତି ଆମ୍ଭେମାନେ ଦୃଷ୍ଟି ନ ଦେଇ ଯେ କୌଣସି ଅପରିଷ୍କାର ଜଳ, ଯେ କୌଣସି ବାସି ସଢ଼ା ପଚା ଦ୍ରବ୍ୟ, ଯେଉଁଥିରେ ମାଛି, ପ୍ରଭୃତି ବସି ରୋଗର ବୀଜାଣୁ ବୁଣିଦେଇଥାନ୍ତି, ସେ ସବୁ ଯଦି ଆମ୍ଭେମାନେ ଆହାରକରୁ କିମ୍ବା ମଶା ଉପଦ୍ରବରୁ ନିଜକୁ ରକ୍ଷା ନ କରୁ, ତେବେ ମେଲେରିଆ, ହଇଜା, ପ୍ଲେଗ, ଆମାଶୟ, ବସନ୍ତ, ମିଳିମିଳା, ହାଡ଼ଫୁଟି ଆଦି ସଂକ୍ରାମକ ବ୍ୟାଧି ଆମ୍ଭମାନଙ୍କୁ ଭୋଗିବାକୁ ପଡ଼େ ।

ଏହା ଧରନ୍ତୁ, ଆମ୍ଭେମାନେ ଯଦି କାମୁକ ହୋଇ ଅପ୍ରାକୃତିକ ମୈଥୁନ, ବେଶ୍ୟା ଗମନ, ପରଦାର ପ୍ରଭୃତି ପାପରେ ପ୍ରବୃତ୍ତ ହେଉଁ ତେବେ ଆମ୍ଭମାନଙ୍କର ଭାଗ୍ୟରେ ନିଶ୍ଚୟ ଅଛି ଅତିରିକ୍ତ ସ୍ୱପ୍ନଦୋଷ, ଶୁକ୍ରତାରଲ୍ୟ, ନପୁଂସକତା, ପ୍ରମେହ, ହିଷ୍ଟିରିଆ ପ୍ରଦର ଆଦି ମହାକଷ୍ଟମ ବ୍ୟାଧି ।

ପ୍ରତ୍ୟେକ ମନୁଷ୍ୟର ଉଚିତ ହେଉଛି ନିଜର ବୈବାହିକ ବନ୍ଧନକୁ ଧର୍ମଜ୍ଞାନ ମନେକରି ତା'ହା ପାଳନ କରିବା । ସ୍ୱାମୀ ସ୍ତ୍ରୀ ମଧ୍ୟରେ ସହିଷ୍ଣୁତା ଗୁଣରେ ପରସ୍ପର ପ୍ରତି ପ୍ରେମ ସୁଦୃଢ଼କରି ପରପୁରୁଷ ବା ପରସ୍ତ୍ରୀଗମନ ନ କରିବା । ସମସ୍ତଙ୍କର ମନେ ରଖିବାକୁ ହେଉଛି ଯେ, ଥରେ ଗୋଡ଼ ଖସାଇ ଦେଇ ଅବାଟରେ ଗଲେ, ସେଇ ଅବାଟହି ତା'ର ଅଭ୍ୟାସ ହୋଇଯାଏ ।





ନିମ୍ନଲିଖିତ ବିଷୟଗୁଡ଼ିକ ପ୍ରତି ବିଶେଷଭାବରେ ଦୃଷ୍ଟିଦେଇ ସ୍ୱର୍ଗସୁଖ ଅନୁଭବ କରନ୍ତୁ ।

୧—ପାଣିଯୁକ୍ତ ପରିଷ୍କାରଭାବରେ ଯତ୍ନ ନେବା ଓ ପାଣି ପାତ୍ରକୁ ଘୋଡ଼ାଇ ରଖ । ସଂକ୍ରାମକ ବ୍ୟାଧିର ପ୍ରାଦୁର୍ଭାବ ହୋଇଥିଲେ ପାଣିକୁ ଗରମକରି ନେଲେ ଜୀବାଣୁ ନଷ୍ଟ ହୋଇଯାନ୍ତି ।

୨—ଖାଦ୍ୟ ଜିନିଷ ପ୍ରତି ବିଶେଷ ସାବଧାନ ହେବ । ଯେପରି ସେଥିରେ ମାଛି ନ ବସନ୍ତି କିମ୍ବା ଉପରୁ କିଛି ଗୁଣ୍ଡ ଇତ୍ୟାଦି ନ ପଡ଼େ । ଏପରି ମଧ୍ୟ ଦେଖା ଯାଇଅଛି ଘରର ମାକଡ଼ସା ମଳିଆ ଦ୍ୱାରା ତାହା ଖାଦ୍ୟଭାଣ୍ଡରେ ପଡ଼ି ସେ ଖାଦ୍ୟ ଖାଇ ବହୁଲୋକ ପ୍ରାଣ ହରାଇଛନ୍ତି । ସୁତରାଂ ଖାଦ୍ୟ ପଦାର୍ଥ ସବୁବେଳେ ଢ଼ାଙ୍କି ରଖିବା ଉଚିତ ।

୩—ପ୍ରତ୍ୟେକ ସ୍ତ୍ରୀଲୋକଙ୍କର କର୍ତ୍ତବ୍ୟ ନିଜର ଘର ଦ୍ୱାର ସର୍ବଦା ପରିଷ୍କାର ପରିଚ୍ଛନ୍ନ ରଖିବା ଉଚିତ । ଘରର ସମସ୍ତ ଆବର୍ଜନା ଗୃହ ଠାରୁ ଦୂରରେ ନିକ୍ଷେପ କରିବା ଦରକାର ।

୪—ସମସ୍ତ ବିଛଣା ପତ୍ର ପ୍ରତି ଦିନ ଖରାରେ ଦେଲେ ଛାରପୋକଆଦି ଜୀବାଣୁ ଓ ଦୁର୍ଗନ୍ଧ ନଷ୍ଟ ହୋଇଯାଏ ।

୫—ପରିବାରର କେହି ଯେପରି କୌଣସି ପ୍ରକାର ଅପରିଷ୍କାର ଲୁଗାପଟା ପରିଧାନ ନ କରନ୍ତି ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଆବଶ୍ୟକ । ସବୁବେଳେ ଧୋବା ଉପରେ ନିର୍ଭର ନ କରି ନିଜର ପୁଅ ଝିଅମାନଙ୍କର ଲୁଗାପଟା ସାବୁନ କିମ୍ବା ସୋଡାରେ ପରିଷ୍କାର କରିଦେଲେ ଚଳେ ।



ପରପୃଷ୍ଠା ବର୍ଣ୍ଣିତ ଏହିସବୁ ବିଷୟ ପ୍ରତି ଗୃହଲକ୍ଷ୍ମୀମାନେ ତୀକ୍ଷ୍ଣଦୃଷ୍ଟି ଦେଲେ ଅନ୍ୟଥା ଦୁଃଖକଷ୍ଟ ଓ ଅର୍ଥର ଅପବ୍ୟୟରୁ ନିଷ୍ଟୟ ରକ୍ଷା ମିଳିବ ।



## ଋତୁ ବିରତି

ସାଧାରଣତଃ ସ୍ତ୍ରୀଲୋକମାନଙ୍କର ମାସିକସ୍ରାବ ୪୫ ଠାରୁ ୫୦ ବର୍ଷ ଭିତରେ ସବୁଦିନ ପାଇଁ ବନ୍ଦ ହୋଇଯାଏ । ଏହାକୁ ଋତୁ-ସଂହାର ବା ଋତୁ ସମାପ୍ତି ଅଥବା ଋତୁ ବିରତି କୁହାଯାଏ । ଏହି ଋତୁ-ବିରତି ସ୍ଥଳ ବିଶେଷରେ ୪୫ ବର୍ଷ ପୂର୍ବରୁ ବା ୫୦ ବର୍ଷ ପରେ ମଧ୍ୟ ଘଟିଥାଏ, କିନ୍ତୁ ଏହା ସୁସ୍ଥ ସ୍ୱାସ୍ଥ୍ୟର ପରିଚାୟକ ନୁହେଁ । ଋତୁ-ସମାପ୍ତି ଅବସ୍ଥା ଆସିଗଲେ ନାରୀ ଜୀବନରେ ଆରମ୍ଭ ହୁଏ ଗୋଟିଏ ନୂତନ ଅଧ୍ୟାୟ, ତା'ର ଜନନଯନ୍ତ୍ରର ଆମୂଳ ପରିବର୍ତ୍ତନ । ଡିମ୍ବାଧାରରୁ ଡିମ୍ବସ୍ଫୋଟନ ବନ୍ଦ ହୋଇଯାଇ ରକ୍ତସ୍ରାବ ଧୀରେ ଧୀରେ ବନ୍ଦ ହୁଏ । ଏହାପରେ ଆଉ ଗର୍ଭଧାରଣର ସମ୍ଭାବନା ରହେ ନାହିଁ । କେତେକ ସ୍ଥଳରେ ଦେଖା ଯାଇଅଛି ରକ୍ତକ୍ଷରଣ ବନ୍ଦ ହୋଇଗଲେ ସୁଦ୍ଧା ଡିମ୍ବସ୍ଖଳନ ବନ୍ଦହୋଇ ନ ଥାଏ । ସେପରିସ୍ଥଳେ ଋତୁ-ବିରତି ଘଟିଲେ ସୁଦ୍ଧା ନାରୀ ଗର୍ଭଗ୍ରହଣ କରିପାରେ । ଋତୁ ଶୋଣିତ ସ୍ରାବ ବନ୍ଦହେବାର ପ୍ରାୟ ଏକବର୍ଷ ବିତିଗଲେ ଆଉ ଗର୍ଭଗ୍ରହଣ କରିବା ଆଶଙ୍କା ରହେ ନାହିଁ କାରଣ ରକ୍ତସ୍ରାବ ବନ୍ଦପରେ ବର୍ଷେ ପର୍ଯ୍ୟନ୍ତ ଡିମ୍ବସ୍ଖଳନ ଘଟିପାରେ ।





## ଋତୁ ବନ୍ଦର ପୂର୍ବ ଲକ୍ଷଣ

ଋତୁ ବନ୍ଦ ହଠାତ୍ ଆସେ ନାହିଁ । ଏହାର ପ୍ରାୟ ଦୁଇବର୍ଷ ପୂର୍ବରୁ ଋତୁର ଅନିୟମିତତା ଦେଖାଯାଏ । ଋତୁ ଚକ୍ର ଭ୍ରମଣଶୀଳ ହୋଇ ପଡେ । ତାହା ଫଳରେ କାହାର ମାସରେ ଏକାଧିକବାର ବା ଦୁଇ ତିନି ମାସରେ ଥରେ ରକ୍ତ କ୍ଷରଣ ହୁଏ । କାହାର କାହାର ରକ୍ତ ସ୍ରାବ ଖୁବ୍ କମ୍ ହୋଇ ଅଳ୍ପଦିନ ସ୍ଥାୟୀ ହୁଏ, କାହାର ବା ବେଶୀ ପରିମାଣରେ ରକ୍ତସ୍ରାବ ଘଟି ଦୀର୍ଘଦିନ ସ୍ଥାୟୀ ହୁଏ । ଏ ସମୟରେ ରମଣୀମାନଙ୍କର ଅଣ୍ଟା ଧରେ, ତଳି ପେଟ ସ୍ଫୀତ ଓ ନିତମ୍ବ ସ୍ଥୂଳ ହୁଏ, ଓଷ୍ଠ ଓ ଚିବୁକ ଉପରେ ନୂତନ କେଶ ଉଦ୍‌ଗମ ହୁଏ । ଡିମ୍ବକୋଷର କାର୍ଯ୍ୟକାରିତା ଶକ୍ତି କମିବା ଯୋଗୁଁ ଓ ଗୋପନାଙ୍ଗରୁ ଅଳ୍ପରସ ନିର୍ଗତ ହେବା ଯୋଗୁ ସ୍ତନ ଦୁଇଟି ଓ ସ୍ତ୍ରୀ ଅଙ୍ଗ କେତେକ ପରିମାଣରେ ସଙ୍କୁଚିତ ହୋଇ ଯାଇ ପାରେ । ଋତୁ ସଂହାର ଜନିତ ଯୌନାଙ୍ଗର ଦୁର୍ବଳତା ଓ ଯୋନି ପ୍ରାଚୀରର କ୍ଷୀଣତା ଯୋଗୁ ଜରାୟୁ ଧାରଣ କରି ରଖିବାର ଶକ୍ତି କମିଯାଏ । ସେଥି ଯୋଗୁଁ କେତେବେଳେ କେତେବେଳେ ଜରାୟୁପତନ ଘଟିପାରେ । ଏହାଛଡ଼ା ସ୍ୱାସ୍ଥ୍ୟ ଅନ୍ୟଭାବେ କାହାର କାହାର ପ୍ରବଳ ହୃଦସ୍ପନ୍ଦନ ଘନ ଘନ ମୂତ୍ର ତ୍ୟାଗର ଇଚ୍ଛା, ପରିପାକ ଶକ୍ତିର ଅଭାବ, କୋଷ୍ଠ କାଠିନ୍ୟ, ଚିଡ଼ଚିଡ଼ା ସ୍ୱଭାବ ପ୍ରଭୃତି ପ୍ରକାଶ ପାଏ । ଏହି ସମୟରେ ମାନସିକ ଅବସ୍ଥାରେ କେତେକ ପରିବର୍ତ୍ତନ ଘଟେ । କେହି କେହି ରମଣୀ ଋତୁ ବନ୍ଦ ଯୋଗୁ ମନରେ ବିମର୍ଷତା ଆଣି ସ୍ନାୟୁରୋଗ ବା ମତିଭ୍ରମ ଇତ୍ୟାଦି ଭୋଗି ପାରନ୍ତି ।



ଶୀର୍ଷ ବର୍ଣ୍ଣିତ ଲକ୍ଷଣ ସବୁ ଯେ ଋତୁବିରତି ସମୟରେ ସବୁ ନାରୀଙ୍କୁ ଭୋଗିବାକୁ ପଡ଼ିବ, ଏପରି ନୁହେଁ । ଆହାର ବ୍ୟବହାର ଏ ଉପସର୍ଗ ଘଟିପାରେ ବା ନ ପାରେ । ଋତୁ ସମାପ୍ତି ସମୟ ଆସିଲେ ଆଶଙ୍କାର କିଛି କାରଣ ନାହିଁ । ଦୁଶ୍ଚିନ୍ତାଗ୍ରସ୍ତ ହେବା ମଧ୍ୟ ନିଷ୍ପ୍ରୟୋଜନ । ମାତ୍ର କର୍ତ୍ତବ୍ୟ ଦୃଷ୍ଟିରୁ ଏ ସମୟରେ ଖାଦ୍ୟାଖାଦ୍ୟ ଦୃଷ୍ଟିରୁ ଯଥେଷ୍ଟ ସତର୍କ ରହିବା ପ୍ରୟୋଜନ । ହୃଦୟ ଯନ୍ତ୍ର ଦୁର୍ବଳ କରିପାରେ ଏପରି ଖାଦ୍ୟ, ବିଶେଷତଃ ନିଶାଦ୍ରବ୍ୟ ସେବନ ସମ୍ପୂର୍ଣ୍ଣ ଭାବେ ପରିତ୍ୟାଗ କରିବ । ସର୍ବୋପରି ଏ ସମୟରେ ଜନନ ଯନ୍ତ୍ରକୁ ସାଧ୍ୟମତ ପରିଷ୍କାର ରଖିବା ଦରକାର ।



## ଋତୁ ବିରତିର ପ୍ରତିକ୍ରିୟା

ଏହାକୁ ସବୁ ରମଣୀ ସମାନ ଚକ୍ଷୁରେ ଦେଖନ୍ତି ନାହିଁ । ଏହାର ପ୍ରତିକ୍ରିୟା ନାରୀର ଅତୀତ ଯୌନ-ଜୀବନ-ଯାପନ-ପଦ୍ଧତି ଉପରେ ନିର୍ଭର କରେ । ଯେଉଁମାନେ ଯୌବନ ସମୟରେ ବହୁ କଷ୍ଟ ଅନିୟମିତ ଋତୁ, ଓ ଅବାଞ୍ଛିତ ଗର୍ଭ ଧାରଣ କରି ନାନାଦି କଷ୍ଟ ଭୋଗିଥାନ୍ତି, ସେମାନେ ଋତୁ ବିରତିରେ ପରମ ସନ୍ତୁଷ୍ଟ ଲାଭ କରନ୍ତି । ମାତ୍ର ଯେଉଁ ରମଣୀମାନେ ବିଗତ ଜୀବନରେ ସେପରି କୌଣସି ଦୁଃଖ କଷ୍ଟ ଭୋଗି ନାହାନ୍ତି ସେମାନେ ଏହି ଋତୁ ସଂହାରରେ ଭୀତ ଓ ଚିନ୍ତିତ ହୁଅନ୍ତି, ବାର୍ଦ୍ଧକ୍ୟର ଛାୟା ଗ୍ରାସି ଆସିଲା ବୋଲି ଭାବି ଅନୁତାପ କରନ୍ତି । କିନ୍ତୁ ମନେ ରଖିବା ଉଚିତ ଏ ସ୍ୱାଭାବିକ ଘଟଣା ସବୁ ନାରୀଙ୍କୁ ଦିନେ ନା ଦିନେ ଭୋଗିବାକୁ





ପଡ଼ର । ଏଥିରେ ଦୁଃଖ କରୁ କାରଣ ନାହିଁ । କିମ୍ବା ଋତୁସଂହାର ଗୋଟାଏ ରୋଗ ମଧ୍ୟ ନୁହେଁ ।

ଋତୁ-ସମାପ୍ତି ପରେ କାମିନୀର ଯେ ଯୌନ ତୃଷ୍ଣା ଲୋପପାଏ କିମ୍ବା ସେ ଯୌନ ସଂଯୋଗ କରିବାକୁ ସମ୍ପୂର୍ଣ୍ଣ ଅନୁପଯୁକ୍ତା ହୋଇ ପଡ଼େ ଏପରି ନୁହେଁ । ସ୍ୱାମୀ ସହବାସରେ ସେ ଚରମ ତୃପ୍ତି ପାଇ ଥାଏ । ବରଂ ଅନେକ କ୍ଷେତ୍ରରେ ସନ୍ତାନ ଭାର ବହନ କରିବା ଦାୟିତ୍ୱରୁ ମୁକ୍ତ ମିଳିଥିବାରୁ ସେ ଦୁଶ୍ଚିନ୍ତା ଓ ଉତ୍କଣ୍ଠାରୁ ନିସ୍ତାର ପାଏ ଏବଂ ପରମ ଆନନ୍ଦରେ ସହବାସ ସୁଖ ଉପଭୋଗ କରେ ।





# ଷୋଡ଼ଶ ଅଧିକରଣ

## ଆସନ ଓ ପ୍ରାଣାୟାମ

ଆସନ ଦ୍ୱାରା ଶରୀରର ସମସ୍ତ ଧାତୁ ଶୁଦ୍ଧ ହୋଇ କାମୋ-ତ୍ତେଜନାର ପ୍ରବଳତା ଶାନ୍ତ ହୋଇଯାଏ ଏବଂ କାମ ଇଚ୍ଛାଧୀନ ହୁଏ । ଶୁକ୍ର ପ୍ରଣାଳୀ ତଥା ବୀର୍ଯ୍ୟାଶୟ ଉପରେ ଯେଉଁ ଯୋଗାସନ ପ୍ରଭାବ ବିସ୍ତାର କରେ ସେହିସବୁ ଆସନ ସ୍ୱପ୍ନଦୋଷ ନାଶ କରେ । ତତ୍ସମ୍ପର୍କୀୟ କେତେକ ଆସନ ପ୍ରଣାଳୀ ନିମ୍ନରେ ଦିଆଗଲା ।

### ସିଦ୍ଧାସନ

କୁଶ ବା କାଷ୍ଠ ଆସନରେ ସରଳ ଭାବରେ ବସ । ମେରୁଦଣ୍ଡକୁ ଏପରି ଭାବରେ ସିଧା ରଖ ଯେପରି ଅଣ୍ଟା ଟିକିଏ ମାତ୍ର ଝୁଙ୍କି ନ ଯାଏ । “ସମକାୟ ଶିରୋଗ୍ରୀବ” (ଗୀତା) ଅର୍ଥାତ୍ ଶରୀର ଶିର ଓ ବେକସନ୍ଧି ଯେପରି ସମାନ ରହେ । ତାପରେ ଦକ୍ଷିଣ ପାଦର ଗୋଇଠି ଗୁହ୍ୟ ଓ ଅଣ୍ଡକୋଷର ମଧ୍ୟସ୍ଥାନରେ ଜମେଇ ରଖି ତା' ଉପରେ ବସ । ଏହା ପରେ ବାମ ପାଦର ଗୋଇଠିକୁ ଲିଙ୍ଗର ଉପର ଭାଗରେ ଏପରି ଭାଗରେ ଜମେଇ ରଖ ଯେପରି ଲିଙ୍ଗ ଚାପି ହୋଇ ରହେ । ଏ ସବୁ କଲା ପରେ ଦୁଇ ହାତକୁ ତଳ ଉପର କରି ଯୋଡ଼ି କୋଳ ଉପରେ ରଖ । (  ନମ୍ବର ଚିତ୍ର ଦେଖ ) ଏହି ଆସନରେ ବିଶେଷ ଭାବରେ ମନେ ରଖିବାକୁ ହେବ ଯେ, ପାଦର ଅଙ୍ଗୁଳି ଗୁଡ଼ିକ ଉପରେ ଯେପରି କୌଣସି ଭାର ନ





ଲାଗିବ, ଦୁଇ ଗୋଡ଼ ତଳ ଉପରକୁ ହୋଇ ରହେ । ଦୁଇ ଗୋଡ଼ ଗୋଇଠି ଯେଉଁ ସ୍ଥାନମାନଙ୍କରେ ଦିଆ ଯାଇଛି ସେ ସ୍ଥାନ ଉପରେ ଯେପରି ଦୃଢ଼ ଚାପ ପଡ଼େ ।

ଏହି ଆସନ ସହିତ ପ୍ରାଣାୟାମ କର । ଏ ଆସନ ଅଭ୍ୟାସ କଲେ ଚଞ୍ଚଳ ମନ ସ୍ଥିର ହୋଇ କନ୍ଦର୍ପକୁ ଜୟ କରାଯାଇ ପାରେ । ଏହା ଅତିରିକ୍ତ ପରିମାଣରେ ଆଚରଣ କଲେ ମନୁଷ୍ୟର କାମ ବାସନା ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଏ । ଏ ଆସନ ସ୍ୱପ୍ନଦୋଷ ପକ୍ଷେ ବଡ଼ ହିତକର ।

---

## ଜାନୁ ଶିରାସନ

ଭୂମି ଉପରେ ବସି ଗୋଟିଏ ଗୋଡ଼ ଦୃଢ଼ ଭାବରେ ଲମ୍ବାଇ ଅନ୍ୟ ଗୋଡ଼ର ଗୋଇଠିକୁ ଗୁହ୍ୟ ଓ ଅଣ୍ଡକୋଷର ମଧ୍ୟ ସ୍ଥାନରେ ଦୃଢ଼ଭାବରେ ରଖ ଏବଂ ସେହି ପାଦର ଅଙ୍ଗୁଠି ଗୁଡ଼ିକୁ ଅନ୍ୟ ଗୋଡ଼ ଜଙ୍ଘାଦେଶର ଦୃଢ଼ ଭାବରେ ଚାପିରଖ । ତତ୍ପରେ ଦୁଇ ହାତରେ ପ୍ରସାରିତ ଗୋଡ଼ର ପାଦକୁ ଧରି ମୁଣ୍ଡକୁ ନୋଇଁ ଗୋଡ଼ରେ ଲଗାଇ ଦିଅ । ଯେତେ ସମୟ ପାରିବ ସେହିପରି ଅବସ୍ଥାରେ ରହ । ତତ୍ପରେ ଗୋଡ଼ର ଫେର ବଦଳ କରି ଉପରୋକ୍ତ କ୍ରିୟା ଅନୁସାରେ ସ୍ଥାପନ କର । ୧୦ ନମ୍ବର ଚିତ୍ର ଦେଖ । ପ୍ରଥମେ ପ୍ରଥମେ ଏ ଆସନ କରିବାରେ କଷ୍ଟ ବୋଧ ହୁଏ । ପରେ ଏହା ସହଜସାଧ୍ୟ ହୋଇଯାଏ । ଏ ଆସନରେ ନିମ୍ନଲିଖିତ ବିଷୟ ପ୍ରତି ଧ୍ୟାନ ଦେବା ଉଚିତ । ଯଥା ପ୍ରସାରିତ ପଦ ଯେପରି ଭୂମି ଉପରେ ଟିକିଏ ମାତ୍ର ନ ଉଠି ସମ୍ପୂର୍ଣ୍ଣ ଭାବରେ ଲାଗି ରହେ । ଆସନ କରିବା



ସମୟରେ ଗୁହ୍ୟ ଓ ଲିଙ୍ଗକୁ ସଙ୍କୋଚନ କରି ଯେତେ ଉପରକୁ ଟାଣିବ । ଗୋଟିଏ ପାଦ ଯେତେ ସମୟ ପ୍ରସାରିତ କରିଥିବ, ଅନ୍ୟ ପାଦଟି ମଧ୍ୟ ସେତିକି ସମୟ ପ୍ରସାରିତ କରିବ । ପ୍ରଥମେ ୫ ମିନିଟିରୁ ଆରମ୍ଭ କରି କ୍ରମେ ୨୫ ମିନିଟ ପର୍ଯ୍ୟନ୍ତ ସମୟ ବଢ଼ାଇ ଦିଆଯାଇ ପାରେ ।

ଏହା ଦ୍ୱାରା ସ୍ୱପ୍ନଦୋଷ ଦୂର ହୁଏ, ମନ ଅଚଞ୍ଚଳ ହୋଇ ଧାରଣା ଶକ୍ତି ବଢ଼େ ।

## ପାଦାଙ୍ଗୁଷ୍ଠାସନ

ଭୂମି ଉପରେ ପଞ୍ଜା ଉପରେ ଜୋର ଦେଇ ବସ । ବାମ ପାଦର ଗୋଇଠି ଯେପରି ଗୁହ୍ୟ ଓ ଅଣ୍ଡକୋଷର ମଧ୍ୟ ସ୍ଥଳରେ ରହେ । ତତ୍ପରେ ଡାହାଣ ପାଦକୁ ବାମ ପାଦର ଜଙ୍ଘ ଉପରେ ରଖି ଦୁଇ ହାତରେ ଅଣ୍ଠାକୁ ଧର । ୧୯ ନମ୍ବର ଚିତ୍ରଦେଖ । ପ୍ରଥମେ ଅଭ୍ୟାସ କଲାବେଳେ ଏହା ବଡ଼ କଷ୍ଟଦାୟକ ହୁଏ । ଏଣୁ କାନ୍ଥକୁ ଆଉଜି ପ୍ରଥମେ ଏହା ଅଭ୍ୟାସ କରାଯାଇ ପାରେ । ଅଭ୍ୟାସ ହୋଇଗଲେ ଆଉ କାନ୍ଥର ଆଶ୍ରା ନେବା ଉଚିତ ନୁହେଁ । ଏ ଆସନରେ ନିମ୍ନ ଲିଖିତ ବିଷୟ ପ୍ରତି ଧ୍ୟାନ ରଖିବା ଉଚିତ । ଶରୀର, ଶିର ଓ ମେରୁଦଣ୍ଡ ବରାବର ସମସୂତ୍ରରେ ସିଧା ରହିବା ଆବଶ୍ୟକ । ଏ ଆସନ କରିବା ସମୟରେ ମଧ୍ୟ ଗୁହ୍ୟ ଓ ଲିଙ୍ଗକୁ ସଙ୍କୋଚନ କରି ଉପରକୁ ଟାଣିବା ଦରକାର । ବାମ ପାଦର ପଞ୍ଜା ଉପରେ ଏ ଆସନ ଯେତିକି ସମୟ କରିବ, ଡାହାଣ ପାଦରେ ମଧ୍ୟ ସେତିକି ସମୟ କରିବା ବିଧେୟ ।

---





## ଶୀର୍ଷାସନ

ଯୋଗଶାସ୍ତ୍ରରେ ଏ ଆସନର ସ୍ଥାନ ଅତି ମହତ୍ତ୍ୱ ପୂର୍ଣ୍ଣ। ଏହାକୁ ବିପରୀତ କରଣୀ ମୁଦ୍ରା ମଧ୍ୟ କୁହାଯାଏ। ମସ୍ତିଷ୍କ ଉପରେ ଶରୀରର ସମସ୍ତ ଭାର ରଖାଯାଇ ଏ ଆସନ ଅଭ୍ୟାସ ହେଉଥିବାରୁ ଏହାକୁ ଶୀର୍ଷାସନ କୁହାଯାଏ। ଏଥିରେ ମୁଣ୍ଡତଳେ ଗୋଟିଏ ତକିଆ ରଖିବା ଆବଶ୍ୟକ। ନଚେତ୍ ମସ୍ତିଷ୍କ ଉପରେ ଖରାପ ପ୍ରଭାବ ପଡ଼େ। କମ୍ବଳ ଲମ୍ବରେ ଗୋଟିଏ ମୁଟଲା କରି ମୁଣ୍ଡତଳେ ଦିଆଯାଇ ପାରେ। ମୁଣ୍ଡକୁ ତଳକୁ କରି ଦୁଇ ହାତରେ ଅଙ୍ଗୁଳିକୁ ଛନ୍ଦି ବେକରେ ଦେଇ ଦୁଇ କହୁଣି ତଳେ ଜମାଇ ଦିଅ। ତହିଁରେ ଗୋଡକୁ ସିଧାଭାବରେ ଉପରକୁ ଧୀରେ ଧୀରେ ଉଠାଅ। ପ୍ରଥମେ ଅଭ୍ୟାସ କଲା ବେଳେ କାନ୍ଥର ସାହାଯ୍ୟ ନିଆ ଯାଇ ପାରେ। ୯ ନମ୍ବର ଚିତ୍ର ଦେଖ।

ଏ ଆସନରେ ନିମ୍ନଲିଖିତ ବିଷୟ ପ୍ରତି ସଜାଗ ରହିବା ଉଚିତ। ଶରୀର ଯେପରି ସମ୍ପୂର୍ଣ୍ଣ ସିଧା ରହେ। ପାଦର ଟିପା ଯେପରି ଉପରକୁ ଟାଣି ହୋଇ ରହେ। ପେଟ ଯେପରି ପଦାକୁ ବାହାରି ନ ପଡ଼େ। ଦୀର୍ଘଶ୍ୱାସ ପ୍ରଶ୍ୱାସ ଯେପରି ଗ୍ରହଣ କରାଯାଏ। ଗୁହ୍ୟ ଓ ଲିଙ୍ଗକୁ ସଙ୍କୋଚନ କରି ଭିତରକୁ ଯେପରି ଆକୁଞ୍ଚନ କରାଯାଏ।

ଶୀର୍ଷାସନ କରିବା ଦ୍ୱାରା କୋଷ୍ଠବଦ୍ଧତା, ବାତାଜୀର୍ଣ୍ଣ, ସ୍ୱପ୍ନ ଦୋଷ, ଧାତୁଦୌର୍ବଲ୍ୟ, ଅନ୍ତ୍ରକୋଷ, ସ୍ନାୟବିକ ଦୁର୍ବଳତା, ଅଧିକ ରକ୍ତ ଜମାଟ ହେବା ଦ୍ୱାରା ଅକାଳ ନିଦ୍ରା ଏବଂ ଯକୃତ ଜନିତ ରୋଗ ଆରୋଗ୍ୟ ହୋଇଥାଏ। ଏହି ଆସନ କରିବାକୁ ହେଲେ କ୍ରମେ କ୍ରମେ କମ୍ଭା ଅତି ଅଳ୍ପ ସମୟ ପାଇଁ ଅର୍ଥାତ୍ ୨।୩ ସେକେଣ୍ଡ



ମାତ୍ର ପ୍ରଥମେ ପ୍ରଥମେ କରି ଆସନ ସିଦ୍ଧ ହୋଇଯିବାର ପରବାର ମଧ୍ୟ ସମସ୍ତ ବଢ଼ାଇ ଦିଆ ଯାଇପାରେ । ମନେ ରଖିବ, ପ୍ରଥମାବସ୍ଥାରେ ଗୋଡ ଅଣ୍ଟାଠାରୁ ବାଙ୍କ ଭିତରେ ରଖି ଯାଇ ଥାଏ । ଅଭ୍ୟାସ ପଡିଲେ ଉପରକୁ ସିଧା ଉଠାଇବାକୁ ହୁଏ । ବିଶେଷ ଉଲ୍ଲେଖଯୋଗ୍ୟ କଥା ହେଉଛି ରକ୍ତଚାପ, କାନରୁ ପୂଜ ପଡୁଥିବା ଏବଂ ନାକରୁ ରକ୍ତ ପଡୁଥିବା ବ୍ୟକ୍ତି ପକ୍ଷରେ ଶୀର୍ଷାସନ ଅଭ୍ୟାସ କରିବା ଆଦୌ ଉଚିତ ନୁହେଁ ।

ଉପରୋକ୍ତ ସମସ୍ତ ପ୍ରକାର ଆସନ ସାଧନ କରିବା ସମୟରେ ନିଶ୍ୱାସ ପ୍ରଶ୍ୱାସ କେବଳ ନାକ ବାଟେ ନେବା ଓ ଛାଡ଼ିବା ଉଚିତ । ଆସନ କରିବା ପୂର୍ବରୁ ମଳାଶୟରେ ମଳ ଓ ମୂତ୍ରାଶୟରେ ମୂତ୍ର ଯେପରି ନ ଥାଏ । ଭରପେଟରେ ଆସନ କରିବା ଆଦୌ ଉଚିତ ନୁହେଁ. କିମ୍ବା ଆସନରୁ ଉଠିଲା ମାତ୍ରେ କିଛି ଖାଇବା ପିଇବା ମଧ୍ୟ ବଡ କ୍ଷତିକାରକ । କିଛି ସମୟ ବିଶ୍ରାମ ପରେ ସ୍ନାନ ଭୋଜନାଦି କରାଯାଇ ପାରେ ।

## ପ୍ରାଣାୟାମ

ବିଧିପୂର୍ବକ ଯଦି ପ୍ରାଣାୟାମ କରାଯାଏ ତେବେ ସ୍ୱପ୍ନଦୋଷ ନିଶ୍ଚୟ ଦୂର ହୋଇଯିବ । ପ୍ରାଣାୟାମର ପ୍ରକ୍ରିୟାବଳି ନିମ୍ନରେ ଦିଆଗଲା । ସିଦ୍ଧାସନରେ ବସି ସ୍ୱଚ୍ଛ ଓ ଶାନ୍ତ ମନରେ ପ୍ରାଣାୟାମ କରିବା ବିଧେୟ । ପ୍ରଥମେ ଦେଖ ନାସିକାର କେଉଁ ପୁଡ଼ାରେ ଶ୍ୱାସ ଗମନାଗମନ କରୁଅଛି ଓ କେଉଁ ପୁଡ଼ା ବନ୍ଦ ଅଛି । ଯେଉଁ ପୁଡ଼ା ବନ୍ଦ ଅଛି ସେହି ପୁଡ଼ାକୁ ନିଜର ଆଙ୍ଗୁଠି ଦ୍ୱାରା ବନ୍ଦ କରି ଶ୍ୱାସ ଚାଲୁଥିବା ପୁଡ଼ାରେ ଧୀରେ ଧୀରେ ଶ୍ୱାସ ଗ୍ରହଣ କର । ଏହି





ପ୍ରକ୍ରିୟାକୁ ପୂରକ ପ୍ରାଣାୟାମ କୁହାଯାଏ । ଏହି ପୂରକ ସମୟରେ ନିଜର ଗୁହ୍ୟକୁ ଯେତେଦୂର ପାରୁଥାଏ ଆକୁଞ୍ଚନ କରି ଭିତରକୁ ଟାଣ ।

ବର୍ତ୍ତମାନ କୁମ୍ଭକ ପ୍ରାଣାୟାମ ଆରମ୍ଭ କର । ଅର୍ଥାତ୍—ଯେଉଁ ଶ୍ୱାସକୁ ଭିତରକୁ ଗ୍ରହଣ କରିଛ ତାକୁ ରୋକି ନିଅ । ନାସିକାର ଦୁଇ ପୁଡ଼ା ବନ୍ଦ କର । ସ୍ମରଣ ରଖିବାକୁ ହେବ ଯେ ଗୁହ୍ୟ ଯେପରି ଏ ସମୟରେ ଢ଼ିଲା ନ ରହେ । ଏହି କୁମ୍ଭକ ପ୍ରାଣାୟାମ ଆଚରଣ କରିବା ସମୟରେ ନିଜର ପେଟକୁ ଯେତେଦୂର ପାରି ଭିତରକୁ ଖାଲି କେଇ ନେଇ ଯିବା ଉଚିତ ।

ପରେ କଷ୍ଟ ବୋଧ ହେଲେ ରେଚକ ପ୍ରାଣାୟାମ ଆରମ୍ଭ କର । ଅର୍ଥାତ—ଯେଉଁ ନାସା ପୁଡ଼ାକୁ ପ୍ରଥମେ ଅଙ୍ଗୁଠି ଦ୍ୱାରା ବନ୍ଦ କରି ଦେଇଥିଲ ସେହି ପୁଡ଼ାକୁ ଖୋଲି ଦିଅ ଓ ଶ୍ୱାସକୁ ଧୀରେ ଧୀରେ ଛାଡ଼ । ରେଚକ ଆରମ୍ଭ କଲା ମାତ୍ରେ ଚିବୁକକୁ ହଂସୁଲି ଅର୍ଥାତ ଛାତିର ହାଡ଼ ଉପରେ ଜମେଇ ଦେଇ କଣ୍ଠକୁ ସଙ୍କୋଚ କରି ଦିଅ । ବର୍ତ୍ତମାନ ଗୁହ୍ୟକୁ ଢିଲା କରିଦିଅ । ଏହା ହେଲା ପ୍ରାଣାୟାମ । ନିଜର ଶକ୍ତି ଅନୁସାରେ ଯେ ଯେତେ ପ୍ରାଣାୟାମ କରି ପାରେ ।

ସୂଚନା—ପ୍ରାଣାୟାମ ସମୟରେ ବ୍ୟଗ୍ର ବା ଉତ୍କଣ୍ଠା ପ୍ରକାଶ କରିବା ଉଚିତ ନୁହେଁ । ଶ୍ୱାସ ଗ୍ରହଣ ଓ ଶ୍ୱାସ ଅପସାରଣରେ ଯେପରି ଷପ୍ରତା ପ୍ରକାଶ ନ ପାଏ । ଗୁହ୍ୟମାର୍ଗକୁ ଭଲ ଭାବରେ ସଙ୍କୋଚ କରି ରହିବା ଦରକାର । ପୂରକ ଠାରୁ କୁମ୍ଭକ ପର୍ଯ୍ୟନ୍ତ ଚାରି-ଗୁଣ ସମୟ ଓ ରେଚକ ଠାରୁ ପୂରକ ପର୍ଯ୍ୟନ୍ତ ଦୁଇଗୁଣ ସମୟ,



ଅନୁସାରେ କରିବା ବିଧେୟ । ଘଣ୍ଟାର ମିନଟ କଣ୍ଟା ଗଣି ଏ କାର୍ଯ୍ୟ କରାଯିବା ଆବଶ୍ୟକ । ଘଣ୍ଟା ନ ଥିଲେ ଗାୟତ୍ରୀ ମନ୍ତ୍ର ଜପି ତା'ର ସଂଖ୍ୟାନୁସାରେ ସମୟ ମପା ଯାଇ ପାରେ । ଖୁବ୍ କ୍ରମରେ ଏହିପରି ୧୦।୧୧ ପ୍ରାଣାୟାମ ପ୍ରତିଦିନ କଲେ ଦୁଇତିନି ମାସରେ ସ୍ୱପ୍ନଦୋଷ ସମୂଳେ ନଷ୍ଟ ହୋଇଯାଇ ସାଧନ ଦୃଢ଼ ଓ ଶକ୍ତିସମ୍ପର୍ଣ୍ଣ ହୁଏ ଏବଂ ଧାରଣାଶକ୍ତି ବଢ଼ି ସ୍ତ୍ରୀସାଧନ ସୁଗମ ଓ ବଡ଼ ଆନନ୍ଦ ଦାୟକ ହୋଇଥାଏ ।

ଏ ସବୁ ଆସନ ଓ ପ୍ରାଣାୟାମ ସାଧନ କରିଥିବା ବ୍ୟକ୍ତିଙ୍କୁ ଗୁରୁକରି ଏଥିରେ ଅଗ୍ରସର ହେବା ସର୍ବଥା ବିଧେୟ ।

———o——

## ସ୍ୱପ୍ନଦୋଷର ଓ ଦ୍ରୁତରେତଃପାତ ନିବାରଣର ଉପାୟ

ଯେଉଁମାନଙ୍କର ସ୍ୱପ୍ନଦୋଷ ହେଉଛି, କିମ୍ବା ନାରୀ ସଙ୍ଗମ ବେଳେ ଶୀଘ୍ର ରେତଃ ସ୍ଖଳନ ହୋଇ ଯାଉଅଛି, ସେମାନେ ନିମ୍ନୋକ୍ତ ପ୍ରାକୃତିକ କେତୋଟି ଅଭ୍ୟାସ କଲେ ନିଶ୍ଚୟ ସୁଫଳ ପାଇବେ, ଏଥିରେ ସନ୍ଦେହ ନାହିଁ ।

୧—ପ୍ରସ୍ରାବ କରିବା ସମୟରେ ଏକ ଧାରରେ ମୂତ୍ର ତ୍ୟାଗ ନ କରି ଅଟକି ଅଟକି ମୂତ୍ର ଗତିକୁ ଉପରକୁ ଆକର୍ଷଣ କରି ରହି ରହି ପ୍ରସ୍ରାବ କରିବ । ପ୍ରତି ଥର ପରିସ୍ରା କଲାବେଳେ ଏହିପରି ୩।୪ ଥର କରିବ ।

୨—ପ୍ରସ୍ରାବ କଲା ସମୟରେ ଶ୍ୱାସ ଗ୍ରହଣ କରିବ ନାହିଁ । ଏକ ନିଶ୍ୱାସରେ ସାରା ମୂତ୍ର ତ୍ୟାଗ କରିବ, ଯଦି ଏପରି କରି ନ ପାରିବ





ତେବେ ଶ୍ୱାସ ଗ୍ରହଣ ବା ମୋକ୍ଷଣ ସମୟରେ ପ୍ରସ୍ରାବ ବନ୍ଦ କର । ଶ୍ୱାସ ଗ୍ରହଣ ବନ୍ଦ ସାବଲୀ ପରେ ବାକୀଥିବା ମୂତ୍ର ତ୍ୟାଗ କରିବ ।

୩—ମୂତ୍ରତ୍ୟାଗ ସମୟରେ ଅଣ୍ଡକୋଷକୁ ଲିଙ୍ଗର ଉପରକୁ ଗୋଟିଏ ହାତରେ ଠେକି ଧରିବ , ଶେଷରେ ଛାଡିବ ।

୪—ନାସିକାର ବାମ ପୁଡ଼ାରେ ପବନ ଗଲା ବେଳେ ପ୍ରସ୍ରାବ କର । ଦକ୍ଷିଣ ପୁଡ଼ାରେ ବାୟୁ ଗତାଗତ ବେଳେ ପ୍ରସ୍ରାବ କଲେ ବୀର୍ଯ୍ୟ ନଷ୍ଟ ହୋଇ ଯାଏ । ଗରମ ପ୍ରସ୍ରାବ ବହିର୍ଗତ ହୁଏ ଓ ଅନେକ ରୋଗ ଉତ୍ପନ୍ନ ହୁଏ ।

୫—ଦକ୍ଷିଣ ପୁଡ଼ାରେ ବାୟୁ ଗତାଗତ ବେଳେ ମଳତ୍ୟାଗ କର ।

୬—ମଳତ୍ୟାଗ ପରେ ଶୌଚ କାର୍ଯ୍ୟ ବେଳେ, ସହଜରେ ପ୍ରବେଶ କରିବା ଭଳି ଯେ କୌଣସି ଅଙ୍ଗୁଳି ଗୁହ୍ୟରେ ପ୍ରବେଶ କରାଇ ଧୌତ କରିବ, କିନ୍ତୁ ସେ ଅଙ୍ଗୁଳିରେ ସାମାନ୍ୟ ତେଲ ଲଗାଇଲେ ଭଲ ହୁଏ ।

୭—ପ୍ରସ୍ରାବ ପରେ ଲିଙ୍ଗକୁ ଥଣ୍ଡା ପାଣିରେ ଧୋଇ ଦେବ ।

୮—ଶୋଇବାକୁ ଯିବା ପୂର୍ବରୁ ଥଣ୍ଡାପାଣିରେ ଲିଙ୍ଗ ଓ ଅଣ୍ଡକୋଷକୁ ୧୫।୨୦ ମିନଟ୍ ବୁଡ଼ାଇ ରଖିଲେ ସ୍ୱପ୍ନଦୋଷ ହୁଏ ନାହିଁ ।

୯—ଶୋଇବା ପୂର୍ବରୁ ଅଣ୍ଟା ତଳକୁ ସମୁଦାୟ ଅଙ୍ଗ ଥଣ୍ଡା ପାଣିରେ ଧୋଇ ଦେଲେ ଉପକାର ହୁଏ ।

୧୦—ଲିଙ୍ଗ ଓ ଅଣ୍ଡକୋଷ ଏବଂ ତା'ର ଆଖପାଖରେ ଥଣ୍ଡା ଜଳର ପଟି ଦେଲେ ଉପକାର ହୁଏ ।



୪

୧୧—ଚିତ୍ ହୋଇ ଶୋଇବ ନାହିଁ । ଡାହାଣ ଶୋଇବ । ବିଶେ-ଷତଃ ବାମ କଡ଼ ମାଡ଼ି ଶୋଇବ ।

୧୨—ବ୍ୟାୟାମ ଖୁବ୍ କର । ଏହା ଦ୍ୱାରା ତେଜ ଓ କାନ୍ତି ବଢ଼େ । ବୀର୍ଯ୍ୟ ଗାଢ଼ ହୁଏ । ନିଦ ଖୁବ୍ ଜୋରରେ ହୁଏ ।

୧୩—ସକାଳେ ସନ୍ଧ୍ୟାରେ ଥଣ୍ଡା ପାଣିରେ ଦୁଇଥର ସ୍ନାନ କର । ସ୍ନାନ ସମୟରେ ଗୁହ୍ୟ, ଲିଙ୍ଗ ଓ ଅଣ୍ଡକୋଷ ଭଲ ଭାବରେ ଧୋଇଦିଅ ।

୧୪—ବାୟୁ ସେବନ ଖୁବ୍ କରିବ ।

୧୫—ସୁପାଚ୍ୟ ଓ ସାତ୍ତ୍ୱିକ ଖାଦ୍ୟ ଗ୍ରହଣ କର । ପେଟ ଭରି ଖାଅ ନାହିଁ, ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ ସାର ।

୧୬—ଅଳସୁଆ ନିକମା ହୋଇ ବସ ନାହିଁ । ଯେ କୌଣସି କାମରେ ଲାଗି ରହ । କଥାରେ ଅଛି—Constant cccupation preventes remptation.

୧୭—ଇନ୍ଦ୍ରିୟର ଉତ୍ତେଜନା ପ୍ରକାଶ ପାଇଲେ ଉପବାସ ରହ । ଉପବାସ ବେଳେ ଜଳ ଗ୍ରହଣ କରିପାର । ଇନ୍ଦ୍ରିୟ ଶିଥିଳ ହେଲା ବେଳେ ଖାଦ୍ୟ ଗ୍ରହଣ କର ।

୧୮—ଶ୍ରୀଚରକାଚାର୍ଯ୍ୟ କହିଛନ୍ତି—'ମାନସେ ଜ୍ଞାନ ବିଜ୍ଞାନ ଧୈର୍ଯ୍ୟ ସ୍ମୃତିସମାଧିଭିଃ ।' ମାନସିକ ବିକୃତି ଦ୍ୱାରା ଉତ୍ପନ୍ନ ରୋଗକୁ ପ୍ରାକୃତିକ ଚିକିତ୍ସା ହେବା ଆବଶ୍ୟକ । ଅତଏବ ସ୍ୱପ୍ନଦୋଷ ନିବାରଣାର୍ଥେ ସବୁଠାରୁ ପ୍ରଥମରେ ମନର ପବିତ୍ରତା ଲୋଡ଼ା ।

ବୈଶାଖ ପୂର୍ଣ୍ଣିମା

ଗୁରୁବାର

ତା ୨୮।୪।୫୦

# ସୂଚନା

ବହୁ ଝଡ଼ଝଞ୍ଜା ମଧ୍ୟ ଦେଇ କାମବିଜ୍ଞାନ ଦ୍ୱିତୀୟ ଖଣ୍ଡ ପ୍ରକାଶ ପାଇଲା । ଏହା ବହୁ ପୂର୍ବରୁ ପ୍ରକାଶ କରିବାକୁ ପ୍ରୟାସୀ ହୋଇଥିଲେ ମଧ୍ୟ କେତେକ କାରଣ ବଶତଃ ବିଳମ୍ବ ଘଟିଅଛି । ଏଥିପାଇଁ ପାଠକ ପାଠିକାମାନଙ୍କ ନିକଟରେ ମୁଁ କ୍ଷମା ଭିକ୍ଷା ମାଗୁଅଛି ।

ବିବାହ ବିଜ୍ଞାନ ଓ କାମବିଜ୍ଞାନ ପ୍ରଥମ ଭଳି ଯୌନ ଶାସ୍ତ୍ରମାନ ପ୍ରକାଶ କଲାଦିନୁ ଉତ୍କଳର ନାନା-ସ୍ତରର ନାନା-ବୟସର ସ୍ତ୍ରୀ ପୁରୁଷମାନଙ୍କ ଠାରୁ ମୁଁ ନାନା-ଧରଣର ପତ୍ର ପାଏ । ସେହିସବୁ ପତ୍ରରୁ ଶିକ୍ଷାର ମାଲମସଲା ମଧ୍ୟ ମୋତେ ଯଥେଷ୍ଟ ମିଳେ । ଅଧିକାଂଶ ପତ୍ରରେ ଯେଉଁ ବିଚିତ୍ର ପ୍ରକାର ପ୍ରଶ୍ନ ମୋତେ ଲୋକେ ପଚାରିଥାନ୍ତି ସେ ସବୁ ପ୍ରଶ୍ନର ଉତ୍ତର ଦେବାରେ ମୁଁ କୁଣ୍ଠାବୋଧ କରେ ନାହିଁ । ସେହି ସବୁ ପ୍ରଧାନ ପ୍ରଧାନ ପ୍ରଶ୍ନୋତ୍ତର ଗୁଡ଼ିକ ସୁବିନ୍ୟସ୍ତ କରି ତା'ର ସଂକ୍ଷିପ୍ତ ବିବରଣୀ ମାନ କାମ ବିଜ୍ଞାନ ତୃତୀୟ ଭାଗରେ ପ୍ରକାଶ କରିବାର ଆଶା ରଖିଅଛି ।

ପତ୍ରର ପ୍ରଶ୍ନୋତ୍ତର ତୃତୀୟ ଭାଗରେ ପ୍ରକାଶ କଲେ ମଧ୍ୟ କୌଣସି ବ୍ୟକ୍ତିଗତ ନାମ ବା ଠିକଣା ସେଥିରେ ଉଲ୍ଲେଖ ରହିବ ନାହିଁ । ଏଣୁ ସମସ୍ତଙ୍କୁ ବିନୀତ ଅନୁରୋଧ ଯେ, ସେମାନେ ପୂର୍ବ ଭଳି ପତ୍ର ଦ୍ୱାରା ପ୍ରଶ୍ନ ପଚାରିବାକୁ ମୋତେ ଯେପରି ବଞ୍ଚିତ ନ କରନ୍ତି ।

ପରିଶେଷରେ ପ୍ରାର୍ଥନା ଯେ ପାଠକ ପାଠିକାମାନଙ୍କର ସ୍ନେହ ସହାନୁଭୂତି ପାଇଲେ ଏହାର ତୃତୀୟ ଭାଗ ପ୍ରକାଶ କରିବାକୁ ସାହାସୀ ହେବି । ଇତି ।

ଶ୍ରୀ ମୋହନ ଚରଣ ଦାସ

